


ଡ. ମନିକା ଦାସ । ଫକୀରମୋହନଙ୍କ ଚତୁର୍ଥ ପ୍ରଜନ୍ମ । ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ଗାର୍ଗୀ ମହାବିଦ୍ୟାଳୟରୁ ଅର୍ଥନୀତି ପ୍ରାଧ୍ୟାପିକା ଭାବରେ ସ୍ୱେଚ୍ଛାରେ ଅବସର ଗ୍ରହଣ । ତା'ପରେ ଫକୀରମୋହନ ଫାଉଣ୍ଡେସନ ଗଠନ । ଓଡ଼ିଶା, ଭାରତ ତଥା ଭାରତ ବାହାରେ ଜଣେ ଉଚ୍ଚକୋଟୀର ବୁଦ୍ଧିଜୀବୀ ଭାବରେ ପ୍ରସିଦ୍ଧ । ଲୈଙ୍ଗିକ ବୈଷମ୍ୟ, ନାରୀବାଦୀ ଆଭିମୁଖ୍ୟ, ସାମ୍ପ୍ରତିକ ଭାଷିକ-ସାଂସ୍କୃତିକ-ରାଜନୀତିକ-ଆର୍ଥନୀତିକ ପ୍ରେକ୍ଷାପଟକୁ ଆଧାରକରି ଆମେରିକା, ଅଷ୍ଟ୍ରେଲିଆ, ଭାରତ ଆଦି ଦେଶରେ ଥିବା ବିଶ୍ୱବିଦ୍ୟାଳୟ ତଥା ବିଭିନ୍ନ ଶିକ୍ଷାନୁଷ୍ଠାନରେ ଅନେକ ଉପାଦେୟ ଗବେଷଣାଧର୍ମୀ ପ୍ରବନ୍ଧ ପାଠ । ଫକୀରମୋହନଙ୍କ ଉପରେ 'ଅନ୍ୱେଷଣ' ଡକ୍ୟୁ-ଫିଲ୍ମ ନିର୍ମାଣ ଏବଂ ଭାରତ ଓ ଆମେରିକାରେ ପ୍ରଦର୍ଶନ । ଫକୀରମୋହନଙ୍କ ସ୍ୱରଚିତ କବିତାକୁ ନେଇ 'ମୋହନ ମୂର୍ଚ୍ଛନା' ନାମରେ ଏକ ଧ୍ୱନିମୁଦ୍ରିକା (CD) ପ୍ରସ୍ତୁତ । ଏବେ ମଧ୍ୟ ଭାରତ ସମେତ ପୃଥିବୀର ବିଭିନ୍ନ ଦେଶରେ ମାତୃଭାଷାର ମହତ୍ତ୍ୱ, ଯୁବପିଢ଼ିର ସମସ୍ୟା, ବାର୍ତ୍ତମାନିକ ବିଭିନ୍ନ ସମ୍ବେଦନଶୀଳ ସମସ୍ୟା ପ୍ରଭୃତିକୁ ପାଥେୟ କରି ବିଭିନ୍ନ ଦୃଷ୍ଟାନ୍ତମୂଳକ କାର୍ଯ୍ୟକ୍ରମ ଆୟୋଜନ । 'ମୁଁ ଫକୀରମୋହନଙ୍କ ଆମ୍ବିଳା କହୁଛି' (ସ୍ମୃତିକଥା ଓ ଅନ୍ୟାନ୍ୟ ପ୍ରସଙ୍ଗ) ଗ୍ରନ୍ଥଟି ଫକୀରମୋହନଙ୍କଠାରୁ ଆରମ୍ଭ କରି ନିଜେ ଲେଖିକା(ମନିକା ଦାସ)ଙ୍କ ସମୟସୀମା ପର୍ଯ୍ୟନ୍ତ ଆଞ୍ଚଳିକ, ରାଷ୍ଟ୍ରୀୟ ତଥା ଅନ୍ତର୍ଜାତୀୟ ପ୍ରେକ୍ଷାପଟକୁ ଆଧାରକରି ରଚିତ । ଏଥିରେ ଫକୀରମୋହନଙ୍କ ପାରିବାରିକ ବିଭିନ୍ନ ଜ୍ଞାତ ଏବଂ ଅଜ୍ଞାତ ଘଟଣା ବିନ୍ୟସ୍ତ । ତାଙ୍କୁ ଆମ ଏଥେନ ପ୍ରକାଶନ ସଂସ୍ଥା ତରଫରୁ ଅଭିନନ୍ଦନ ।

# ମୁଁ ଫକୀରମୋହନଙ୍କ ଆତ୍ମଜା କହୁଛି

## (ସ୍ମୃତିକଥା ଏବଂ ଅନ୍ୟାନ୍ୟ ପ୍ରସଙ୍ଗ)

ମୂଳ ଇଂରାଜୀ ଲେଖା : ଡକ୍ଟର ମନିକା ଦାସ

ଅନୁବାଦ : ବିଶ୍ୱଜିତ୍ ଆପଟ୍

ସଂପାଦନା : ଡ. ରବୀନ୍ଦ୍ର କୁମାର ଦାସ



ଏଥେନା ବୁକ୍‌ସ

ଭୁବନେଶ୍ୱର

*ପ୍ରଚ୍ଛଦରେ ଥିବା ଘରଟି ହେଉଛି ଫକୀରମୋହନଙ୍କ ଦ୍ୱାରା ନିର୍ମିତ ବାଖରାବାଦ ବାସଗୃହ ।*

**ମୁଁ ଫକୀରମୋହନଙ୍କ ଆତ୍ମଜା କହୁଛି- ମୂଳ ଇଂରାଜୀ ଲେଖା: ଡ. ମନିକା ଦାସ; ଓଡ଼ିଆ ଭାଷାନ୍ତର : ବିଶ୍ୱଜିତ୍ ଆପଟ; ସଂପାଦନା : ଡ. ରବୀନ୍ଦ୍ର କୁମାର ଦାସ;** ସ୍ୱତ୍ୱାଧିକାରୀ : ଫକୀରମୋହନ ଫାଉଣ୍ଡେସନ୍, ନୂଆଦିଲ୍ଲୀ; ପ୍ରକାଶକ : ଏଥେନା ବୁକ୍ସ, ଭୁବନେଶ୍ୱର-୨; ଅକ୍ଷର : ରଂଜନା; ପ୍ରଚ୍ଛଦ : ପିଙ୍କିନା; ପ୍ରଥମ ସଂସ୍କରଣ : ୨୦୧୯; ପୃଷ୍ଠା : ୧୬୦; ମୂଲ୍ୟ : ଟ. ୧୮୦/-

**Mu Fakirmohananka Atmaja Kahuchhi,**
**Writer(in English) Dr. Monica Das; Odia Translator : Biswajit Apat; Editing : Dr. Rabindra Kumar Das (Santiniketan);** © Fakirmohan Foundation, New Delhi; Published by : Athena Books, Bhubaneswar-2; Type Setting : Ranjana; Cover Design : Pinkina; Printed at : Athena Books, Bhubaneswar-2; E-mail: rkdas. athena @ gmail.com; 1st Edition : 2019, Page :160,

**Price : Rs. 180/-**

ISBN 13 978-93-80824-95-6

# କିଛି କହିବାକୁ ଚାହେଁ...

ପୂର୍ବପୁରୁଷମାନଙ୍କର ସ୍ମୃତିକୁ ରୋମନ୍ଥନ କରିବା ପାଇଁ ଏକ ଛୋଟିଆ ପ୍ରୟାସ କରିଛି ଏଇ 'ମୁଁ ଫକୀରମୋହନଙ୍କ ଆତ୍ମଜା କହୁଛି' (ସ୍ମୃତିକଥା ଓ ଅନ୍ୟାନ୍ୟ ପ୍ରସଙ୍ଗ)ରେ । ପ୍ରଫେସର ଯତୀନ୍ ନାୟକ, ଜଗନ୍ନାଥ ପ୍ରସାଦ ଦାସ, ଡ. ଜୟଦେବ ମିଶ୍ର, ଦେବେନ୍ଦ୍ର ଦାଶ ତଥା ବହୁ ବନ୍ଧୁବାନ୍ଧବୀଙ୍କର ଉତ୍ସାହ ଏବଂ ପ୍ରେରଣା ମୋର ଏହି ସ୍ମୃତିକଥା ରଚନା କରିବାରେ ସହାୟକ ହୋଇଛି । ଶାନ୍ତିନିକେତନ ଓଡ଼ିଆ ବିଭାଗର ଅଧ୍ୟାପକ ଡ. ରବୀନ୍ଦ୍ର କୁମାର ଦାସ ମୋତେ ଏଭଳି ସ୍ମୃତିକଥା ଲେଖିବାକୁ ସର୍ବପ୍ରଥମେ ଅନୁରୋଧ କରିଥିବାରୁ ତାଙ୍କୁ କୃତଜ୍ଞତା । ଏହି ସ୍ମୃତିକଥାଟିକୁ ସେ ଯଥୋଚିତ ଭାବାନୁବାଦ କରି ସଂପାଦନା କରିଥିବାରୁ ତାଙ୍କୁ ଧନ୍ୟବାଦ ।

ସ୍ମୃତିକଥା ରଚନା ପଶ୍ଚାତ୍‌ରେ ମୋର ଜୀବନସାଥୀ ଉଦୟଭାନୁ ଦାସଙ୍କର ଅକୁଣ୍ଠ ସହଯୋଗ ଏବଂ ପ୍ରେରଣା ରହିଛି । ୟୁ.ଏସ୍.ଏ.ରେ ରହୁଥିବା ସୀତାକାନ୍ତ ଦାସଙ୍କୁ ମଧ୍ୟ ମୁଁ ଏହି ଅବସରରେ ସ୍ମରଣ କରୁଛି । ଜଷ୍ଟିସ୍ ଅନଙ୍ଗ ପଟ୍ଟନାୟକଙ୍କ ପ୍ରେରଣା ମଧ୍ୟ ମୋ ପାଇଁ ଆଶୀର୍ବାଦ ସଦୃଶ କାର୍ଯ୍ୟ କରିଛି । ଶେଷରେ ବିଶ୍ୱଜିତ ଆପଟ୍ଙ୍କର ସକ୍ରିୟ ସହଯୋଗ ଲାଗି ଧନ୍ୟବାଦ ।

ଏହି ସ୍ମୃତିକଥାଟି ଓଡ଼ିଶା ତଥା ଓଡ଼ିଶା ବାହାରର ସମସ୍ତ ପାଠକପାଠିକାଙ୍କୁ ଉତ୍ସର୍ଗ କଲି । ପୁସ୍ତକଟି ସେମାନଙ୍କ ପାଠକୀୟ ଜିଜ୍ଞାସାକୁ ଯତ୍‌କିଞ୍ଚିତ୍ ପ୍ରଶମିତ କରିପାରିଲେ ମୋର ଶ୍ରମ ସାର୍ଥକ ହେବ ।

**ଡ. ମନିକା ଦାସ**

ମ୍ୟାନେଜିଂ ଟ୍ରଷ୍ଟି,

ଫକୀରମୋହନ ଫାଉଣ୍ଡେସନ, ନୂଆଦିଲ୍ଲୀ

# ଭୂମିକା...

ଯେତେବେଳେ ଆମେ କୌଣସି ମହାନ ସାରସ୍ୱତ ସ୍ରଷ୍ଟାମାନଙ୍କ ସଂପର୍କରେ କିଛି ଭାବୁ, ସେତେବେଳେ ସେମାନେ ଯେ ସାଧାରଣ ମଣିଷଠାରୁ ବହୁ ଊର୍ଦ୍ଧ୍ୱରେ - ଏହି ଧାରଣା ଆମମାନଙ୍କ ମନ ମଧ୍ୟରେ ସୃଷ୍ଟି ହୁଏ । ସେହି ମହାନ ସ୍ରଷ୍ଟାମାନେ ଗଭୀର ଜ୍ଞାନ ଚର୍ଚ୍ଚା କରି କିମ୍ବା ଅନେକ ପୁସ୍ତକ ରଚନା କରି ଅଜସ୍ର ପ୍ରସିଦ୍ଧିର ଅଧିକାରୀ ହେବା ସହିତ ଅଲୌକିକ ଶକ୍ତି ଏବଂ ପ୍ରତିଭାସମ୍ପନ୍ନ ବ୍ୟକ୍ତି ଭାବରେ ଗୋଟିଏ ଗୋଟିଏ ମହାଦୀପ୍ତିମାନ୍ ସ୍ମୃତିସ୍ତମ୍ଭ ପରି ଆମ ସମ୍ମୁଖରେ ପ୍ରତୀୟମାନ ହୋଇଥାନ୍ତି । ତା' ସହିତ ସେମାନେ ଯେ ବାଙ୍‌ମାନସଅଗୋଚର, ବିସ୍ମୟକର ତଥା ଇନ୍ଦ୍ରିୟୋତ୍ତର ଚେତନାରେ ଅଧିକାରୀ ବୋଲି ଆମେ ସାଧାରଣ ମଣିଷ ସ୍ଥିର ନିଶ୍ଚିତ ହୋଇଯାଉ । ଏତାଦୃଶ ମନୋଭାବ ହେତୁ ସେମାନେ ଆମ୍ଭମାନଙ୍କର ଏଇ ପାର୍ଥିବ ଦୁନିଆଠାରୁ ନିର୍ବାସିତ ହୋଇଯାଇ ଏକ ନିଥର, ଶୁଷ୍କ, ଜୀବନଶୂନ୍ୟ ଦ୍ୱୀପରେ ବନ୍ଦୀ ହେଇଯାଆନ୍ତି । ସେଇମାନଙ୍କୁ ଯେତେବେଳେ ଆମ୍ଭେମାନେ 'ଜୀବନୀ' କିମ୍ବା 'ସ୍ମୃତିକଥା' ଆଦିରେ ଦେଖୁ - ସେତେବେଳେ ସେମାନେ ଯେ ଆମରି ପରି ଅବିକଳ ଭାବରେ ଏଇ ତେଲ-ଲୁଣ ଦୁନିଆର ମଣିଷ ଭଳି ଜୀବନ ବଞ୍ଚୁଥିଲେ, ସେକଥା ପ୍ରମାଣିତ ହୁଏ । ପ୍ରକୃତରେ ଏଇ ତେଲ-ଲୁଣ ଦୁନିଆରୁ ହିଁ ସେମାନଙ୍କର ମହାନ ଜୀବନର ଉତ୍ସର୍ଜନ ହୋଇଥିବାର ଲକ୍ଷ୍ୟ କରାଯାଏ । ୟେଟସ୍‌ଙ୍କ ସଂପର୍କରେ ଅଡେନ୍‌ଙ୍କର ଉକ୍ତି ଥିଲା - "ସେ ଆମମାନଙ୍କ ପରି ଚପଳମତି, ପିଲାଳିଆ, ସ୍ୱଭାବର ଥିଲେ (silly like us)" । ଏକଥା କେତେଦୂର ଯଥାର୍ଥ, ତାହା ପୃଥିବୀର ମହାନ ସ୍ରଷ୍ଟାମାନଙ୍କର ଜୀବନୀ ଏବଂ ସ୍ମୃତିକଥାରୁ ହିଁ ଅବଗତ ହେଇହୁଏ ।

କହିବା ବାହୁଲ୍ୟ ଡ. ମନିକା ଦାସ ଏଇ 'ସ୍ମୃତିକଥା'ରେ ଫକୀରମୋହନୀୟ ବଂଶପରଂପରାକୁ ଅତ୍ୟନ୍ତ ହୃଦୟସ୍ପର୍ଶୀ କରି ଲୋକଲୋଚନକୁ ଆଣିଛନ୍ତି । ସେ ଫକୀରମୋହନଙ୍କର ପୁତ୍ର ମୋହିନୀମୋହନଙ୍କ ଝିଅ (ବୀଣାପାଣି ଦେଈ)ର ଝିଅ । ଅର୍ଥାତ୍, ଫକୀରମୋହନଙ୍କର ଅଣନାତୁଣୀ । ମନିକା ଦାସ ପ୍ରତ୍ୟକ୍ଷ ଭାବରେ ଫକୀରମୋହନଙ୍କ ସଂସ୍ପର୍ଶରେ ଆସିନଥିଲେ ବି ସେଇ ବଂଶର ବିଭିନ୍ନ ଅନ୍ତରଙ୍ଗ ଉତ୍ସରୁ ତଥ୍ୟ ସଂଗ୍ରହ କରି 'ସ୍ମୃତିକଥା'ଟିକୁ ରଚନା କରିଛନ୍ତି । ଆଧୁନିକ ଓଡ଼ିଆ କଥାସାହିତ୍ୟର ଜନକ

ଫକୀରମୋହନଙ୍କୁ ସେ ଏହି 'ସ୍ମୃତିକଥା'ରେ ଯଥାସାଧ୍ୟ ପୁନରୁଦ୍ଦୀପିତ କରିବାକୁ ଚେଷ୍ଟା କରିଛନ୍ତି ।

ଫକୀରମୋହନ ଯେଉଁ ଯେଉଁ ଘରେ ରହୁଥିଲେ, ସେହି ଭିଟାମାଟିର ବୁନିଆଦିକୁ ମୁଖ୍ୟତଃ କେନ୍ଦ୍ରକରି ଏହି ଗ୍ରନ୍ଥଟି ରଚିତ । ଫକୀରମୋହନଙ୍କ ବାଖରାବାଦ, କଟକ ଏବଂ ମଲ୍ଲିକାଶପୁର, ବାଲେଶ୍ୱରସ୍ଥିତ ବାସଭବନ ସହ ମନିକାଙ୍କର ଯେଉଁ ନିବିଡ଼ ସଂପୃକ୍ତି ରହିଥିଲା, ତାକୁ ଅତି ପ୍ରାଞ୍ଜଳ ଭାବରେ ନିଜେ ମନିକା ଦାସ ଏଠାରେ ଲିପିବଦ୍ଧ କରିଛନ୍ତି । ଓଡ଼ିଆ ଉପନ୍ୟାସ ସାହିତ୍ୟର କିମ୍ବଦନ୍ତୀ ପୁରୁଷ ଫକୀରମୋହନଙ୍କର ଉତ୍ତରାଧିକାରିଣୀ କନ୍ୟା ସନ୍ତାନମାନେ ସେହି ସବୁ ବାସ ସ୍ଥାନରେ ରହି ପରସ୍ପର ପରସ୍ପର ମଧ୍ୟରେ କିଭଳି ନିବିଡ଼ ଆନ୍ତରିକତା ରୂପକ ରଜ୍ଜୁରେ ବାନ୍ଧି ହୋଇ କାଳାତିପାତ କରୁଥିଲେ ତାହାର ସ୍ୱଷ୍ଟ ଚିତ୍ର ଏଠାରେ ପ୍ରଦତ୍ତ । ଫକୀରମୋହନଙ୍କ ଦ୍ୱାରା ରୋପଣ କରାଯାଇଥିବା ବିଭିନ୍ନ ବୃକ୍ଷଲତା ଦ୍ୱାରା ପରିବେଷ୍ଟିତ ବଗିଚା ମଧ୍ୟ ସେଠାରେ ଶୋଭା ପାଉଥିଲା । ଫକୀରମୋହନ ତଥା ଫକୀରମୋହନଙ୍କ ପରିବାରର ବିଭିନ୍ନ ଘଟଣାକୁ ମନିକା ଦାସ ଏହି 'ସ୍ମୃତିକଥା' ରେ ସଂଯୁକ୍ତ କରିବା ଦ୍ୱାରା ମହାନ ଲେଖକମାନେ ଏଇ ଧୂଳିମାଟିର ଜଗତରେ ଲୀଳାଖେଳା କରି କିପରି ଏବଂ କେଉଁଭଳି ଭାବରେ ଉଚ୍ଚତର ଚେତନାକୁ ନିଜ ନିଜ ଲେଖାଦିରେ ଅଭିବ୍ୟକ୍ତ କରିପାରନ୍ତି, ତାହା ଏହି ଗ୍ରନ୍ଥରେ ସମ୍ମୁଖୀକୃତ ହୋଇଛି । ଅର୍ଥାତ୍, ଫକୀରମୋହନ ତଥା ମୋହିନୀମୋହନ ପ୍ରମୁଖ ମହାପୁରୁଷମାନେ ତାଙ୍କ ନିଜ ନିଜ କ୍ଷେତ୍ରରେ ମହିମାମୟ ହେଲେ ମଧ୍ୟ ସେମାନେ କିଭଳି ଆମ ସାଧାରଣ ମଣିଷଙ୍କ ଭଳି ନିତ୍ୟବ୍ୟବହାର୍ଯ୍ୟ ସାମଗ୍ରୀମାନ ବ୍ୟବହାର କରୁଥିଲେ, ପର୍ବପର୍ବାଣିରେ ଅଂଶଗ୍ରହଣ କରୁଥିଲେ ତଥା ପ୍ରଥାପରମ୍ପରା ସହ ଯୁକ୍ତ ହେଇ ଜୀବନ ବଞ୍ଚୁଥିଲେ, ତାହାର ଯଥାସାଧ୍ୟ ଆକଳନ ମନିକା ଦାସଙ୍କ ଦ୍ୱାରା ଏଠାରେ ସମ୍ପାଦିତ ।

ମନିକା ଦାସ ଏହି 'ସ୍ମୃତିକଥା' ରଚନା ପାଇଁ ଯେଉଁ ପ୍ରୟାସ କରିଛନ୍ତି, ଯଦି ସେଭଳି କରାନଯାଏ ତେବେ ମହାପୁରୁଷ କିମ୍ବା ମହାନ ସ୍ରଷ୍ଟାମାନଙ୍କ ଜୀବନରେ ଘଟିଥିବା ବିଭିନ୍ନ ଘଟଣା ଲୋକଲୋଚନକୁ ଆସିପାରିବ ନାହିଁ । ଓଡ଼ିଆ ଭାଷାସାହିତ୍ୟ ଜଗତକୁ ଫକୀରମୋହନଙ୍କର ଅବଦାନ ସଂପର୍କରେ ବହୁତ କିଛି ଚର୍ଚ୍ଚା ହୋଇସାରିଛି । ତଥାପି ଆହୁରି କିଛି କିଛି ନୂଆ ନୂଆ କଥାକୁ ଚର୍ଚ୍ଚାପରିସରଭୁକ୍ତ କରାଯାଇପାରେ ବୋଲି ଡକ୍ଟର ମନିକା ଦାସ ଏହି 'ସ୍ମୃତିକଥା' ରଚନା ମାଧ୍ୟମରେ ପ୍ରମାଣ କରିଦେଇଛନ୍ତି । ତା' ସହିତ ଦୀର୍ଘ ବର୍ଷ ଧରି ମନିକା ଦାସ 'ଫକୀରମୋହନ ଫାଉଣ୍ଡେସନ' ନାମରେ ଏକ ସଂସ୍ଥା

ପ୍ରତିଷ୍ଠା କରି ଜାତୀୟ ଏବଂ ଅନ୍ତର୍ଜାତୀୟ ସ୍ତରରେ ଫକୀରମୋହନଙ୍କ ସାହିତ୍ୟିକ ଆଭିମୁଖ୍ୟକୁ ପ୍ରଚାର ପ୍ରସାର କରେଇବା ପାଇଁ ଉଦ୍ୟମ ଜାରି ରଖିଛନ୍ତି । ଏଭଳି ଉଦ୍ୟମ ବାସ୍ତବିକ ଅତ୍ୟନ୍ତ ପ୍ରଶଂସନୀୟ । ଏହା ଏକ ପ୍ରକ୍ରିୟା । ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ଏହାକୁ ତ୍ୱରାନ୍ୱିତ କରାଯାଇପାରେ ।

ମୁଁ ସ୍ଥିରନିଶ୍ଚିତ ଯେ ଏହି 'ସ୍ମୃତିକଥା' ସବୁ ଶ୍ରେଣୀର ପାଠକପାଠିକାଙ୍କ ପାଇଁ ଉପଭୋଗ୍ୟ ହେବା ସହିତ ଆଦୃତ ମଧ୍ୟ ହେବ ।

**ଯତୀନ୍ଦ୍ର କୁମାର ନାୟକ**

ଅବସରପ୍ରାପ୍ତ ପ୍ରଫେସର, ଇଂରାଜୀ ଭାଷାସାହିତ୍ୟ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ

**(ଓଡ଼ିଆ ଭାଷାନ୍ତର : ଡ. ରବୀନ୍ଦ୍ର କୁମାର ଦାସ ।)**

ବି.ଦ୍ର: ପ୍ରଫେସର ଯତୀନ୍ଦ୍ର କୁମାର ନାୟକ ଆମ ସମୟର ଜଣେ ସୁପରିଚିତ ଅନୁବାଦକ, ସାହିତ୍ୟ ସମାଲୋଚକ, ସମ୍ପାଦକ ଓ ଶିକ୍ଷାବିତ୍ । ଚନ୍ଦ୍ରଶେଖର ରଥଙ୍କ 'ଯନ୍ତ୍ରାରୂଢ଼', ଫକୀରମୋହନ ସେନାପତିଙ୍କ 'ଛମାଣ ଆଠଗୁଣ୍ଠ' ଓ 'ଆତ୍ମ ଜୀବନ ଚରିତ', ଜଗନ୍ନାଥ ପ୍ରସାଦ ଦାସଙ୍କର 'ଦେଶ କାଳ ପାତ୍ର' ପରି ଓଡ଼ିଆ ସାହିତ୍ୟର କେତୋଟି ଅବିସ୍ମରଣୀୟ ରଚନାକୁ ଇଂରାଜୀରେ ଅନୁବାଦ କରି ସେ ଜାତୀୟ ତଥା ଅନ୍ତର୍ଜାତୀୟ ସ୍ତରରେ ଅନେକ ପ୍ରସିଦ୍ଧି ଲାଭ କରିଛନ୍ତି ଓ ପୁରସ୍କୃତ ହୋଇଛନ୍ତି । ତାଙ୍କ ଅନୁଷ୍ଠାନ 'ରୂପାନ୍ତର' ଅନୁବାଦ ପ୍ରକାଶନ କ୍ଷେତ୍ରରେ ରାଜ୍ୟରେ ଅଗ୍ରଣୀ ଭୂମିକା ନିର୍ବାହ କରିଛି ।

ପ୍ରଫେସର ନାୟକ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଉଚ୍ଚ ଶିକ୍ଷାଲାଭ କରିଛନ୍ତି । ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଇଂରାଜୀ ଭାଷା ସାହିତ୍ୟ ବିଭାଗରେ ଦୀର୍ଘ ବର୍ଷ ଅଧ୍ୟାପନା ଦାୟିତ୍ୱ ତୁଲାଇଛନ୍ତି । ସେ ନିଜେ ଭୂମିକାଟି ଇଂରାଜୀରେ ପ୍ରସ୍ତୁତ କରିଥିବାରୁ ତାଙ୍କୁ ଅଜସ୍ର ଧନ୍ୟବାଦ ।

**ସଂପାଦକ**

# ଲଳିତ ମାନସିଂଙ୍କ ଚିଠି..

**ପ୍ରିୟ ମନିକା**

ମୁଁ ତୁମ ଇଂରାଜୀ ଭାଷାରେ ରଚିତ 'ସ୍ମୃତିକଥା' କୁ ଅତ୍ୟନ୍ତ ଆଗ୍ରହର ସହ ପାଠ କଲି । ଏହା ଅତ୍ୟନ୍ତ ମନୋମୁଗ୍ଧକର । ମୁଁ ଅତି ସଂକ୍ଷିପ୍ତରେ ସେ ସଂପର୍କରେ ଏଠାରେ କିଛି କହିବାକୁ ଚାହୁଁଛି ।

"ଏହି 'ସ୍ମୃତିକଥା'ରେ ମନିକା ଦାସ ଓଡ଼ିଆ ସାହିତ୍ୟର କିମ୍ବଦନ୍ତୀ ପୁରୁଷ ତଥା ଓଡ଼ିଆ ଭାଷା ସାହିତ୍ୟର ଅଗ୍ରସାରଥୀ ଫକୀରମୋହନ ସେନାପତିଙ୍କ ପରିବାର ମଧ୍ୟରେ କିଭଳି ଶୈଶବ ଅବସ୍ଥାରେ ଲାଳିତପାଳିତ ହୋଇଥିଲେ ତାହା ବର୍ଣ୍ଣନା କରିଛନ୍ତି । ତା' ସହିତ ସେହି ବଂଶ ସହିତ ସେ କିଭଳି ଓତପ୍ରୋତ ଭାବରେ ଜଡ଼ିତ ଥିଲେ ତାହା ମଧ୍ୟ ଉଲ୍ଲେଖ କରିଛନ୍ତି । ଫକୀରମୋହନଙ୍କର ଜଣେ ଅଣନାତୁଣୀ ଭାବରେ ଯଦିଓ ମନିକା ଦାସ ଫକୀରମୋହନଙ୍କ ସହ ପ୍ରତ୍ୟକ୍ଷ ଭାବରେ କାଳାତିପାତ କରିନାହାନ୍ତି ତଥାପି ସେହି ପରିବାରର ପରିପାର୍ଶ୍ୱରେ ଉପଲବ୍ଧ ବିଭିନ୍ନ ଉତ୍ସରୁ ତଥ୍ୟ ଆହରଣ କରି ଫକୀରମୋହନୀୟ ବ୍ୟକ୍ତିତ୍ୱର ଚରମ ପରାକାଷ୍ଠାକୁ ଏହି ଗ୍ରନ୍ଥରେ ଲିପିବଦ୍ଧ କରିବାକୁ ଚେଷ୍ଟା କରିଛନ୍ତି । ଫକୀରମୋହନଙ୍କ ପ୍ରତି ମନିକା ଦାସଙ୍କର ଏତାଦୃଶ ଉତ୍ସର୍ଗୀକୃତ ମନୋଭାବ ହିଁ କାଳକ୍ରମେ 'ଫକୀରମୋହନ ଫାଉଣ୍ଡେସନ' ଭଳି ଗୋଟିଏ ସଂସ୍ଥାର ପ୍ରତିଷ୍ଠା ପାଇଁ ପ୍ରେରଣା ଯୋଗାଇଛି ।

**ଲଳିତ ମାନସିଂହ**

ପୂର୍ବତନ ବୈଦେଶିକ ସଚିବ ଏବଂ ରାଷ୍ଟ୍ରଦୂତ

ଯୁକ୍ତରାଷ୍ଟ୍ର ଆମେରିକା

## ସଂପାଦକୀୟ...

ସାଂପ୍ରତିକ କାଳଖଣ୍ଡରେ ଆମେ ଯାହାକୁ ଉତ୍ତର-ଉପନିବେଶବାଦ କହୁ, ତାହାର ଭିତ୍ତିଭୂମି ହେଉଛି- ଗୋଟିଏ ଦେଶର ସାଂସ୍କୃତିକ ଅସ୍ମିତାକୁ ବିଦେଶୀ ଆକ୍ରମଣରୁ ଉଦ୍ଧାର କରି ତାହାର ମୂଳ ନିଷ୍କର୍ଷକୁ ସଂରକ୍ଷଣ କରିବା । ଏହାଦ୍ୱାରା ଦେଶ-କାଳ ପାତ୍ରର ସାଂସ୍କୃତିକ ପୁନରୁତ୍ଥାନ ଘଟିଥାଏ । ଯେଉଁମାନେ ଉପନିବେଶୀୟ ମାନସିକତା ଦ୍ୱାରା ଜୀବନ ଅତିବାହିତ କରନ୍ତି, ସେମାନେ ସବୁବେଳେ ମୂଳ ସଂସ୍କୃତିକୁ ଦମନ କରି ସେ ସ୍ଥାନରେ ଗୋଟାଏ ଉଡ଼ି ଆସି ଛିଡ଼ି ପଡ଼ିଥିବା ସାଂସ୍କୃତିକ ସନ୍ନିବନ୍ଧନକୁ ଗଣ୍ଠେଇଦେବା ପାଇଁ ଯଥାସାଧ୍ୟ ପ୍ରୟାସ କରିଥାନ୍ତି । ଫଳରେ ମୌଳିକ ସାଂସ୍କୃତିକ ଅସ୍ମିତା ବିକୃତ ହୋଇପଡ଼େ । କହିବା ବାହୁଲ୍ୟ ଯେ ଫକୀରମୋହନୀୟ ପାରିବାରିକ-ସାଂସ୍କୃତିକ ପରମ୍ପରାରେ ବହୁ ଦଶନ୍ଧି ଧରି ଚଳି ଆସୁଥିବା ଏକ ମୌଳିକ ପାରିବାରିକ ସାଂସ୍କୃତିକ ଅସ୍ମିତାକୁ ଡ. ମନିକା ଦାସ ଏହି ସ୍ମୃତିକଥା (ମୁଁ ଫକୀରମୋହନଙ୍କ ଆତ୍ମଜା କହୁଚି)ରେ ସଂରକ୍ଷଣ କରିବାକୁ ବିନମ୍ର ପ୍ରୟାସ କରିଛନ୍ତି । ସେଇଟି ହେଉଛି ଫକୀରମୋହନଙ୍କ ଇଚ୍ଛାପତ୍ର ସଂକ୍ରାନ୍ତୀୟ ଘଟଣାବିନ୍ୟାସ; ଯାହା ଏ ପର୍ଯ୍ୟନ୍ତ ଫକୀରମୋହନ ଏବଂ ମୋହିନୀମୋହନଙ୍କ ମଧ୍ୟରେ ଏକ ଅପ୍ରୀତିକର ପ୍ରାଚୀର ଛିଡ଼ା କରାଇ ଆସିଥିଲା । ଏହି ପ୍ରାଚୀରକୁ ଫକୀରମୋହନଙ୍କ ଅଣନାତୁଣୀ ମନିକା ଏଠାରେ ଖଣ୍ଡନ କରିଛନ୍ତି । ଏହି ବିବାଦ ପ୍ରକୃତରେ କେତେକ ନ୍ୟସ୍ତସ୍ୱାର୍ଥ; ରକ୍ଷଣଶୀଳ ଗୋଷ୍ଠୀଦ୍ୱାରା ଭିଆଣ କରାଯାଇଥିଲା । ଫକୀରମୋହନ ନିଜ ପୁତ୍ରବଧୂ ହିରଣପ୍ରଭାଙ୍କୁ ସମସ୍ତ ସଂପତ୍ତି ଉଇଲ୍ କରିଦେଇଥିଲେ । ଏହା ସତକଥା । କିନ୍ତୁ ଏହି 'ଉଇଲ୍' ବା 'ଉଚ୍ଛାପତ୍ର' ପଶ୍ଚାତରେ ପିତା (ଫକୀରମୋହନ) ଏବଂ ପୁତ୍ର (ମୋହିନୀମୋହନ)ଙ୍କ ମଧ୍ୟରେ ସେଭଳି କୌଣସି ବିଦ୍ୱେଷମୂଳକ ମନାନ୍ତର ଘଟିନଥିଲା । ମୋତେ ଏହି ସ୍ପଷ୍ଟୀକରଣଟି ଅତ୍ୟନ୍ତ ପ୍ରଭାବିତ କରିଚି । ମୋ ମତରେ ଏହାକୁ ଏକ ପୋଷ୍ଟକଲୋନିଆଲ୍ ହିଷ୍ଟୋଗ୍ରାଫି କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । କାରଣ ଉତ୍ତର-ଉପନିବେଶବାଦୀ ଐତିହାସିକମାନେ ହିଁ ପୂର୍ବପ୍ରଚଳିତ ଭ୍ରମାତ୍ମକ ଧାରଣାକୁ ସଂଶୋଧନ କରି ଅସଲ ଯଥାର୍ଥତାକୁ ପ୍ରତିଷ୍ଠା ଦେଇପାରନ୍ତି । ଏଥିପାଇଁ ଫକୀରମୋହନଙ୍କର ସୁଯୋଗ୍ୟ ଉତ୍ତରାଧିକାରିଣୀ ମନିକା ଦାସଙ୍କୁ ମୁଁ ଏକକାଳୀନ ଅଭିନନ୍ଦନ ଓ କୃତଜ୍ଞତା ଜ୍ଞାପନ କରୁଚି ।

ସ୍ମୃତିକଥାଟି ସର୍ବମୋଟ ପଚିଶିଟି ପରିଚ୍ଛେଦରେ ବିଭକ୍ତ । ଏହା ଫକୀରମୋହନଙ୍କ ସମୟ ଖଣ୍ଡରୁ ସାଂପ୍ରତିକ ସମୟ ଖଣ୍ଡ (ମନିକା ଦାସଙ୍କ) ପର୍ଯ୍ୟନ୍ତ ସଂପ୍ରସାରିତ । ଏଥିରେ ଫକୀରମୋହନଙ୍କ ପରିବାରର ପାରିବାରିକ, ସାଂସ୍କୃତିକ, ନୈତିକ ବୁନିଆଦିର ଇତିବୃତ୍ତ ଉଲ୍ଲେଖିତ । ଏଭଳିକି ମୋହିନୀମୋହନ ଏବଂ ତାଙ୍କ ଉତ୍ତର ବଂଶଧରମାନଙ୍କର ସଂକ୍ଷିପ୍ତ ଇତିହାସ ତଥା ପରିଚିତି ସଂଗ୍ରଥିତ । ବାଖରାବାଦ, କଟକରେ ଥିବା ଫକୀରମୋହନଙ୍କ ବାସଗୃହ; ସେ ସମୟରେ ପାଳନ କରାଯାଉଥିବା ବୋଇତ ଭସାଣ ପ୍ରଭୃତି ପର୍ବପର୍ବାଣି; ଫକୀରମୋହନ ଫାଉଣ୍ଡେସନ୍ (ନୂଆଦିଲ୍ଲୀ)ର ଯୋଜନା; ମନିକାଙ୍କର ମାଆ ବୀଣାପାଣି ଏବଂ ମାଉସୀ ମାୟା ଦତ୍ତ, ତାଙ୍କ ବାପା କାଶୀନାଥ ମିଶ୍ର, ହିରଣପ୍ରଭାଙ୍କର ଚାକର ଗତିଆ; ମନିକାଙ୍କ ଦ୍ୱାରା ନିର୍ମିତ ଡକ୍ୟୁ-ଫିଲ୍ମ 'ଅନ୍ୱେଷଣ'; ଓଡ଼ିଶା, ଓଡ଼ିଶା ବାହାରେ ତଥା ବିଦେଶରେ ଫକୀରମୋହନୀୟ ସଂଦୃଷ୍ଟି ଆଧାରିତ ବିଭିନ୍ନ କାର୍ଯ୍ୟକ୍ରମ; ଫକୀରମୋହନଙ୍କ ବଂଶଲତା; ମନିକା ଦାସଙ୍କ ଦ୍ୱାରା ପ୍ରଦତ୍ତ ଅଭିଭାଷଣ; ରଚିତ ବିଭିନ୍ନ ଗ୍ରନ୍ଥ ପ୍ରଭୃତି ବହୁବିଧ ବିଷୟ ଦ୍ୱାରା ଏ ସ୍ମୃତିକଥାର ଗର୍ଭ ପରିପୂର୍ଣ୍ଣ । ଏହି ସ୍ମୃତିକଥାର ପ୍ରତ୍ୟେକ ପୃଷ୍ଠାରେ ଜଣାଅଜଣା ଘଟଣା, ଦୁର୍ଘଟଣା, ସମସ୍ୟା, ସମସ୍ୟାର ସମାଧାନ ପ୍ରଭୃତି ଲିପିବଦ୍ଧ । ଏହାକୁ ପାଠ କଲେ ଯେ କୌଣସି ପାଠକ ୧୮୫୦ ପରବର୍ତ୍ତୀ ଓଡ଼ିଶାର ରାଜନୀତିକ-ଆର୍ଥନୀତିକ-ସାଂସ୍କୃତିକ ଚିତ୍ର ସଂପର୍କରେ କିଛି କିଛି ମାତ୍ରାରେ ଅବଗତ ହୋଇପାରିବେ ତଥା ଓଡ଼ିଶାର ଭାଷାସାହିତ୍ୟ ସମସ୍ୟା ସମ୍ବନ୍ଧରେ ବହୁବିଧ ସୂଚନା ପ୍ରାପ୍ତ ହୋଇପାରିବେ । ଫକୀରମୋହନଙ୍କ କଟକ, ବାଖରାବାଦ ବାସଗୃହ ଏବଂ ବାଲେଶ୍ୱର, ମଲ୍ଲିକାଶପୁର ବାସଗୃହ ସମ୍ବନ୍ଧରେ ଆତୀତିକ ତଥ୍ୟ ଏହି ସ୍ମୃତିକଥାରୁ ମିଳିପାରିବ ।

ତେବେ ଏଭଳି ଏକ ସ୍ମୃତିକଥା (memoir) ର ପ୍ରକାଶନ କାଳରେ ମୁଁ ଲେଖିକା ମନିକା ଦାସଙ୍କୁ ବଧେଇ ଜଣାଉଛି । ଏହି ସ୍ମୃତିକଥାଟିକୁ ସଂପାଦନା କରିବା ପାଇଁ ମୋତେ ମନିକା ଦାସ ଦାୟିତ୍ୱ ପ୍ରଦାନ କରିଥିବାରୁ ତାଙ୍କୁ କୃତଜ୍ଞତା । ଶେଷରେ ଓଡ଼ିଆ ପାଠକପାଠିକାମାନଙ୍କ ପାଇଁ ଏହି ସ୍ମୃତିକଥା ଫକୀରମୋହନୀୟ ବଂଶାବଳୀ ସଂପର୍କିତ ଅନେକ ନୂଆ ରାହା ଉନ୍ମୋଚନ କରିବ ବୋଲି ଆଶା ରଖୁଚି ।

**ଡ. ରବୀନ୍ଦ୍ର କୁମାର ଦାସ**

ଓଡ଼ିଆ ବିଭାଗ, ଶାନ୍ତିନିକେତନ

# ସୂଚୀ

# ସ୍ମୃତି ଏକ କଅଁଳ ଡେଣାର

ମୋତେ ସେତେବେଳକୁ ସାତ ବର୍ଷ ପୂରି ନଥାଏ । ଦିନେ ସକାଳୁ ଉଠି ସଜଳ ଆଖିରେ ସେଇ ବଡ଼ କୋଠାଟି ବିଷୟରେ ଭାବିବାକୁ ଲାଗିଲି, ଯେଉଁଠି ମୋ ମାଆ ମୋତେ ସବୁଦିନ ସକାଳେ ଆଣି ଛାଡ଼ିଦେଇ ଯାଉଥିଲେ । ମାନସ ପଟରେ ଭାସି ଉଠିଲା ବହୁ ମନୋରମ ଦୃଶ୍ୟ । ସେଇ ବଡ଼ ଘରେ ମୋର ପ୍ରବେଶ ହୋଇଥିଲା ମାତ୍ର ଏକବର୍ଷ ବୟସରେ । ଅବଶ୍ୟ ଚାରି ବର୍ଷ ବୟସ ପରଠାରୁ ନିୟମିତ ଭାବରେ ମୋ ଆଈଙ୍କ ପାଖରେ ସେଇ ଘରେ ମୋ ଦିନ ଆରମ୍ଭ ହେଉଥିଲା । ଆଉ ରାତିରେ ମୋତେ ମାଆବାପାଙ୍କ ପାଖକୁ ଫେରିଯିବାକୁ ହେଉଥିଲା । ହେଲେ ସାତବର୍ଷର ସେଇ ଛୋଟ ଝିଅଟିର ମନ ପ୍ରାଣ ମଜ୍ଜି ରହୁଥିଲା ସେ ବଡ଼ ଘରର ପ୍ରାଙ୍ଗଣରେ । ସେ ଘରର ସ୍ମୃତି ମୋ କୋମଳ ମନରେ ଏଭଳି ବସା ବାନ୍ଧି ରହିଥିଲା ଯେ ଆଜି ପରିଣତ ବୟସରେ ମଧ୍ୟ ତା'ର ଝଲକ ମୋତେ ଆଲୋଡ଼ିତ କରେ । ଫେରାଇନିଏ ମୋତେ ସେହି ରହସ୍ୟମୟ, ସ୍ନେହବିଜଡ଼ିତ ଦୁନିଆ ଆଡ଼କୁ ।

ଏହି ଘରେ ଥିଲା ଅନେକ କୋଠରୀ । ଭଳିକି ଭଳି ବିଦେଶୀ ଫୁଲ । ଡେଙ୍ଗା ଡେଙ୍ଗା ନଡ଼ିଆ ଗଛ । ଆଉ ଭିନ୍ନ ଭିନ୍ନ କିସମର ଫଳ ଗଛରେ ଭରା ସବୁଜ ବଗିଚା । ଦୀର୍ଘ ବାରଣ୍ଡା । ସୁଉଚ୍ଚ ଛାତ । ଫରାସୀ ଝର୍କା । ଗୋଟେ ଅନ୍ଧାରୁଆ- ତୀଖ ସିଡ଼ି, ଯାହା ଟେରାସ୍ ଯାଏଁ ଲମ୍ବିଥିଲା । ଟେରାସ୍ ଉପରୁ ଦିଗବଳୟ ବ୍ୟାପୀ ସେହି ଅଞ୍ଚଳର ଦୃଶ୍ୟ ଭାରି ମନୋରମ ଦିଶୁଥିଲା । ସଂକ୍ଷିପ୍ତରେ କହିବାକୁ ଗଲେ, ଜଣେ ସାତ ବର୍ଷର ଟିକି ଝିଅ ପାଇଁ ଏସବୁ କୌଣସି ଗୋଲୋକଧନ୍ଦାଠାରୁ କିଛି କମ୍ ନଥିଲା । ଗୋଟେ ଫାଣ୍ଟାସୀ ୱାର୍ଲ୍ଡ ରଚିବା ପାଇଁ ଏହା ଥିଲା ଏକ ଉପଯୁକ୍ତ ସ୍ଥାନ । କୌଣସି ପ୍ରାସାଦର ପ୍ରାଚୀର ସଦୃଶ ଏହାର ସୁଉଚ୍ଚ ପାଚେରୀକାନ୍ଥ ଭିତରେ ପ୍ରାୟ ଏକ ଏକର ପରିମିତ ଜାଗା ରହିଥିଲା । ଘରଟି ଚାରିପାଖରେ ଥିବା କୋଳାହଳମୟ ପରିବେଶଠାରୁ ଅଲଗା ହୋଇ ରହିଥିଲା । ଏଇ ସୁନ୍ଦର ଦୁନିଆରେ ମୋ ଦିନ ବେଳା ବିତୁଥିଲା ଓ ସନ୍ଧ୍ୟା ହେଲେ କଟକର କାଠଯୋଡ଼ି କୂଳରେ ମୋ ବାପାମାଆ ଭଡ଼ା ନେଇ ରହୁଥିବା ସାଧାରଣ ଘରଟିକୁ ମୋତେ ଫେରିଆସିବାକୁ ପଡୁଥିଲା । କିନ୍ତୁ ଅନେକ ସମୟରେ ଭିନ୍ନ ଭିନ୍ନ କାରଣ ଯୋଗୁଁ ମୁଁ

ସେହି ବଡ଼ ଘରେ ମୋ ଆଈଙ୍କ ସହ ରହିବାର ସୁଯୋଗ ପାଉଥିଲି । ସେ ବଡ଼ କୋଠାଟି ଥିଲା ଫକୀରମୋହନ ସେନାପତିଙ୍କ ଘର ଯାହା ଏଯାଏଁ ଛିଡ଼ା ହୋଇରହିଛି କଟକର ବାଖରାବାଦରେ, ଧୂଆଁ ପତ୍ରିଆ ସାହିରେ ।

ମୋ ମାଆ ବୀଣାପାଣି ମିଶ୍ର (ବିବାହ ପୂର୍ବରୁ ସେନାପତି) ଫକୀରମୋହନ ସେନାପତିଙ୍କ ନାତୁଣୀ ଥିଲେ । ସେ ଥିଲେ ରେଭେନସା ସ୍କୁଲର ଶିକ୍ଷୟିତ୍ରୀ । ତାଙ୍କ ସମୟର ଅଗ୍ରଣୀ ଶିକ୍ଷାବିଦ୍‌ଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ସେ ମାଟ୍ରିକ ପରୀକ୍ଷାରେ ସର୍ବାଧିକ ନମ୍ବର ରଖି ପ୍ରଥମ ସ୍ଥାନରେ ଉତ୍ତୀର୍ଣ୍ଣ ହୋଇଥିବାରୁ ତାଙ୍କୁ 'କୁଇନ ମେରୀ'ଙ୍କ ମେଡାଲ ମିଳିଥିଲା । ମୁଁ ଏ ଯାଏଁ ସେ ପଦକକୁ ମୋ ପାଖରେ ସାଇତି ରଖିଛି । ସେ କଲିକତା ବିଶ୍ୱବିଦ୍ୟାଳୟରୁ ସ୍ନାତକ ଉପାଧି ଅର୍ଜନ କରିଥିଲେ । ତାଙ୍କର ଅଧ୍ୟୟନର ମୂଳ ବିଷୟ ଥିଲା ଗଣିତ । କିନ୍ତୁ ତାଙ୍କର ଇଂରାଜୀ ଉପରେ କିଛି କମ୍ ଦଖଲ ନଥିଲା । କଲିକତାରେ ସ୍ନାତକ ଶିକ୍ଷା ପରେ ସେ ବି.ଏଡ୍. ପଢ଼ିବା ପାଇଁ ଶିଲୋଂ ଯାଇଥିଲେ । ମାଡ୍ରାସର ଆଡ୍ୟାୟାରଠାରେ ସେ ସ୍ୱୟଂ ମାଡାମ ମଣ୍ଟେସୋରିଙ୍କ ଠାରୁ ମଣ୍ଟେସୋରି ପାଠ୍ୟକ୍ରମ ଉପରେ ପ୍ରଶିକ୍ଷଣ ପାଇଥିଲେ । ଏ କଥାକୁ ନେଇ ସେ ଖୁବ ଗୌରବ ଅନୁଭବ କରୁଥିଲେ । ସେ ସମୟର ସ୍ମୃତି ସବୁ ମାଆ ଯେପରି ଶ୍ରଦ୍ଧାର ସହିତ ମନେପକାନ୍ତି ତାହା ଏବେ ସୁଦ୍ଧା ମୁଁ ଭୁଲିପାରି ନାହିଁ । ପରବର୍ତ୍ତୀ କାଳରେ ସେ ଜଣେ ଶିକ୍ଷୟିତ୍ରୀ ହେଲେ ଏବଂ ଓଡ଼ିଶାର ବିଭିନ୍ନ ବିଦ୍ୟାଳୟରେ ଶିକ୍ଷାଦାନ କରିଥିଲେ । ସେଥି ମଧ୍ୟରୁ କଟକର ରେଭେନସା ବାଳିକା ଉଚ୍ଚ ବିଦ୍ୟାଳୟ, ଭୁବନେଶ୍ୱରର କ୍ୟାପିଟାଲ ବାଳକ ବିଦ୍ୟାଳୟ ଆଦି ଅନ୍ୟତମ । କ୍ୟାପିଟାଲ ବାଳକ ବିଦ୍ୟାଳୟ ପରବର୍ତ୍ତୀ ସମୟରେ କ୍ୟାପିଟାଲ ବାଳିକା ଉଚ୍ଚ ବିଦ୍ୟାଳୟରେ ପରିଣତ ହେଲା ଓ ମୋ ମାଆ ଏହାର ପ୍ରଥମ ପ୍ରଧାନ ଶିକ୍ଷୟିତ୍ରୀ ଭାବେ ନିଯୁକ୍ତି ପାଇଥିଲେ । ପରେ ବାଲେଶ୍ୱରର ବାରବାଟୀ ବାଳିକା ଉଚ୍ଚ ବିଦ୍ୟାଳୟରେ ପ୍ରାୟ ଦଶ ବର୍ଷ ସେ ପ୍ରଧାନ ଶିକ୍ଷୟିତ୍ରୀ ଥିଲେ । ପ୍ରଧାନ ଶିକ୍ଷୟିତ୍ରୀରୁ ଜିଲ୍ଲାସ୍ତରୀୟ ବିଦ୍ୟାଳୟ ପରିଦର୍ଶିକା ଭାବେ ପଦୋନ୍ନତି ପାଇ ପଶ୍ଚିମ ଓଡ଼ିଶାର ତିନୋଟି ଜିଲ୍ଲାରେ ସେ କାମ କରିଥିଲେ । ତାଙ୍କର ମୁଖ୍ୟ କାର୍ଯ୍ୟାଳୟ ଥିଲା ସମ୍ବଲପୁର । ଚାକିରୀରୁ ଅବସର ନେବା ପରେ ମଧ୍ୟ ସେ କାମ କରିଚାଲିଥିଲେ । ସେ ସମଗ୍ର ଓଡ଼ିଶା ପାଇଁ ଶିଶୁ କଲ୍ୟାଣ ସଂଗଠିକା ହେବା ପାଇଁ ବିବେଚିତ ହୋଇଥିଲେ । ଭୁବନେଶ୍ୱରସ୍ଥିତ ରାଜ୍ୟପାଳ ବାସଭବନର ପରିସର ଭିତରେ ତାଙ୍କ ଅଫିସ ଥିଲା । ସେତେବେଳେ ରାଜ୍ୟପାଳ ଥିଲେ ବି.ଡି. ଜଟ୍ଟି । ମୋ ମାଆଙ୍କ କ୍ୱାର୍ଟର ରାଜଭବନ ପାଖରେ ଥିଲା । ସମୟ ସମୟରେ ଶିଶୁ କଲ୍ୟାଣ ସଙ୍ଗଠନର ବୈଠକଗୁଡ଼ିକରେ ଯୋଗଦେବା ପାଇଁ ମାଆ ଦିଲ୍ଲୀ ଯାଉଥିଲେ । ଥରେ ମୁଁ

ବି ତାଙ୍କ ସହ ଦିଲ୍ଲୀ ଯାଇଥିଲି । ସେଇଟା ମୋର ପ୍ରଥମ ଦିଲ୍ଲୀ ଯାତ୍ରା । ସେଇ ଦିଲ୍ଲୀ ମୋର ଦିନେ କର୍ମଭୂମି ହେବ ଏବଂ ମୋତେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଅନେକ ବର୍ଷ ଅଧ୍ୟାପନା କରି ସେଇଠି ଶେଷରେ ରହିବାକୁ ହେବ, ଏକଥା ସେଦିନ ମୁଁ ଭାବିପାରି ନଥିଲି ।

ମୋ ବାପା ଶ୍ରୀଯୁକ୍ତ କାଶୀନାଥ ମିଶ୍ର । ସେ କଲିକତା ବିଶ୍ୱବିଦ୍ୟାଳୟର ସେଣ୍ଟ ଜେଭିୟର୍ସ ଓ ଲୋରେଟୋ କଲେଜରେ ଗଣିତ ଅଧ୍ୟାପକ ଥିଲେ । ସେ ମାଡ୍ରାସ ପ୍ରେସିଡେନ୍ସି କଲେଜରେ ପଢୁଥିଲା ବେଳେ ଜଣେ ବିଦ୍ୱାନ ଛାତ୍ର ହିସାବରେ ସୁନାମ ଅର୍ଜନ କରିଥିଲେ । ସେ ଜଣେ ଜ୍ଞାନୀ ଓ ସୁଦର୍ଶନ ବ୍ୟକ୍ତି ଥିଲେ । ତାଙ୍କର ନିଷ୍କପଟ ହସ ଓ ଶିଷ୍ଟାଚାର ସମସ୍ତଙ୍କ ମନ ଜିଣି ନେଉଥିଲା । କିନ୍ତୁ ତଥାକଥିତ ଜୀବନରେ ସଫଳତା କହିଲେ ଯାହା ବୁଝାଏ ତାହା ତାଙ୍କ ଭାଗ୍ୟରେ କେବେ ଜୁଟି ନଥିଲା । ବିଚିତ୍ର ଥିଲା ତାଙ୍କ ଜୀବନ । ପ୍ରଖ୍ୟାତ ଲେଖକ ଗୋପୀନାଥ ମହାନ୍ତି ତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ କହୁଥିଲେ ଯେ, କୌଣସି ପାରମ୍ପରିକ ବୃତ୍ତି ନଥାଇ ମଧ୍ୟ ଜଣେ କେମିତି ଏତେ ଖୁସିରେ ରହିପାରେ ! ତାଙ୍କ ଭାଷାରେ ବାପା ଥିଲେ "ଆନନ୍ଦମୂର୍ତ୍ତି" । ସେ କହୁଥିଲେ ଯେ, ମୋ ବାପାଙ୍କୁ ଦେଖା କରିବା ଓ ତାଙ୍କ ସହ କଥାବାର୍ତ୍ତା ହେବା ତାଙ୍କ ପାଇଁ ସବୁ ଥର ଏକ ସୁଖଦ ଅନୁଭୂତି ଥିଲା । ଯୋଗକୁ ମୋ ମାଆଙ୍କର ସହପାଠୀ ଥିଲେ ଓଡ଼ିଆ ଉପନ୍ୟାସ 'ମାଟିମଟାଳ' ପାଇଁ ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ସେଇ ଗୋପୀନାଥ ମହାନ୍ତି । ମୋ ମାଆ ବହୁ ସମୟରେ ମୋତେ ଧରି ଗୋପୀନାଥ ମହାନ୍ତିଙ୍କ ଘରକୁ ଯାଉଥିଲେ । ଥରେ ଗୋପୀନାଥ ମହାନ୍ତି ମୋ ମାଆଙ୍କୁ କହିଥିଲେ, "ଜାଣିଛ ବୀଣା ମୁଁ ଯାହାଙ୍କୁ ଏ ଉପନ୍ୟାସଟି ଉତ୍ସର୍ଗ କରୁଚି ସେ ହେଉଛନ୍ତି ପ୍ରତିନିୟତ ଅଗ୍ନିସମ୍ମୁଖରେ ତପସ୍ୟାରତା ଜଣେ ନାରୀ । ଆଉ ସେଇ ନାରୀ ଜଣକ ଥିଲେ ଗୋପୀନାଥ ମହାନ୍ତିଙ୍କ ଧର୍ମପତ୍ନୀ । ଗୋପୀନାଥ ମହାନ୍ତିଙ୍କ ଘରେ ମୋ ମାଆ ସେ ସମୟର ବିଭିନ୍ନ ସାମାଜିକ ସମସ୍ୟା କିମ୍ବା ଜ୍ଞାନଚର୍ଚ୍ଚା ଗୋପୀନାଥଙ୍କ ସହ ମିଶି କରୁଥିଲେ । ସେମାନେ ସେତେବେଳେ ଅତ୍ୟନ୍ତ ପ୍ରଗତିଶୀଳ ଚେତନାର ବାର୍ତ୍ତାବହ ଥିଲେ ବୋଲି ମୁଁ ଏବେ ବୁଝୁଚି । ମୋର ଅବଚେତନ ସ୍ତରରେ ତାହାର ଛାପ ଏଯାଏଁ ରହିଚି । ଗୋପୀନାଥଙ୍କ ପୁଅ ପ୍ରଫେସର ଓଁକାର ମହାନ୍ତିଙ୍କ ସହ ମୋର ମାମୁ ଝିଅ ଭଉଣୀର ବାହାଘର ହୋଇଥିଲା । ମୋ ମାମୁଙ୍କର ନାମ ଥିଲା ବିଜନ ବିହାରୀ ଚୌଧୁରୀ । ସେ ମୋ ପଣଅଜା ଫକୀରମୋହନ ସେନାପତିଙ୍କ ଝିଅ ସରୋଜିନୀଙ୍କର ପୁଅ ଥିଲେ । ଏବେ ମଧ୍ୟ ଗୋପୀନାଥ ମହାନ୍ତିଙ୍କର ଝିଅ ଅଞ୍ଜଳିଙ୍କର ସହିତ ଆମେରିକାରେ ମୋର ଭେଟ ହୁଏ । ଆମେ ଏବେ ବି ପରସ୍ପର ସହ କଥାଭାଷା ହେଉ । ସେ କାଳର କଥାକୁ ମନେ ପକାଇ ଥଟ୍ଟାମଜା କରୁ ।

ଆଜିକାଲିର କୌଣସି ସାତ ବର୍ଷର ପିଲା (ଏପରିକି ଆଗ କାଳର ବର୍ଷର ପିଲା ମଧ୍ୟ) ନିଜ ପିତାମାତାଙ୍କ ସୁନାମ ବିଷୟରେ ସଚେତନ ହୋଇ ଗୌରବବୋଧ କରନ୍ତି ନାହିଁ । ପିଲାଟି ବଢୁଥିବା ସମୟରେ ତା' ସଂସ୍ପର୍ଶରେ ଆସୁଥିବା ଲୋକେ କେବେ କେମିତି ତା' ବାପା ମାଆଙ୍କ ବିଷୟରେ ଚର୍ଚ୍ଚା କଲେ ଯାଇ ପିଲାଟି ତା'ର ପରିବାରର ମର୍ଯ୍ୟାଦାକୁ ନେଇ ଗର୍ବ କରିବା ଶିଖେ । ମୋର କିଶୋରୀ ବୟସରେ ତଥା ମୋ କୈଶୋର ବୟସର ଶେଷ ପାହାଚରେ ଏ ପ୍ରକାରର ଗର୍ବ ଧୀରେ ଧୀରେ ମୋ ପାଖରେ ଫିକା ପଡ଼ି ଯାଇଥିଲା । କାରଣ ଜଣେ ବିଶେଷ ବ୍ୟକ୍ତିତ୍ୱ ମୋ ମାନସପଟରେ ଆବିର୍ଭାବ ହେବା ଆରମ୍ଭ କରିଦେଇଥିଲେ ଯିଏ ହେଉଛନ୍ତି ମୋ ବଂଶର ସୁପ୍ରସିଦ୍ଧ ମହାତ୍ମା ଫକୀରମୋହନ ସେନାପତି । ମୋ ଚାରିପାଖରେ ଚଳପ୍ରଚଳ କରୁଥିବା ଲୋକେ ତାଙ୍କ ସହ ମୋର ପରିଚୟ କରାଇବାରେ ଲାଗିଥିଲେ । ଅବଶ୍ୟ ଏଥିରେ ମୋ ନିଜ ସମ୍ପର୍କୀୟଙ୍କ ଭୂମିକା ସେତେ ବେଶୀ ନଥିଲା । ଏସବୁ ବିଷୟ ତ ମୁଁ ଭୁଲିଯିବା କଥା । କାରଣ ସ୍କୁଲ ପରେ ପ୍ରି-ୟୁନିଭରସିଟି ଶ୍ରେଣୀରେ ବିଜ୍ଞାନ ଅଧ୍ୟୟନ ପାଇଁ ମୁଁ କଲିକତାସ୍ଥିତ ଲେଡି ବ୍ରେବୋର୍ଣ୍ଣ କଲେଜକୁ ଚାଲିଗଲି । ତା' ପୂର୍ବରୁ ମଧ୍ୟ, ମୋ ବୟସ ପନ୍ଦର ପୂରିବା ପରେ, ପ୍ରି-ୟୁନିଭରସିଟି ଶ୍ରେଣୀର ବିଜ୍ଞାନ ଅଧ୍ୟୟନ ପାଇଁ ଶୈଳବାଳା ମହିଳା ମହାବିଦ୍ୟାଳୟରେ ମୁଁ ନାମ ଲେଖାଇଥିଲି ଓ କିଛି ମାସ ସେଇଠି ପଢ଼ିଥିଲି । ସେଠାରେ କିଛି ଓଡ଼ିଆ ଅଧ୍ୟାପକ, ମୋ ହଷ୍ଟେଲ ସାଙ୍ଗ ଓ ସହପାଠିନୀମାନେ କଥାବାର୍ତ୍ତା ହେଲା ବେଳେ ଅନେକ ସମୟରେ ଫକୀରମୋହନ ସେନାପତିଙ୍କ କଥା ଉଠାଉଥିଲେ । ସେ କଥା ମୋ କାନରେ ପଡୁଥିଲେ ମଧ୍ୟ ଦୁର୍ଭାଗ୍ୟବଶତଃ ସେତେବେଳେ ପର୍ଯ୍ୟନ୍ତ ନିଜେ ଫକୀରମୋହନ ସେନାପତିଙ୍କ ବଂଶଜା ବୋଲି ମୋର ସ୍ପଷ୍ଟ ଧାରଣା ହୋଇନଥିଲା । କିନ୍ତୁ କ୍ରମାଗତ ଭାବେ ଏଠୁ ସେଠୁ ମୁଁ ତାଙ୍କ ବିଷୟରେ ଶୁଣି ଆସୁଥିଲି । ଫକୀରମୋହନ ସେନାପତି ନାମକ ଉଜ୍ଜ୍ୱଳ ତାରକାଟିର ଐତିହ୍ୟର ଦ୍ୟୁତିରେ ମୁଁ ବିସ୍ମୟାଭିଭୂତ କିଶୋରୀଟିଏ ପାଲଟି ଯାଇଥିଲି । ଓଡ଼ିଆ ସାହିତ୍ୟର ସମୃଦ୍ଧ ଇତିହାସର ତଥା ଓଡ଼ିଆ ଜାତୀୟତା ନିର୍ମାଣର ଇତିହାସର ଯେଉଁ ବ୍ୟାପକ ପୃଷ୍ଠଭୂମି ରହିଛି ସେଥିରେ ଫକୀରମୋହନ ସେନାପତିଙ୍କ ସ୍ଥାନ ଉପଲବ୍ଧି କରୁ କରୁ ମନେ ହେଲା ମୁଁ କେତେ କ୍ଷୁଦ୍ର ! କେତେ ନଗଣ୍ୟ ! ମୋ ମାଆ ମଧ୍ୟ ଅଧିକାଂଶ ସମୟରେ କହୁଥିଲେ ଯେ, "ଆମେ ସବୁ ଫୀକରମୋହନଙ୍କ ଅଯୋଗ୍ୟ ବଂଶଧର ।"

ଏଇଠୁ ମୁଁ ଫେରି ଯାଉଛି ମୋ ଆଈଙ୍କ ପାଖକୁ । ସେ ହେଲେ ଶ୍ରୀମତୀ ହିରଣପ୍ରଭା ସେନାପତି । ଯିଏ କି ଫକୀରମୋହନ ସେନାପତିଙ୍କ ପୁତ୍ରବଧୂ ଓ

ମୋହିନୀମୋହନ ସେନାପତିଙ୍କ ଧର୍ମପତ୍ନୀ । ମୋ ପିଲାବେଳର ସବୁଠୁଁ ଅଭୁଲା ଦିନ ସବୁ ତାଙ୍କ ସହ କଟିଛି । ଆଗରୁ କହିଛି ଯେ ମୋତେ ପ୍ରତିଦିନ ନେଇ ଆଈଙ୍କ ଘରେ ଛାଡ଼ିଦିଆ ଯାଉଥିଲା । ସ୍କୁଲ ଯିବା ଆରମ୍ଭ କରିବା ପରେ ଅବଶ୍ୟ ସେଠାକୁ ଯିବାଟା ଟିକେ କମିଗଲା । ଆଈ ମୋ ପାଇଁ ମାଆ ହୋଇଯାଇଥିଲେ । ସେ ଯେପରି ମୋର ଯତ୍ନ ନେଉଥିଲେ ମନେ ପଡ଼ିଗଲେ ମୁଁ ଏବେ ବି ଭାବବିହ୍ୱଳ ହୋଇଯାଏ । କେବଳ ଯତ୍ନ ନୁହେଁ, ଫକୀରମୋହନ ସେନାପତିଙ୍କ ସାନ୍ନିଧରେ ମୋ ଆଈଙ୍କର ଯେଉଁ ସବୁ ଅନୁଭୂତି ହୋଇଥିଲା ସେସବୁ ଆଈଙ୍କଠୁଁ ସିଧାସଳଖ ଶୁଣି ସେ ପ୍ରବାଦ ପୁରୁଷଙ୍କ ଜୀବନର ମହାନତା ବିଷୟରେ ମୁଁ ଅନେକ କିଛି ଧାରଣା କରିପାରିଥିଲି । ଫକୀରମୋହନଙ୍କ ବିଷୟରେ ଆଈଙ୍କ ମୁହଁରୁ ଶୁଣିବାକୁ ସବୁବେଳେ ଭଲ ଲାଗୁଥିଲା । ପ୍ରକୃତରେ ସେତେବେଳେ ଯେତିକି ବୁଝୁଥିଲି ତା' ଅପେକ୍ଷା ଏବେ ଆଈ କହିଥିବା କଥା ସବୁ ଅଧିକ ପ୍ରାଞ୍ଜଳ ଭାବରେ ବୁଝିହେଉଛି ।

ମୋ ମାଆ କହିବାର ଶୁଣିଛି ଯେ ଆଈଙ୍କୁ ସ୍ୱୟଂ ଫକୀରମୋହନ ସେନାପତି ନିଜ ବୋହୂ ରୂପେ ବରଣ କରିବା ପାଇଁ ପସନ୍ଦ କରିଥିଲେ । ଆଈ ଏକ ବଙ୍ଗାଳୀ ପରିବାରର ଝିଅ ଥିଲେ । ତାଙ୍କ ଘର ଥିଲା ଢାକାରେ । ସେ କାଳର ମାଟ୍ରିକ ପାସ୍ ଝିଅ ଥିଲେ ସେ । ସେ ସମୟରେ ଏଇଟା ଖୁବ ବିରଳ କଥା ଥିଲା । ତା' ଛଡ଼ା ସେ ଖୁବ ସୁନ୍ଦର ପିଆନୋ ମଧ ବଜାଉଥିଲେ ଓ ସୋପ୍ରାନୋ ଗାଉଥିଲେ । କଟକର ବ୍ରାହ୍ମ ସମାଜ ହଲରେ ସେ ପିଆନୋ ବଜାଇ ଗାଉଥିବାର ମୁଁ ଦେଖିଛି । ତାଙ୍କର ଏପରି ପ୍ରତିଭା ଦେଖି ମୁଁ ସେତେବେଳେ ଖୁବ୍ ଚମକୃତ ହେଉଥିଲି । କେବଳ ବ୍ରାହ୍ମ ସମାଜ କାହିଁକି, ବାଖରାବାଦସ୍ଥିତ ଘରର ଟେରାସକୁ ଯାଇ ଅନେକ ସମୟରେ ଆଈ ଆମକୁ ନିରୋଳାରେ ଗୀତ ଗାଇ ଶୁଣାଉଥିଲେ । ଗାୟନ କଳା ମୁଁ ତାଙ୍କଠାରୁ ହିଁ ଉତ୍ତରାଧିକାରୀ ସୂତ୍ରରେ ପାଇଥିବି । କାରଣ ତାଙ୍କରି ଲାଗି ଛୋଟ ବେଳୁ ହିଁ ମୁଁ ସଙ୍ଗୀତ ପ୍ରତି ଆକର୍ଷିତ ହୋଇଥିଲି । ଟେରାସରେ ତାଙ୍କ ପାଖରେ ବସି ମୁଁ ତାଙ୍କୁ ଉଲ୍ଲସିତ ହୋଇ ଅନାଇ ରହୁଥିଲି । ସତେ ଯେପରି ତାଙ୍କ କଣ୍ଠରୁ ଭାସି ଆସୁଥିବା ସବୁ ହୃଦୟସ୍ପର୍ଶୀ ସଂଗୀତକୁ ମୁଁ ପିଇ ଯାଉଥିଲି । ସେ ସ୍ୱରର ଗୁଞ୍ଜରଣ ସେବେ ଠାରୁ ମୋ ପାଖରେ ସ୍ମୃତି ହୋଇ ରହିଛି ।

ସେଠାରେ ଆମେ କେତେଜଣ ଭାଇଭଉଣୀ (ମୁଁ ଓ ସବା ସାନ ମାଉସୀଙ୍କ ପିଲା) ତାଙ୍କର ମୁଗ୍ଧ ଶ୍ରୋତୃମଣ୍ଡଳୀ ସାଜୁଥିଲୁ । ତାଙ୍କ ଆତ୍ମସମ୍ମାନକୁ ନେଇ, ପ୍ରତିଭାକୁ ନେଇ ସେ ସର୍ବଦା ଶାନ୍ତ ଓ ଗମ୍ଭୀର ରହୁଥିଲେ । ସେ ପଢ଼ିବାକୁ ଭଲପାଉଥିଲେ । ବହି

ଥିଲା ତାଙ୍କର ନିତିଦିନିଆ ସାଥି । ତାଙ୍କ ଶେଯ ପାଖରେ ସବୁବେଳେ ବଙ୍କିମ ଚନ୍ଦ୍ର ଓ ରବି ଠାକୁରଙ୍କ ଉପନ୍ୟାସ ଥୁଆ ହୋଇ ରହୁଥିଲା । ସେ ଜଣେ କର୍ତ୍ତବ୍ୟନିଷ୍ଠା ଗୃହିଣୀ ଥିଲେ । ଭଲ ରୋଷେଇ କରିପାରୁଥିଲେ । ସିଲେଇ, ବୁଣାବୁଣି ଆଦିରେ ନିପୁଣା ଥିଲେ । ଦେଖିବାକୁ ମଧ୍ୟ ସୁନ୍ଦରୀ ଥିଲେ । ତାଙ୍କର କିଛି ସୁନ୍ଦର ହାତବୁଣା ଏମ୍ବ୍ରଏଡ଼ରି ଏବେ ମଧ୍ୟ ବାଖରାବାଦର ବଡ଼ ଘରେ ଦେଖିବାକୁ ମିଳିବ । ତାଙ୍କ ପରି ବହୁମୁଖୀ ପ୍ରତିଭାସମ୍ପନ୍ନ ମହିଳାଙ୍କୁ ଦେଖି ପିଲାବେଳେ ମୁଁ ଭାରି ଆଶ୍ଚର୍ଯ୍ୟ ହେଉଥିଲି ।

ସେତେବେଳେ ଅଧିକାଂଶ ସମୟରେ ସେ ଘରେ ଥିବା ଏକ କାଠ ଆଲମାରି ଉପରେ ଥୁଆ ଗୋଟେ ବଡ଼ ଲୁହା ସିନ୍ଦୁକ ମୋ ଦୃଷ୍ଟି ଆକର୍ଷଣ କରୁଥିଲା । ସେ ଆଲମାରିଟି ହିଁ ନିଜର ପ୍ରାଚୀନତା ଯୋଗୁଁ ଆଜି ମଧ୍ୟ ଦୁର୍ମୂଲ୍ୟ ସମ୍ପଦ ଭାବେ ପରିଗଣିତ ହୋଇପାରିଛି । ଗାଧୁଆଘରକୁ ଯିବା ବାଟରେ ସେ ଆଲମାରିଟି ରଖାଯାଇଥିଲା । ତେଣୁ ପ୍ରତିଦିନ ପ୍ରାୟ ଦୁଇ ତିନି ଥର ସେ ରହସ୍ୟମୟ ବିଶାଳ ଲୁହା ସିନ୍ଦୁକ ସହ ମୋର ଭେଟ ହେଉଥିଲା । ମୁଁ ଭାବୁଥିଲି ସେ ସିନ୍ଦୁକ ଖୋଲିବା ପିଲାଙ୍କ ପାଇଁ ନିଷେଧ ଥିବ । ମୋ ଆଈ ସେ ଘରର ଜଣେ ନିଷ୍ଠାପର ତତ୍ତ୍ୱାବଧାରକ ହିସାବରେ ତାହା ଉପରେ ନଜର ରଖୁଥିଲେ । କେବେ କେମିତି ସେ ଘରର ଚାକରମାନଙ୍କୁ ଆଲମାରି ଉପରକୁ ଚଢ଼ି ସଫା କରିବାକୁ କହୁଥିଲେ, ଯେପରିକି ସିନ୍ଦୁକ ଭିତରେ ଥିବା ବସ୍ତୁମାନ ଉଇ, ମୂଷା ଓ ଅନ୍ୟାନ୍ୟ ପୋକଜୋକଙ୍କ ଆକ୍ରମଣରୁ ସୁରକ୍ଷିତ ରହେ । ମୋତେ କୁହାଯାଇଥିଲା ଯେ ସେଥିରେ ଅନେକ ପାଣ୍ଡୁଲିପି ଓ ଫକୀରମୋହନ ସେନାପତିଙ୍କ ଜୀବନ ସହ ଜଡ଼ିତ କିଛି ମୂଲ୍ୟବାନ ଜିନିଷ ଅଛି । ସଂକ୍ଷେପରେ କହିଲେ ଫକୀରମୋହନଙ୍କ ସ୍ମୃତିଚିହ୍ନ । ଦଶବର୍ଷ ବୟସରେ ମୁଁ ବା କେମିତି ବୁଝିଥାଆନ୍ତି ଦୁନିଆ ପାଇଁ ସେ ସ୍ମୃତିଚିହ୍ନ ସବୁ କେତେ ମୂଲ୍ୟବାନ ହୋଇପାରେ । ଯାହା ହେଉ ପଛକେ, ସେ ସିନ୍ଦୁକ ମୋତେ ସମ୍ମୋହିତ କରି ରଖିଥିଲା; ଯେମିତିକି କୌଣସି ସଯତ୍ନେ ସାଇତା ଜିନିଷ ଅଦ୍ଭୁତ ଭାବେ ରହସ୍ୟମୟ ମନେହୁଏ, ଠିକ୍ ସେଇମିତି । ଆମେ ଭାବୁଥିଲୁ ସେଇ ସିନ୍ଦୁକ ଭିତରେ ଲୁଚିରହିଥିବା ଅକୁହା କାହାଣୀ ନିଶ୍ଚିତ ରୂପେ ଦୁର୍ବୋଧ ଆଉ କୌତୁହଳୀ ହୋଇଥିବ । ମୋ ପିଲାମନ ଭାବୁଥିଲା କେବେ ଦିନେ ସେ ସିନ୍ଦୁକର ରହସ୍ୟ ଜାଣିହୁଅନ୍ତା କି ? ସେଇ ସିନ୍ଦୁକ ମୋ ଦଶ ବର୍ଷ ବୟସର ପିଲା ମନକୁ ଗୁପ୍ତ ସମ୍ପଦ ସନ୍ଧାନର କଳ୍ପନାରେ ଆଚ୍ଛନ୍ନ କରିବା ଆରମ୍ଭ କରି ଦେଇଥିଲା ।

ଦୁର୍ଭାଗ୍ୟବଶତଃ ଯାଏଁ ସେ ରହସ୍ୟ-ରହସ୍ୟ ହୋଇରହିଛି । ଏଇ କିଛି ଦିନ ଆଗରୁ ଫକୀରମୋହନ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଶ୍ରୀଯୁକ୍ତ ଶିବପ୍ରସାଦ

ଅଧିକାରୀ, ଫକୀରମୋହନଙ୍କର ଓଡ଼ିଆ ସାରସ୍ୱତ ଜଗତକୁ ଅବଦାନ ସଂପର୍କରେ ସ୍ମରଣ କରିବା ଉଦ୍ଦେଶ୍ୟରେ ଅନୁଷ୍ଠିତ ଏକ ତିନିଦିନିଆ କାର୍ଯ୍ୟକ୍ରମକୁ ମୋତେ ନିମନ୍ତ୍ରଣ କରିଥିଲେ । ମୋ ବକ୍ତୃତାରେ ମୁଁ ସେ ସିନ୍ଦୁକ କଥା ଉଠାଇଥିଲି । ସେଠାରେ ଉପସ୍ଥିତ ଅନେକ ବିଦ୍ୟାର୍ଥୀ, ଅଧ୍ୟାପକ ତଥା ଗବେଷକ ଏ କଥା ଶୁଣି ଏତେ ମାତ୍ରାରେ ଆଗ୍ରହୀ ହୋଇପଡ଼ିଥିଲେ ଯେ ମୁଁ ଆଶ୍ଚର୍ଯ୍ୟ ନ ହୋଇ ରହିପାରିଲି ନାହିଁ । ସେମାନେ ସମସ୍ତେ ଜାଣିବାକୁ ଚାହିଁଥିଲେ ଯେ ସେ ସିନ୍ଦୁକରେ କଅଣ ଅଛି ? ସେମାନେ ଆଶାବାଦୀ ଯେ ଦିନେ ଏହି ରହସ୍ୟ ଉଦ୍‌ଘାଟିତ ହେବ । ସେମାନେ ପ୍ରାୟ ଏଇଆ ଭାବୁଥିଲେ ଯେ ସେଥିରେ ଫକୀରମୋହନଙ୍କ ବିରଳ ପାଣ୍ଡୁଲିପି ଥାଇପାରେ । ଦେଖାଯାଉ, ସନ୍ଧାନ ତ ଏ ଯାଏଁ ଜାରି ରହିଛି ।

ବାଖରାବାଦ ଘର ବୋଲି ଯେଉଁ ବଡ଼ ଘରଟି କଥା କହୁଥିଲି ସେଇଟା ଫକୀରମୋହନ ସେନାପତିଙ୍କ ଦ୍ୱାରା ନିର୍ମିତ । ସବୁ କଥା ପରି ଏ ଘରର ତଥା ଏ ଘର ବଗିଚାର ରୂପରେଖ ନିର୍ଣ୍ଣୟରେ ସେ ନିଜେ ଅନେକ ମାତ୍ରାରେ ସକ୍ରିୟ ଥିଲେ । ବଗିଚାରେ ଅନେକ ଶୋଭାବର୍ଦ୍ଧନକାରୀ ଗଛ ରହିଥିଲା । ବିଦେଶୀ ଫୁଲଗଛ ଲୋକଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା । ଗଛପ୍ରେମୀମାନେ ବିଶେଷ ଭାବରେ ଆକୃଷ୍ଟ ହେଉଥିଲେ । ଏବେବି ସେଠାରେ ସେମିତି ଗଛମାନ କିଛି ଦେଖିବାକୁ ମିଳେ । ଜାମ୍ବୁରୋଳ ଗଛଟି ଆମ ଭାଇଭଉଣୀଙ୍କ ପାଇଁ ଏକ ମୁଖ୍ୟ ଆକର୍ଷଣ ଥିଲା । ମୋ ଆଈ, ଯାହାଙ୍କୁ ଆମେ ସବୁ ଦିଦିମା ବୋଲି ଡାକୁଥିଲୁ, ସେ କହୁଥିଲେ ଯେ ସେ ଗଛଟିକୁ ଫକୀରମୋହନ ସେନାପତି ନିଜେ ମଗାଇଥିଲେ ବାଖରାବାଦ ଘରେ ଲଗାଇବା ପାଇଁ ।

ଏ ଘରେ ମୁଁ ବେଳେବେଳେ ବହୁତ ସମୟ ରହିଯାଉଥିଲି । ମାଆଙ୍କୁ ଏ ବାବଦରେ କିଛି ପଚାରୁନଥିଲି କାରଣ ମୋତେ ସେଠାରେ ରହିବାକୁ ମଜା ଲାଗୁଥିଲା । ସେ ଘରର ଉଚ୍ଚା ଛାତ ଓ କଡ଼ି ବରଡ଼ା ମୋତେ ଭଲ ଲାଗୁଥିଲା । ହଁ, ଏଇଟା ମଧ କହିବା ଅନାବଶ୍ୟକ ଯେ ମୋ ମାଉସୀଙ୍କ ପିଲାମାନଙ୍କ ସହ ରହିବା ମଧ ମଜାଦାର କଥା ଥିଲା । ମୁଁ ମୋ ବାପା ମାଆଙ୍କର ଏକ ମାତ୍ର ସନ୍ତାନ । ଏକ ମାତ୍ର ସନ୍ତାନ ଏକୁଟିଆ ହୋଇଯିବା ସ୍ୱାଭାବିକ । ଏବେ ବୁଝୁଛି ଯେ ମୋର ଚିନ୍ତାଶୀଳା ସ୍ନେହମୟୀ ମାଆ ଜାଣିଶୁଣି ମୋତେ ନେଇ ବାଖରାବାଦ ଘରେ ଛାଡିଦେଉଥିଲେ କାହିଁକି ? ମୁଖ୍ୟତଃ ଦୁଇଟି କାରଣରୁ - ଦିଦିମାଙ୍କ ପାଖରେ ମୁଁ ନିରାପଦରେ ରହିବି ଏବଂ ମୋ ମାଉସୀଙ୍କ ପିଲାମାନଙ୍କର ସାହଚର୍ଯ୍ୟ ପାଇବି । ମୁଁ ସ୍କୁଲ ଗଲାବେଳେ, କଲେଜ ଗଲା ବେଳେ

ଏବଂ ତା'ପରେ ପରବର୍ତ୍ତୀ ଦିନଗୁଡ଼ିକରେ ମଧ୍ୟ ଆଈଙ୍କ ପାଖକୁ ମଝିରେ ମଝିରେ ଆସୁଥିଲି । ଗ୍ରୀଷ୍ମ ମାସଗୁଡ଼ିକରେ ମୋ ମାଉସୀଙ୍କ ପିଲାମାନେ, ମୋ ମାଉସୀମାନେ, ଆଈ, ଆଉ ମୋ ମାଆ- ଆମେ ସମସ୍ତେ ମିଶି କେବେ କେବେ ଅପରାହ୍ଣରେ ବୈଠକଖାନାର ଲାଲ ଚଟାଣରେ ଗଡ଼ିପଡୁ ଥିଲୁ । ମୁଁ ସେ ବିଶାଳ ଛାତକୁ ଚାହିଁ କଳା ରଙ୍ଗର କଡି ବରଡ଼ା ସବୁ ଗଣିବା ଆରମ୍ଭ କରିଦେଉଥିଲି । ଆମ ଉପରେ କଁ କଁ ଶବ୍ଦ କରି ପଙ୍ଖାଟିଏ ଧୀରେ ଧୀରେ ଘୂରୁଥିଲା । ସେହି ଦିନଗୁଡ଼ିକର କଥାଭାବି ଅନେକ ବର୍ଷ ଧରି ମୁଁ ପୁଲକିତ ହୋଇଛି । ପ୍ରକୃତରେ ଏଇଟା ଆମ ଦୈନନ୍ଦିନ ଜୀବନର ଏକ ଅଂଗ ଥିଲା । ଏହାକୁ ନେଇ ମୁଁ ଏବେ ବି ଭାବପ୍ରବଣ ହୋଇଯାଏ । ସେ ସମୟର ଜୀବନ ଏବର ଜୀବନଠାରୁ ଅନେକ ଅଲଗା ଥିଲା । କହିବା ବାହୁଲ୍ୟ ସେତେବେଳର ଜୀବନର ସ୍ୱାଦ ଥିଲା ସୁଖଦ ଓ ଉପଭୋଗ୍ୟ ।

ଖରାବେଳେ ଶୋଇବା ଆମ ପିଲାମାନଙ୍କ ପାଇଁ ବାଧ୍ୟତାମୂଳକ ଥିଲା । ସ୍ୱାଭାବିକ କଥା ଯେ, ଏଇଟା ଆମର ପସନ୍ଦ ନଥିଲା । ତେଣୁ ପ୍ରାୟତଃ ବଡ଼ ଲୋକମାନଙ୍କ ଆଖି ଲାଗିଗଲା ପରେ ଆମେ ସେଠୁ ଖସିଯିବାର ଯୋଜନା କରୁଥିଲୁ । ଅନେକ ସମୟରେ ଏ ପ୍ରୟାସ ବିଫଳ ହେଉଥିଲା । ଖସିଯିବାରେ ସଫଳ ହେଲେ ଆମେ ଛାତକୁ ଚାଲିଯାଉ ଥିଲୁ । 'ଛାତ' ହେଉଛି ଘରର ଗୋଟେ ବଡ଼ ଟେରାସ୍ । ସେଠାରେ ଆମର ମନ ଇଚ୍ଛା ଖେଳାବୁଲା ଚାଲେ । ଆମ ପାଇଁ ଅନ୍ୟ ଆକର୍ଷଣ ହେଲା ଭଣ୍ଡାର ଘର । ଯେଉଁଠି ଦିଦିମା ତାଙ୍କ ଦ୍ୱାରା ପ୍ରସ୍ତୁତ ଆଚାର ଆଦି ସହିତ ଅନ୍ୟାନ୍ୟ ସଦ୍ୟପ୍ରସ୍ତୁତ ଦ୍ରବ୍ୟ ଯଥା ନାନାଦି ମିଷ୍ଟାନ୍ନ ସାଇତି ରଖୁଥିଲେ । ସନ୍ଧ୍ୟାରେ ଆସୁଥିବା ଅତିଥିଙ୍କ ପାଇଁ ସେ ଦ୍ରବ୍ୟ ସବୁ ଉଦ୍ଦିଷ୍ଟ ଥିଲା । ଦିଦିମାଙ୍କ ଦ୍ୱାରା ରନ୍ଧା ଖାଦ୍ୟକୁ ଲୋକେ ଭାରି ପ୍ରଶଂସା କରୁଥିଲେ । ସୁସ୍ୱାଦୁ ଜଳଖିଆ, ଆଚାର ଆଦି ପ୍ରସ୍ତୁତ କରି ଲୋକଙ୍କୁ ଆପ୍ୟାୟିତ କରିବାରେ ସେ ବିଶେଷ ରୁଚି ରଖୁଥିଲେ ।

ବେଳେବେଳେ ଅତିଥିମାନଙ୍କ ପାଇଁ ଭୂରିଭୋଜନର ଆୟୋଜନ ହେଉଥିଲା । ଏମିତିରେ ତ ନିତିଦିନିଆ ରନ୍ଧାରନ୍ଧି ବି ଭୋଜି ପରି ଲାଗୁଥିଲା । ଖାଇବା ଘରେ ପଡ଼ିଥିବା ଗୋଟେ ବଡ଼ କଳା ରଙ୍ଗର ଅଣ୍ଡାକୃତି ଟେବୁଲ ଚାରିପାଖରେ ବସି ଆମେ ସମସ୍ତେ ସାଙ୍ଗହୋଇ ଖାଉଥିଲୁ । ଖାଇବା ପାଇଁ ନିର୍ଦ୍ଧାରିତ ସମୟ ନିର୍ଘଣ୍ଟକୁ ସମସ୍ତଙ୍କୁ ମାନିବାକୁ ପଡୁଥିଲା । କେହି ନ କହିଲେ ମଧ୍ୟ ସମସ୍ତେ ଏ ନିୟମ ପାଳନ କରି ଏହାର ମର୍ଯ୍ୟାଦା ରକ୍ଷା କରୁଥିଲେ ।

ପାଣି ପିଇବା ଗ୍ଲାସଠାରୁ ଆରମ୍ଭ କରି ସେତେବେଳେ ବ୍ୟବହୃତ ହେଉଥିବା ସବୁ ବାସନ କଂସାପିତ୍ତଳର ଥିଲା । ଖାଇବା ବେଳେ ଆମକୁ କିଛି କରିବାକୁ ପଡୁନଥିଲା କାରଣ ଚାକରମାନେ ହିଁ ବଢ଼ାବଢ଼ି କରି ଦେଉଥିଲେ । ବିଶେଷ କରି ଭାତ ଓ ଡାଲି । କିନ୍ତୁ ମାଛ, ଅନ୍ୟାନ୍ୟ ଆମିଷ ଓ ବିଶେଷ ନିରାମିଷ ବ୍ୟଞ୍ଜନ ସବୁ ଦିଦିମା ଓ ଆମ ସାନ ମାଉସୀ ନିଜେ ହିଁ ଅତି ଶ୍ରଦ୍ଧା ଓ ଯତ୍ନ ସହକାରେ ପରଷି ଦେଉଥିଲେ । ମୁଁ ଭଲ ଭାବରେ ଖାଉଛି କି ନାହିଁ ଦେଖିବା ପାଇଁ ଦିଦିମା ମୋ ଥାଳି ଉପରେ ନଜର ରଖୁଥିଲେ । ସେ ଦେଖୁଥିଲେ ଯେମିତି ମୁଁ ମାଛ କଣ୍ଟା କାଢ଼ି ଭଲଭାବରେ ଖାଦ୍ୟ ଖାଏ । ବେଳେ ବେଳେ ସେ ମାଛରୁ କଣ୍ଟା ଛଡ଼େଇ ଭାତରେ ମିଶେଇ ଦେଉଥିଲେ । ଯେମିତିକି ଅତି କମ ହେଲେ ବି କିଛି ନା କିଛି ଯାଇ ମୋ ପେଟରେ ପଡ଼ିବ ଏବଂ ମୁଁ ଏହି ପ୍ରୋଟିନ୍‌ଯୁକ୍ତ ଖାଦ୍ୟ ଖାଇ ହୃଷ୍ଟପୁଷ୍ଟ ରହିବି ।

ଏବେ ଏସବୁ କଥା ମନେ ପଡ଼ିଲେ ଆଖିରେ ଲୁହ ଜକେଇଆସେ ଏବଂ ହୃଦୟ କୋହରେ ଭରିଉଠେ । କେଡ଼େ ବିରଳ ମନେ ହୁଏ ସେହିଭଳି ସ୍ନେହସିକ୍ତ ବ୍ୟବହାର । ମନେପଡ଼େ ଶୈଶବକାଳ, ଯେତେବେଳେ ଦିଦିମା ମୋତେ ତାଙ୍କ କୋଳରେ ଶୁଆଇ ରୂପା ଶାମୁକାରେ ଦୁଧ ପିଆଇ ଦେଉଥିଲେ । ଆଜି ଷାଠିଏ ବର୍ଷ ପରେ ବି ସେ ସ୍ମୃତି ମୋତେ ଆଚ୍ଛନ୍ନ କରି ରଖିଛି । ଦିଦିମା ଡାହାଣ ହାତରେ ଶାମୁକା ଧରିଥିବେ ଆଉ ଚଟାଣରେ ଥୁଆ ହୋଇଥିବା ରୂପା ତାଟିଆରୁ ଆସ୍ତେକିନା ଉଷୁମ ଦୁଧ ଟିକିଏ ଟିକିଏ କାଢ଼ି ଆଙ୍ଗୁଳିରେ ଗରମ ଛାଡ଼ିଲାଣି କି ନାହିଁ ଟିପି ଦେଖୁଥିବେ । ବେଳେ ବେଳେ ଦୁଧକୁ ଥଣ୍ଡା କରିବା ପାଇଁ ଫୁଙ୍କି ଦେଉଥିବେ । ତା' ପରେ ମୋ ପିଇବା ମାଫିକ ଉଷୁମ ମନେ ହେଲେ ମୋତେ ପିଆଇ ଦେଉଥିବେ । ସେ ଦୁଧ ଆମ ନିଜ ଘରେ ପାଳିତ ଗାଈମାନଙ୍କଠାରୁ ଦୁହାଁଯାଉଥିଲା । ମୋର ମନେଅଛି କେମିତି ଦିନସାରା ହାଣ୍ଡି ହାଣ୍ଡି ଦୁଧ ଚୁଲିରେ ଫୁଟୁଥାଏ । ଷାଠିଏ ବର୍ଷ ବିତିଗଲାଣି କିନ୍ତୁ ସେହି ସ୍ମୃତି ମୋତେ ଏବେବି ରୋମାଞ୍ଚିତ କରାଏ ।

ଚୁଲିରେ ପ୍ରାୟତଃ କାଠ ନହେଲେ କୋଇଲା ଜାଳେଣି ରୂପେ ବ୍ୟବହାର କରାଯାଉଥିଲା । ଏବେ ବି ମୁଁ ସେ ବାସ୍ନା ଅନୁଭବ କରିପାରୁଛି - ଫୁଟନ୍ତା ଦୁଧର ଧୁଆଁଳିଆ ବାସ୍ନା । ଆଉ ଦିଦିମାଙ୍କ ଶାଢ଼ୀରେ ଲାଖିଥିବା ତାଙ୍କ ଦେହର ମିଠା ବାସ୍ନା । ଦିଦିମା ଭାରି ରୁଚିସମ୍ପନ୍ନା ମହିଳା ଥିଲେ । ସ୍ୱଚ୍ଛତା ଓ ସୌନ୍ଦର୍ଯ୍ୟବୋଧତା ପ୍ରତି ସେ ବିଶେଷ ଧ୍ୟାନ ଦେଉଥିଲେ । ମୋର ମନେଅଛି ସେ କେମିତି ଆମ ଭଳି ପିଲାଙ୍କ

ପଛରେ ଧାଉଁଥିଲେ ଆମମାନଙ୍କ ଦେହରେ ତାଜା ଲହୁଣୀ ଲଗେଇବା ପାଇଁ । ଯାହା ଦ୍ୱାରା କି ଆମ ଚର୍ମ ସୁନ୍ଦର ଦିଶିବ । ତାଙ୍କରି ପାଇଁ ମୋ ପରବର୍ତ୍ତୀ ଜୀବନରେ ଅନେକ ଦିନ ଯାଏଁ ମୋ ତ୍ୱଚା ଉଜ୍ଜ୍ୱଳ ହୋଇ ରହିଥିଲା ଓ କେତେ ଲୋକ ସେଥିପାଇଁ ପ୍ରଶଂସା ବି କରୁଥିଲେ । ଆଜି ଅବଶ୍ୟ ଏହା କେବଳ ଏକ ମୃତ ଗୌରବ ହୋଇ ରହି ଯାଇଛି ।

ରୋଷେଇ ଘର ଓ ତା'କୁ ଲାଗିରହିଥିବା ଭଣ୍ଡାର ଘର ବିଷୟରେ ଆଉ ଟିକିଏ କହେ । ସେ ଦୁଇଟି କୋଠରୀ ଯଥେଷ୍ଟ ବଡ଼ ଥିଲା । ଘରେ କାମକରୁଥିବା ଚାକରମାନେ ଦିଦିମାଙ୍କ ତତ୍ତ୍ୱାବଧାନରେ ସବୁ କିଛି ସଫାସୁତୁରା ରଖୁଥିଲେ ଓ ଜିନିଷପତ୍ର ଯଥା ସ୍ଥାନରେ ସାଇତି ରଖୁଥିଲେ । ଥାକଗୁଡ଼ିକରେ ସଜ୍ଜିତ ହୋଇ ରହିଥିବା ନାନାଦି ଆକାରବିଶିଷ୍ଟ ରୂପା ବାସନଗୁଡ଼ିକ ଚକ୍ ଚକ୍ କରୁଥିଲା । ଗୋଟେ କୋଣରେ ଆଳୁ ଓ ପିଆଜ ଗଦା ହୋଇ ରହୁଥିଲା ।

ସବୁଦିନ ତାଜା ପରିବା ଆସୁଥିଲା । ଆମ ଚିହ୍ନା ବେପାରୀମାନେ ସବୁଦିନ ସକାଳେ ଆସି ଆମ ଅଗଣାରେ ତାଙ୍କ ଜିନିଷମାନ ବାହାର କରି ରଖିବେ । ତା'ପରେ ଦିଦିମା ଆସି ଗୋଟେ ପିଢ଼ାରେ ବସିବେ । ଆଉ କ'ଣ କେମିତି ପରିବା ଆସିଛି ସବୁ ଟିକିନିକି କରି ତଦାରଖ କରିବେ । ତାଙ୍କ ମନକୁ ପାଇଲେ ପ୍ରଶଂସା କରିବେ ନହେଲେ ବିଦ୍ରୂପକରି କହିବେ ଯେ ତାଙ୍କ ପସନ୍ଦଯୋଗ୍ୟ ଭଲ ମାନର ପନିପରିବା ଆଣିବା ପାଇଁ ବେପାରୀମାନେ ଜମା ଯତ୍ନବାନ ହେଉନାହାନ୍ତି । ପରିବା ସବୁ ତାଜା ଅଛି କି ନାହିଁ ସେଥି ପ୍ରତି ତ ସେ ସର୍ବଦା ସଚେତନ ରହୁଥିଲେ, ପୁଣି ତା' ସହିତ କେଉଁ ପରିବା କେମିତି କଟାଯିବା ଉଚିତ ସେ କଥା ପ୍ରତି ମଧ୍ୟ ବିଶେଷ ଧ୍ୟାନ ଦେଉଥିଲେ । ଚାକରମାନେ (ସେମାନଙ୍କୁ ଘରର ପରିଚାରକ କହିବା ଉଚିତ ମନେ ହେଉଚି) ସେଥିରେ ଭୁଲଭଟକା କଲେ ଦିଦିମା ଭାରି ବିରକ୍ତ ହେଉଥିଲେ । ପରିବା କିଣାକିଣିର ସମଗ୍ର ପ୍ରକ୍ରିୟାଟି ଆମ ପିଲାମାନଙ୍କ ପାଇଁ ଏକ ଚିତ୍ତାକର୍ଷକ ବ୍ୟାପାର ଥିଲା । ଆମେ ତଳେ ବସି ଆମୂଳଚୂଳ ସମଗ୍ର ଘଟଣାର ମୂକ ଦର୍ଶକ ସାଜୁଥିଲୁ । ସେଇ ସମାନ କଥା ପୁଣି ହେଉଥିଲା ଯେତେବେଳେ ମାଛବାଲା ତା'ର ବାଉଁଶ ଟୋକେଇରେ ସଜ ମାଛ ଧରି ଆସୁଥିଲା । ତା'ର ଗୋଟେ ବଡ଼ ପନିକି ଥିଲା । ଆମେ ମାଛ କଟା ହେବା ଦେଖୁଥିଲୁ କିନ୍ତୁ ମାଂସ କଟାହେବା ଦେଖି ପାରୁନଥିଲୁ । ବୋଧହୁଏ, ଏହା ମଧ୍ୟ ତାଙ୍କରି କଡ଼ା ନିର୍ଦ୍ଦେଶ ଥିଲା ଯେ କୁକୁଡ଼ା କଟା କାମଟି ପିଲାଙ୍କ ଆଗରେ ହେବ ନାହିଁ । ତେଣୁ କୁକୁଡ଼ା ମାରିବା ଓ ମାଂସ କାଟିବା କାମଟି ବଗିଚାରେ ଥିବା ବୁଦା ଆଢୁଆଳରେ ହେଉଥିଲା । କିନ୍ତୁ ଏଥିପାଇଁ

ଆସୁଥିବା କୁକୁଡ଼ାକୁ ଆମେ ପିଲାମାନେ ଦେଖି ଦେଉଥିଲୁ । ଆମେ ପିଲାଲୋକ କାହିଁକି ଭାବିଥାନ୍ତୁ ଯେ ସେ କୁକୁଡ଼ାଗୁଡ଼ିକ ହିଁ ସୁସ୍ୱାଦୁ ଏବଂ ସୁଦୃଶ୍ୟ ମାଂସ ତରକାରୀରେ ପରିଣତ ହୁଅନ୍ତି ବୋଲି ।

ମାଂସ କଟା ପରେ ଆରମ୍ଭ ହେଉଥିଲା ମସଲା ପ୍ରସ୍ତୁତି । ମସଲା ବାଟିବା ପାଇଁ ଗୋଟେ ବଡ଼ ଶିଳପୁଆ ଥିଲା । ମସଲା ବାଟିଲା ବେଳେ ସବୁ ମସଲା ଯେପରି ଠିକ୍ ଭାବରେ ବଟାହୁଏ ଓ ବହଳିଆ ରହେ ସେଥିପ୍ରତି ମଧ୍ୟ ଧ୍ୟାନ ଦେବାକୁ ପଡୁଥିଲା । ସବୁ କିଛି ମିଶି ପ୍ରସ୍ତୁତ ହେଉଥିଲା ନିଖୁଣ ଓ ସ୍ୱାଦିଷ୍ଟ ବ୍ୟଞ୍ଜନ । ଆରମ୍ଭରୁ ଶେଷଯାଏଁ ସବୁକିଛି ରୋଷେଇ କାର୍ଯ୍ୟକୁ ଦିଦିମା ନିଜେ ତଦାରଖ କରୁଥିଲେ ।

ଏସବୁ କଥା ସ୍ୱାଭାବିକ ଭାବେ ଘଟିଚାଲିଥିଲା । ସକାଳ ଜଳଖିଆ ବେଳେ ଏକ ବଡ଼ ପିତଳ ଥାଳିରେ ପାଖାପାଖି ଡଜନେ ସରିକି ଅଣ୍ଡା ପୋଚ୍ ରହୁଥିଲା । ରାନ୍ଧୁଣିଆ ସବୁ ଅଣ୍ଡା ପୋଚ୍ ଆଣି ଏକା ସାଙ୍ଗରେ ଗୋଟିଏ ପାତ୍ରରେ ଟେବୁଲ ଉପରେ ଥୋଇଦେଉଥିଲେ । ଆଜିକାଲି ପରି ସବୁ ଲୋକଙ୍କ ପାଇଁ ଅଲଗା ଅଲଗା ଥାଳିରେ ପରିଷିବା ପରି ନୁହେଁ । ଯାହା ହେଉ ଏହା ମଧ୍ୟ ଆମମାନଙ୍କ ପାଇଁ ଗୋଟେ ବିରଳ ଦୃଶ୍ୟ ଥିଲା । ଏହାର ସ୍ମୃତି ଏବେ ମଧ୍ୟ ମୋ ମନରେ ସ୍ପଷ୍ଟ ରହିଅଛି । ଆମମାନଙ୍କୁ ଯାହା ପରଷା ଯାଉଥିଲା ତା'ଠାରୁ ବେଶୀ ଖାଇନେବା ପାଇଁ ଖୋସାମତ କରାଯାଉଥିଲା । ଆମେ ଇଚ୍ଛା କଲେ ବଜାରରୁ ଆସିଥିବା ପାଉଁରୁଟି ସହ ଆହୁରି ଅଣ୍ଡା ପୋଚ୍ ଖାଉଥିଲୁ । ଟେବୁଲରେ ସୁସଜ୍ଜିତ ହୋଇ ରହିଥିବା ଲହୁଣିଦିଆ ପାଉଁରୁଟି ଅଣ୍ଡା ପୋଚ୍‌ଠାରୁ କିଛି କମ୍ ସୁନ୍ଦର ନଥିଲା । ଅବଶ୍ୟ କେବେ କେମିତି ଆମ ନିତିଦିନିଆ ଜଳଖିଆ ବଦଳରେ ପ୍ରସିଦ୍ଧ 'ଦାମ ମହାରାଜ' ହୋଟେଲରୁ ଆସୁଥିବା ପରଟା, ଡାଲପୁରି ସହିତ ଆଳୁ ତରକାରୀ ପରଷା ଯାଉଥିଲା ।

ମଧ୍ୟାହ୍ନ ଭୋଜନ ଏହାଠୁଁ ବଳି ଜଟିଳ ମାମଲା ଥିଲା । ଅତି କମ୍‌ରେ ଦଶଟି ବ୍ୟଞ୍ଜନ ସହ ଆମ ମଧ୍ୟାହ୍ନ ଭୋଜନ ଏକ ନିର୍ଦ୍ଦିଷ୍ଟକ୍ରମରେ ପରିବେଷଣ କରାଯାଉଥିଲା । ପ୍ରଥମେ ଆସିବ କିଛି ପିତା ବା କଷା ଖାଦ୍ୟ । ଯେମିତିକି ପିତା ଲାଉ କିମ୍ବା ନିମ୍ବପତ୍ରକୁ ବାଇଗଣ ସହ ମିଶେଇ ତିଆରି ହୋଇଥିବା ଶୁକ୍ତ । ତା'ପରେ ଆସିବ ପୋସ୍ତ ବଟା ସହ ତିଆରି ଶାଗ ଓ ଆଳୁର ବ୍ୟଞ୍ଜନ । ତା'ପରେ କୌଣସି ଏକ ମସଲାଦାର ତରକାରୀର ପାଳି । ଯେଉଁଥିରେ ଋତୁ ଅନୁଯାୟୀ ଅଲଗା ଅଲଗା ପନିପରିବା ବ୍ୟବହୃତ ହୋଇଥିବ, ଯେମିତିକି ଫୁଲକୋବି । ତା' ପଛକୁ ଦୁଇ ତିନି ପ୍ରକାରର ମାଛ ମାଂସର ବ୍ୟଞ୍ଜନ ।

ମିଠା ଚଟଣି ତ ଥିବ କିନ୍ତୁ ଖାଇବା ଶେଷ ହେବ ମିଠା ଦହି ଓ ଏକ ମିଷ୍ଟାନ୍ନ ଭୋଜନ ସହିତ । ଅବଶ୍ୟ ଏ ପ୍ରକାର ଭବ୍ୟଭୋଜନକୁ ଧୀରେସୁସ୍ଥେ ହଜମ କରିବାକୁ ମଧ୍ୟ ପଡୁଥିଲା ।

ଖାଇସାରିବା ପରେ ଅପରାହ୍ନରେ ଟିକେ ବିଶ୍ରାମ ନେବା ନିତିଦିନିଆ କାର୍ଯ୍ୟକ୍ରମର ପରବର୍ତ୍ତୀ ଅଂଶ ଥିଲା । ସେଥିପାଇଁ ଗୃହ ପରିଚାରକମାନେ ଲାଲ ରଙ୍ଗରେ ପାଲିସକରା ଘରର ଚଟାଣକୁ ଆଗରୁ ସଫାକରି ରଖୁଥିଲେ । ପରିବାରର ସବୁ ଲୋକ ମିଶି ସେ ବଡ଼ ସୁବିସ୍ତୃତ ଚଟାଣରେ ମନ ଇଚ୍ଛା ଯିଏ ଯୁଆଡେ ଗଡ଼ା ଗଡ଼ି କରି ପାରୁଥିଲେ । ଆମେ ପିଲାଏ ମନ ଇଚ୍ଛା ସବୁଆଡେ ଗଡୁଥିଲୁ ଆଉ ଅପେକ୍ଷା କରି ରହୁଥିଲୁ ବଡ଼ ଲୋକଙ୍କୁ ନିଦ ହେବା ଯାଏଁ । କାରଣ ତା'ପରେ ଆମେ ପୂର୍ଣ୍ଣ ସ୍ୱାଧୀନତାର ସହ ଛୋଟିଆମୋଟିଆ ଦୁଷ୍ଟାମି ଓ ଡିଆଁଡେଇଁରେ ମାତିଯାଉଥିଲୁ ।

ଦିନେ ସବୁ ଗୁରୁଜନମାନଙ୍କର ଆଖି ଲାଗିଯାଇଥାଏ । ମୋ ମାଉସୀପୁଅ ଭାଇ ଦିଦିମାଙ୍କ ପଣତକାନିରେ ବନ୍ଧା ଚାବିନେନ୍ଥାଟି ଆଣିଦେବା ପାଇଁ ମୋତେ ଫୁସୁଲେଇ କହିଲେ । ଏଇଟା ତ ମୁସ୍କିଲ କାମ । ତା' ସହିତ ମୋ ଗୁରୁ ତଥା ମୋ ମାଆ ମୋତେ ଯେଉଁ ସତ୍ ଆଚରଣ ଓ ସାଧୁତାର ପାଠ ପଢ଼େଇଥିଲେ ସେସବୁ ଭାବି ଭାଇଙ୍କ କଥା ମାନିବାଟା ମୋତେ ଭାରି କଠିନ ମନେ ହେଲା । ଆଉ ଯାହା ହେଉ, ଚୋରି ତ କଦାପି ନୁହେଁ । କିନ୍ତୁ ମୋ ଭାଇଭଉଣୀଦଳ ବି ଜିଦ୍ ଛାଡିବାକୁ ନାରାଜ । ମୋତେ ସେମାନେ ବୁଝେଇ କହିଲେ ଯେ, ଆଈ ଏହି ଛୋଟିଆ ଦୁଷ୍ଟାମିକୁ ଅଣଦେଖା କରିଦେବେ । କାରଣ ଆମେ ବହୁତ ଭଲ ପିଲା । ତା' ଛଡ଼ା ଆଈ ମୋତେ ଟିକେ ଅଧିକ ଶ୍ରଦ୍ଧା କରୁଥିଲେ । ମୋ ଭାଇ ଆଉ ପାଦେ ଆଗେଇ ଯାଇ ମୋତେ ଲାଞ୍ଚ ବି ଯାଚିଲେ । କହିଲେ, ଚାବି ଆଣି ପାରିଲେ ଅଗଣାରେ ସବୁଠୁ ବଡ଼ ଯେଉଁ ପିଜୁଳି ଗଛଟା ଅଛି ସେଥିରୁ ଦରପାଚିଲା ପିଜୁଳି ମୋ ପାଇଁ ତୋଳିଦେବେ । ମୋ ପାଇଁ ଏହାଠୁ ବଳି ପ୍ରେରଣା ଆଉ କ'ଣ ହୋଇପାରିଥାଆନ୍ତା । ମୁଁ ତ ତାଜା ଦରପାଚିଲା ପିଜୁଳି ଖାଇବାକୁ ଭାରି ଭଲପାଉଥିଲି । ତା' ଛଡ଼ା ଭାଇଭଉଣୀଙ୍କ ହସଖୁସିକୁ ବଜାୟ ରଖିବା ମଧ୍ୟ ଯୁକ୍ତିସଙ୍ଗତ କଥା ଥିଲା । ମୋର ନିଜର କେହି ଭାଇଭଉଣୀ ନଥିବାରୁ ମାଉସୀଙ୍କ ପିଲାଙ୍କ ପାଇଁ ମୋ ହୃଦୟରେ ଏକ ବିଶେଷ ସ୍ଥାନ ଥିଲା । ତେଣୁ ମୁଁ ନିଷ୍ପତ୍ତି ନେଲି ଯେ ଆଈଙ୍କ ପାଖକୁ ଚୁପିଚୁପି ଯିବି । ଆଉ ଚାବିନେନ୍ଥାଟି ଚଟ୍ କରି ନେଇଆସିବି । ମୋ ଫୁର୍ତ୍ତିଲା ହାତରେ ଚାବିନେନ୍ଥାଟିକୁ ଖୋଲିବାକୁ ଚେଷ୍ଟା କଲି । ଚାବିନେନ୍ଥା ଆମ ପାଇଁ ଭଣ୍ଡାରଘରର

ବାଟ ଖୋଲିଥାଆନ୍ତା ଯେଉଁଠି ହରେକ ରକମର ଘରତିଆରି ସୁସ୍ୱାଦୁ ଖାଇବା, ମିଠା ଓ ପାଟିରୁ ଲାଳ ବୁହାଇଦେବା ପରି ଆଚାର ସବୁ ରହୁଥିଲା । କିନ୍ତୁ ହଠାତ୍ ଦିଦିମା କଡ଼ ଲେଉଟାଇଲେ । ମୋର ସନ୍ଦେହ ହେଲା ଯେ, ସେ ମୋତେ ସବୁବେଳେ ସ୍ନେହରେ କୋଳେଇ ଧରି ଶୋଉଥିବାରୁ ବୋଧେ ନିଦ ବାଉଳାରେ ସେପରି କଲେ । ସେଥିପାଇଁ ଚାବିନେନ୍ଥା ଖୋଲିବା କାମ ଆହୁରି ସହଜ ହୋଇଗଲା । ବାସ୍ ! ଆମ କାମ ହୋଇଗଲା । କିନ୍ତୁ ଭଣ୍ଡାର ଘର ଅଣ୍ଡାଳିବା ମାମଲାରେ ମୁଁ ଟିକେ ଡରରେ ପଛଘୁଞ୍ଚା ଦେଲି । ସାଙ୍ଗରେ ଗଲି ସତ କିନ୍ତୁ ଦିଦିମା ନଜର ରଖୁଥିବା ବିଶେଷ ଦରବ ସବୁରେ ହାତ ମାରିଲିନି । ଭାବିଲି, ବରଂ ଚାହା ପିଇବା ସମୟରେ ଯେତେବେଳେ ସେସବୁ ଦିଆଯିବ ସେତେବେଳ ଯାଏଁ ଅପେକ୍ଷା କରିବି । ଏମିତିରେ ବି ସେ ସମୟ ପାଇଁ ଆଉ କେତେ ଘଣ୍ଟା ହିଁ ବାକି ଥିଲା । କିନ୍ତୁ ଦଳପତି ଯେତେବେଳେ ଚୋରି ମାଲ୍ ବାଣ୍ଟିବା ଆରମ୍ଭ କଲେ ଟିକିଏ ନ ଚାଖି ରହିପାରିଲି ନାହିଁ । ସେତିକି ବି କଲି ଅନେକ କାତରତାର ସହ ! ତା'ପରେ ବାକିଥିଲା ଚୋରିର ବିପରୀତ କାର୍ଯ୍ୟପନ୍ଥା । ଚାବିନେନ୍ଥାକୁ ନେଇ ପୁଣି ପଣତକାନିରେ ବାନ୍ଧିଦେବାକୁ ହେବ । ଏ କାମ ମଧ୍ୟ କଠିନ ଥିଲା । କିନ୍ତୁ ପୂର୍ବାପେକ୍ଷା ଅଧିକ ସହଜ ଥିଲା । ମୋ ମାଉସୀଙ୍କ ପିଲାମାନଙ୍କ ସାହାଚର୍ଯ୍ୟରେ ଏମିତି ପିଲାଳିଆ ଦୁଷ୍ଟାମି ଓ ଖେଳକୁଦ ଭିତର ମୋ ପିଲାଦିନ ନିସଙ୍ଗତା ଜନିତ ବିପର୍ଯ୍ୟୟରୁ ଉଦ୍ଧାର ପାଇ ଯାଇଥିଲା । ତାହା ନ ହୋଇଥିଲେ ମୁଁ ବୋଧହୁଏ ବାପାମାଆଙ୍କର ଏକମାତ୍ର ସନ୍ତାନ ଭାବେ ସମ୍ପୂର୍ଣ୍ଣ ଏକାକୀ ହୋଇ ପିଲାବେଳ ବିତାଇଥାଆନ୍ତି ।

ବାଖରାବାଦ ଘରଟି ଥିଲା ମୋ ଦୁନିଆ । ବେଳେ ବେଳେ ଭାବେ ଫକୀରମୋହନ ସେନାପତି ଏ ଘର ତିଆରିବା ବେଳେ ତାଙ୍କ ନାତିନାତୁଣୀ, ଅଣ ନାତିନାତୁଣୀଙ୍କ କଥା କ'ଣ କେବେ ଚିନ୍ତା କରିଥିବେ । ପ୍ରକୃତରେ ତାଙ୍କ ଜୀବନର ଶେଷ ପର୍ଯ୍ୟାୟରେ ଏ ଘର ତିଆରି ହୋଇଥିଲା । ଦୁର୍ଭାଗ୍ୟର କଥା, ତାଙ୍କୁ ଦେଖିବା ବା ତାଙ୍କ ସହ କିଛି ସମୟ ବିତେଇବା ମୋ ଭାଗ୍ୟରେ ଜୁଟି ନଥିଲା । କିନ୍ତୁ ଦିଦିମାଙ୍କ ଆଖିରେ ମୁଁ ତାଙ୍କର କେତୋଟି ଝଲକ ଦେଖିବାକୁ ପାଇଥିଲି । ଦିଦିମା (ମୋ ଆଈ) ତାଙ୍କ ବ୍ୟକ୍ତିତ୍ୱର ଦର୍ପଣ ଥିଲେ । ଅଳସ ଅପରାହ୍ନଗୁଡ଼ିକରେ ବା କୌଣସି ମେଘୁଆ ଦିନରେ ବା ରାତିରେ ଶୋଇଲା ବେଳେ ଦିଦିମା ଫକୀରମୋହନ ସେନାପତିଙ୍କ ଜୀବନ ସହ ଜଡ଼ିତ କଥା କାହାଣୀର ପସରା ମେଲିଦେଉ ଥିଲେ । ଦିଦିମା କହୁଥିଲେ ଯେ ତାଙ୍କୁ ଭଲ ଭଲ ଖାଇବା ପସନ୍ଦ ଥିଲା । ତାଙ୍କର ହୃଦୟ ଥିଲା କୋମଳ । କେବଳ ସେ

ବ୍ୟତିକ୍ରମ ଥିଲେ ତାଙ୍କ ପୁଅ ମୋହିନୀମୋହନ ସେନାପତି ପାଇଁ । ବେଳେବେଳେ ସେ ତାଙ୍କ ପାଇଁ ଟିକେ କଠୋର ହେଉଥିଲେ । ବାପପୁଅଙ୍କର କେବେ ମତ ମେଳ ଖାଉନଥିଲା । ଏଇଟା ବି ସ୍ୱାଭାବିକ ଥିଲା- କାରଣ ମୋହିନୀମୋହନ ସେ କାଳର ବିଚାରପତି ଭାବେ ଓ ପରବର୍ତ୍ତୀ ସମୟରେ ଓଡ଼ିଶାର ଅଗ୍ରଣୀ ଶିକ୍ଷାନୁଷ୍ଠାନ ରେଭେନସା କଲେଜର ଦର୍ଶନ ବିଷୟରେ ଅଧ୍ୟାପକ ଭାବରେ ନିଜେ ଜଣେ ସମ୍ମାନାସ୍ପଦ ବୁଦ୍ଧିଜୀବୀ ଥିଲେ । ବିଭିନ୍ନ ବିଷୟର ନିଜ ମତାମତକୁ ନେଇ ସେ ଅଟଳ ରହିବା ସ୍ୱାଭାବିକ କଥା ଥିଲା । ସେ କେବଳ ଆଗନୋଷ୍ଟିକ ନଥିଲେ; ସେ ଆରମ୍ଭରୁ ହିଁ ନାସ୍ତିକ ଥିଲେ । ଅଜା ମୋହିନୀମୋହନଙ୍କ ସିଧା ସଂସ୍ପର୍ଶରେ ମୁଁ ଆସିପାରି ନାହିଁ, ମାଆ ଓ ଆଇଙ୍କଠାରୁ ତାଙ୍କ ବିଷୟରେ ଶୁଣିବାର ସୌଭାଗ୍ୟ ଲାଭ କରିଛି । ମୋହିନୀମୋହନ ସେନାପତିଙ୍କର ଧର୍ମ ଓ ଈଶ୍ୱରଙ୍କ ସମ୍ବନ୍ଧରେ ମତ ଦୃଢ଼ ଥିଲା । ଲୋକେ ଭାବୁଥିଲେ ଯେ ସେ କୌଣସି ଅନ୍ଧବିଶ୍ୱାସରେ ଆସ୍ଥା ରଖୁନଥିଲେ । ମୂର୍ତ୍ତି ପୂଜା ଓ ମନ୍ଦିର ରୀତିନୀତିରେ ତାଙ୍କର ବିଶ୍ୱାସ ନଥିଲା । ତେଣୁ ତାଙ୍କ ପିଲାମାନେ (ଚାରି ଝିଅ) ତାଙ୍କର ହେତୁବାଦୀ ମତାମତଗୁଡ଼ିକ ଦ୍ୱାରା ପ୍ରଭାବିତ ହେବା କୌଣସି ଆଶ୍ଚର୍ଯ୍ୟଜନକ କଥା ନଥିଲା ।

ଏ ବିଷୟରେ ମୋ ମାଆଙ୍କ ଠାରୁ ଶୁଣିଥିବା କଥାଟିଏ ମନେପଡୁଛି । ବାଖରାବାଦ ଘର ପାଖରେ ଗୋଟିଏ ମନ୍ଦିର ଥିଲା ଯାହା ସେନାପତି ଘର ଝିଅମାନଙ୍କ ଧ୍ୟାନ ଆକର୍ଷିତ କରୁଥିଲା । ଦିନେ କ'ଣ ହୋଇଛି ନା ସେମାନେ ମନ୍ଦିରରେ ଥିବା ଶିବ ଲିଙ୍ଗକୁ ଭାଙ୍ଗିଦେବା ପାଇଁ ବାହାରିଲେ । ଜଣେ ପ୍ରଗତିବାଦୀ ପିତାଙ୍କ ଦ୍ୱାରା ଲାଳିତ ପାଳିତ ଏହି ଚାରୋଟି ଝିଅ, ଅର୍ଥାତ୍ ମୋ ମାଆ ଓ ତାଙ୍କର ତିନି ଭଣୀ, ମନ୍ଦିରର ପାରମ୍ପରିକ ପୂଜାବିଧି ବିଦ୍ୱେଷରେ କିଛି ଉଗ୍ର ଧାରଣା ପୋଷଣ କରୁଥିଲେ । ଚାରି ଭଉଣୀଙ୍କ ବୟସ ଥିଲା ଚାରି ବର୍ଷରୁ ବାର ବର୍ଷ ଭିତରେ । ସୌଭାଗ୍ୟକୁ ସେ ମନ୍ଦିରର ପୂଜକ ମହାଶୟ ଜଣେ ଦୟାଳୁ ହୃଦୟର ବ୍ୟକ୍ତି ଥିଲେ । ପିଲାମାନଙ୍କର ଏହି ଭୟଙ୍କର ଷଡ଼ଯନ୍ତ୍ରକୁ ପିଲାଳିଆ ଦୁଷ୍ଟାମି ଭାବି ସେ ଅଣଦେଖା କରିଦେଇଥିଲେ । ସେମିତି କିଛି କରିବା ଅନୁଚିତ ବୋଲି ବୁଝେଇଶୁଝେଇ ସେମାନଙ୍କୁ ସ୍ନେହ ସହକାରେ ଘରକୁ ପଠେଇଦେଇଥିଲେ । ଶିବଲିଙ୍ଗ ଭାଙ୍ଗିବା ଅଧ୍ୟାୟଟି ସେତିକିରେ ହିଁ ସମାପ୍ତ ହୋଇଯାଇଥିଲା ।

ମୁଁ ଜାଣିବାକୁ ପାଇଛି ଯେ ଅଜା ନାସ୍ତିକ ଓ ଯୁକ୍ତିବାଦୀ ଥିଲେ ମଧ୍ୟ ତାଙ୍କ ନିର୍ଦ୍ଧାରିତ ପଥରୁ ସେ କିଛି ମାତ୍ରାରେ କେବେ କେମିତି ବିଚ୍ୟୁତ ହେଉଥିଲେ । Homer

does nod at times ଭଳି ମୋହିନୀମୋହନ ସେନାପତିଙ୍କର ୧୩ ସଂଖ୍ୟାଟିକୁ ନେଇ ଅଦ୍ଭୁତ ଖିଆଲ ଥିଲା । ଏହି ସଂଖ୍ୟାଟି ସହ ସମ୍ପର୍କିତ ସବୁ କଥାରୁ ସେ ଦୂରେଇ ରହୁଥିଲେ । ଥରେ ସେ 'ଏକାଗାଡ଼ି' (ଗୋଟିଏ ଘୋଡ଼ାଟାଣୁଥିବା ଗାଡ଼ି)ରେ ବସି ଷ୍ଟେସନ ଯିବାର ଥିଲା । କଟକ ସହର ବାହାରକୁ ଏକ ସ୍ଥାନକୁ ଯିବାକୁ ସେ ବାହାରିଥିଲେ । ଜିନିଷପତ୍ର ଗାଡ଼ିରେ ଲଦା ହେଲା । ଚାକରବାକର ଲାଗିପଡ଼ି ତାଙ୍କ ଯିବାର ସମସ୍ତ ବନ୍ଦୋବସ୍ତ କରିଦେଲେ । କିନ୍ତୁ, ହଠାତ୍ ସେ ବୁଲି ଚାହିଁଲା ବେଳକୁ ଦେଖିଲେ ଗାଡ଼ି ପଛପଟେ ଥିବା ନମ୍ବର ପ୍ଲେଟରେ ୧୩ ଲେଖା ହୋଇଛି । ତତ୍‌କ୍ଷଣାତ୍ ଜିନିଷ ସବୁ ଓହ୍ଲାଇବା ପାଇଁ ସେ ଚାକରମାନଙ୍କୁ ନିର୍ଦ୍ଦେଶ ଦେଲେ ଓ ପଛକୁ ଘୂରି ଘରମୁହାଁ ହେଲେ । ଅଦ୍ଭୁତ କଥା ଯେ ଅନେକ ବର୍ଷ ପରେ ତାଙ୍କର ମୃତ୍ୟୁ ହେବା ଦିନଟି ମଧ୍ୟ ୧୩ ତାରିଖ ଥିଲା ।

ସମସ୍ତେ ବିଶ୍ୱାସ କରୁଥିଲେ ଯେ ମୋ ମାଆ ମୋହିନୀମୋହନଙ୍କର ସବୁଠାରୁ ଆଦରଣୀୟା ଥିଲେ । ଜଣେ ଅତି ପ୍ରଗତିଶୀଳ ବ୍ୟକ୍ତି ହିସାବରେ ସେ ମାଆଙ୍କୁ ବିବାହ ନ କରିବାକୁ ପ୍ରବର୍ତ୍ତାଉଥିଲେ । ସେ କହୁଥିଲେ, "ବାହା ହୋଇ ପିଲା ଜନ୍ମ କରିବା ସାଧାରଣ ଲୋକଙ୍କ କାମ । ବୀଣାପାଣି, ତୁମେ ଉତ୍କୃଷ୍ଟ ଗୁଣାବଳୀରେ ଗଢ଼ା । ବିଦ୍ୟା ଅଧ୍ୟୟନରେ ତୁମେ ଶ୍ରେଷ୍ଠତା ପ୍ରଦର୍ଶନ କରିବା ଉଚିତ ଓ ସଫଳକାମ ହେବା ଉଚିତ ।" ସେ ମାଆଙ୍କୁ କହିଥିଲେ ଯେ ଫକୀରମୋହନ ନିଜେ ବୀଣାପାଣି ନାମଟି ଦେଇଥିଲେ । ମାଆଙ୍କ ନାମ ଫକୀରମୋହନଙ୍କ ଇଚ୍ଛାପତ୍ରରେ ଅଛି । ସେ ଇଚ୍ଛାପତ୍ରଟି ଏବେ ମଧ୍ୟ ଉପଲବ୍ଧ । ମୁଁ ବାଲେଶ୍ୱରରେ ମୋ ଚଳଚ୍ଚିତ୍ର 'ଅନ୍ୱେଷଣ' ପାଇଁ ଚିତ୍ରୋତ୍ତୋଳନ ବେଳେ ସେଇ 'ଇଚ୍ଛାପତ୍ର'କୁ ନିଜେ ଦେଖିଛି । ପ୍ରଖ୍ୟାତ ଲେଖକ ତଥା ଫକୀରମୋହନ ସାହିତ୍ୟ ପରିଷଦର ତତ୍କାଳୀନ ସଭାପତି ଶ୍ରୀ ବ୍ରଜନାଥ ରଥ ସେଇଟିକୁ ଆମ ପାଇଁ ଆଣିଥିଲେ । ସେ ଏବେ ଆଉ ଏ ଦୁନିଆରେ ନାହାନ୍ତି କିନ୍ତୁ ତାଙ୍କ ପୁଅଙ୍କ ପାଖରେ 'ଇଚ୍ଛାପତ୍ର'ଟି ଅଛି ବୋଲି ଆମକୁ କୁହାଯାଇଛି ।

ଏବେ ପୁଣି ଫେରିବା ମୋ ମାଆଙ୍କ ପ୍ରସଙ୍ଗକୁ । ତାଙ୍କର ବାପାଙ୍କ ପ୍ରତି ଖୁବ ଅନୁରକ୍ତି ଥିଲା । ବାପାଙ୍କ କଥା ଥିଲା ତାଙ୍କ ପାଇଁ ଆଇନ । ଏଣୁ ବାହାଘର କଥା ସେ ତାଙ୍କ ମନରୁ ବାହାର କରିଦେଇଥିଲେ । କିନ୍ତୁ ମୋହିନୀମୋହନ ସେନାପତି ଯଥେଷ୍ଟ ସମୟ ଥାଉଁ ଥାଉଁ ମୃତ୍ୟୁବରଣ କଲେ, ପାଖାପାଖି ଷାଠିଏ କି ଏକଷଠି ବର୍ଷ ବୟସରେ । ମୋ ମାଆ ହତୋତ୍ସାହିତ ହୋଇପଡ଼ିଲେ । ତାଙ୍କ ସ୍ୱପ୍ନ ଚୂରମାର ହୋଇଗଲା ଓ ତାଙ୍କୁ ଦୁନିଆଟା ଅନ୍ଧାର ଆଉ ଖାଁ ଖାଁ ଲାଗିଲା । କିନ୍ତୁ ଶୀତ ପରେ ବସନ୍ତ ଆସେ । ଶୀଘ୍ର ହିଁ

ଭଗବାନ ମାଆଙ୍କ ଜୀବନ ଆଲୋକିତ କରିଦେଲେ । ସେ କଲିକତା ବିଶ୍ୱବିଦ୍ୟାଳୟରେ ସ୍ନାତକ ଶ୍ରେଣୀରେ ଅଧ୍ୟୟନ କଲାବେଳେ ଅନେକ ଭଲ ଲୋକଙ୍କ ସଂସ୍ପର୍ଶରେ ଆସିଥିଲେ । ତାଙ୍କ ମଧ୍ୟରୁ ଜଣେ ଥିଲେ ମୋ ବାପା କାଶୀନାଥ ମିଶ୍ର, ଯିଏ କି କଲିକତା ବିଶ୍ୱବିଦ୍ୟାଳୟର ସେଣ୍ଟ ଜେଭିଅର ଓ ଲୋରେଟୋ କଲେଜରେ ଅଧ୍ୟାପନା କରୁଥିଲେ । ବାପା ଥିଲେ ତାଙ୍କ (ମୋ ମାଆଙ୍କର) ଗୃହ ଶିକ୍ଷକ ।

ତାଙ୍କ ସହ ବିବାହ କରିବା ପାଇଁ ମାଆଙ୍କୁ ତାଙ୍କ ସାଙ୍ଗମାନେ ଉତ୍ସାହିତ କଲେ । ସେତେବେଳକୁ ମୋର ଦୁଇ ମାଉସୀଙ୍କ ବିବାହ ହୋଇସାରିଥାଏ । ସେମାନେ ନିଜ ପିଲାଙ୍କ ସହ ତାଙ୍କ ପରିବାରରେ ରହୁଥାଆନ୍ତି । ମଜା କଥାଟି ହେଲା, ମାଉସୀ ମୋ ମାଆଙ୍କୁ ଯେଉଁ ପ୍ରସ୍ତାବ ଦେଇଥିଲେ - ମୋ ମାଆ ମୋତେ କହିବାର ମନେଅଛି । ମୋ ମାଉସୀ ମୈତ୍ରେୟୀ ଶୁକ୍ଳା (ସେନାପତି) ତାଙ୍କୁ କହିଲେ, "ବିନୁ, ତୁ ଚିନ୍ତା କରନା ଜମା । ମୁଁ ବୁଦ୍ଧିଆ ପିଲାଙ୍କୁ ଜନ୍ମ ଦେବି ଆଉ ତୁ ନେଇ ସେମାନଙ୍କୁ ବଡ଼ କରିବୁ ।" ମୋ କୋମଳମତି ମାଆଙ୍କୁ ଏ ପ୍ରସ୍ତାବଟି ଠିକଠାକ୍ ଲାଗିଥିଲା କାରଣ ତାଙ୍କ ଦୁନିଆରୁ ବିବାହ, ପରିବାର ଏସବୁ କଥା ଅପସରି ଯାଇଥିଲା । କିନ୍ତୁ ତାଙ୍କ ସାଙ୍ଗମାନେ ବି ନଛୋଡ଼ବନ୍ଧା । ଅନବରତ ବୁଝେଇ ଚାଲିଥା'ନ୍ତି । ସେମାନେ କହିଲେ, "ଦେଖ ବିନୁ, ଭାବ ରାଇଜରେ ହଜି ଯାଆନା । ବାହାସାହା ହୁଅ । ନିଜ ପରିବାର କର । ଏଇ ବାବୁଙ୍କ କଥା ଭାବ । ଛଅ ଫୁଟ ଡେଙ୍ଗା, ଗୋରା ତକତକ ଦେହ, ପ୍ରଶସ୍ତ କପାଳ, ନୀଳ ନୀଳ ଆଖି, ଗରୁଡ଼ ପରି ନାକ - ସୁଶିକ୍ଷିତ ପ୍ରଫେସର କାଶୀନାଥ ମିଶ୍ର । କେବଳ ତୁମର 'ହଁ' ଟିଏ ପାଇଁ ଅପେକ୍ଷା କରିରହିଛନ୍ତି । ତୁମେ ଆଗଭର ହୁଅ ଆଉ ଡେଇଁପଡ଼ । ତୁମେ ଯେପରି ଭାବୁଛ ଯେ ତୁମେ ଅନ୍ଧକାର ଗହ୍ୱରକୁ ଡ଼େଇଁବାକୁ ଯାଉଛ, ସେମିତି ନହୋଇ ବି ପାରେ । ହୁଏତ ତୁମ ସୌଭାଗ୍ୟର ଦ୍ୱାର ଖୋଲିଯିବ ।" ଶେଷକୁ ବାହାଘର ହୋଇଗଲା । ସୁଖର ଦିନ ପରେ ପରେ ଆସିଲା ସଂଘର୍ଷର ସମୟ ।

ବାପାଙ୍କ ଚିନ୍ତାଜଗତ ଥିଲା ସ୍ୱପ୍ନମୟ । ସାଂସାରିକ ଜ୍ଞାନ ସେତେ ନଥିଲା । ତା'ପରେ ସେ ବାହାରୁ ଯେତେ ଦୁଃସାହସୀ ଜଣାପଡୁଥିଲେ ମଧ୍ୟ ଅସଲରେ ସେମିତି ନଥିଲେ । ମୂଳତଃ ସେ ଥିଲେ ଜଣେ ସୁସଂସ୍କୃତ ବ୍ୟକ୍ତି । ସେ ସର୍ବଦା ତାଙ୍କ ବୌଦ୍ଧିକ ଜଗତରେ ହିଁ ବିଚରଣ କରୁଥିଲେ । ସେତେବେଳେ ଅନେକ ସ୍ଥାନରେ ପରିସ୍ଥିତି ଅଶାନ୍ତ ଥିଲା । ସ୍ୱାଧୀନତାର ଠିକ୍ ପୂର୍ବ ବର୍ଷଗୁଡ଼ିକର (୧୯୪୪-୪୭) କଥା ଯେତେବେଳେ କି ହିନ୍ଦୁ-ମୁସଲିମ ଦଙ୍ଗା, ଦେଶ ବିଭାଜନଜନିତ ଉତ୍ତେଜନା ଲାଗିରହିଥାଏ, ଏସବୁକୁ

ସାମ୍ନା କରିବା ବାପାଙ୍କ ପାଇଁ ଦୁରୁହ ବ୍ୟାପାର ଥିଲା । ସେ ମାଆଙ୍କ ସହ କିଛି ଆଲୋଚନା ନକରି ହଠାତ୍ ଚାକିରୀରୁ ଇସ୍ତଫା ଦେଇଦେଲେ । ଘର ଚଳାଇବାର ସଂମ୍ପୂର୍ଣ୍ଣ ଦାୟିତ୍ୱ ଆସି ମୋ ମାଆଙ୍କ ଉପରେ ପଡ଼ିଲା । ତା'ପରେ ପିଲାମାନେ ଜନ୍ମ ହେଲେ । ଦୁଇଟି ପୁତ୍ର ସନ୍ତାନ ଜନ୍ମ ପରେ ପରେ ହିଁ ମରିଗଲେ । ବଞ୍ଚିରହିଲା ଜଣେ ଏବଂ ସେ ହେଉଛି ମୁଁ । ଫକୀରମୋହନ ସେନାପତିଙ୍କ ଘରେ ରାଜକୀୟ ଢଙ୍ଗରେ ବଢ଼ିଥିବା ମୋ ମାଆଙ୍କୁ କେବେ ଜୀବନରେ ଘାତପ୍ରତିଘାତ ସାମ୍ନା କରିବାକୁ ପଡ଼ି ନଥିଲା । କିନ୍ତୁ ବିବାହ ପରେ ଘର ଚଳାଇବାର ନିତିଦିନିଆ ସୁବିଧାଅସୁବିଧା; ଶିଶୁ କନ୍ୟାକୁ ବଡ଼ କରିବାର ଦାୟିତ୍ୱ; ଶିକ୍ଷୟିତ୍ରୀ ଚାକିରୀ-ସବୁକୁ ଏକା ସଙ୍ଗରେ ସମ୍ଭାଳିବା ତାଙ୍କ ପାଇଁ କାଠିକର ପାଠ ଥିଲା ।

ଏଣୁ ଅନେକ ଚିନ୍ତାଭାବନା ପରେ ସେ ମୋ ଦାୟିତ୍ୱ ଆଈଙ୍କ ଉପରେ ନ୍ୟସ୍ତ କଲେ । ଯାହାଙ୍କୁ ମୁଁ ମୋ ମାଉସୀଙ୍କ ପିଲାମାନଙ୍କ ପରି 'ଦିଦିମା' ବୋଲି ସମ୍ବୋଧନ କରୁଥିଲି । ସବୁ କ୍ଷେତ୍ରରେ ସେ ମୋ ପାଇଁ 'ମାଆ' ହୋଇଯାଇଥିଲେ । ମୋ ପିଲାବେଳର ସବୁଠୁଁ ଅଭୁଲା ଦିନସବୁ ମୁଁ ଦିଦିମାଙ୍କ ସହ ବିତେଇଛି । ବୋଧହୁଏ ଏହା ପୂର୍ବ ନିର୍ଦ୍ଧାରିତ ଥିଲା । କାରଣ ଦିଦିମାଙ୍କ ଘନିଷ୍ଠ ସାନ୍ନିଧରେ ଆସି ନଥିଲେ ମୁଁ ଫକୀରମୋହନ ସେନାପତି ସଂକ୍ରାନ୍ତୀୟ କଥାମାନ ମଧ ମଧ ସେତେ ଭଲଭାବେ କେବେ ଜାଣିପାରି ନଥାନ୍ତି ସମୟ ଅତିକ୍ରାନ୍ତ ହେବା ସହ ମୁଁ ବହୁବାର ଚିନ୍ତା କରିଛି । ଫକୀରମୋହନ ସେନାପତିଙ୍କ ବିଷୟରେ ଚଳଚ୍ଚିତ୍ର ନିର୍ମାଣ କଲାବେଳେ ବି ଭାବିଛି । ମୋତେ ଲାଗେ ଯେମିତି ସବୁକିଛି ପୂର୍ବ-ନିର୍ଦ୍ଧାରିତ ହିଁ ଥିଲା । ଯେମିତିକି ଗୋଟିଏ ଛବିର ଟୁକୁରା ସବୁ ଗୋଟେ ପରେ ଗୋଟେ ଯୋଡ଼ିହେଇ ଚାଲିଥିଲା । ଆଉ ଏବେ ମଧ ଯୋଡ଼ିହେଇ ଚାଲୁଛି ।

ମୋ ମାଆଙ୍କ ପାଖରେ ଜ୍ଞାନ, ସୌନ୍ଦର୍ଯ୍ୟବୋଧ, ସାମାନ୍ୟ ନୈରାଶ୍ୟବୋଧ ଓ ପ୍ରଚୁର ସନ୍ତୁଳନତାର ଏକ ସୁନ୍ଦର ସମନ୍ୱୟ ଘଟିଥିଲା । ସେ କେବେ ବ୍ୟତିବ୍ୟସ୍ତ ବା ହଡ଼ବଡ଼ ହେଉ ନଥିଲେ । ଅଜଣା ଇଲାକାରେ ସତର୍କତାର ସହ ପାଦ ଥାପୁଥିଲେ ଓ ଯେତେ ଦୂର ଯାଏଁ ସମ୍ଭବ ମାପିଚୁପି ଆଗକୁ ଗତି କରୁଥିଲେ । ବାଲେଶ୍ୱରର ବାରବାଟି ବାଳିକା ବିଦ୍ୟାଳୟର ସେ ପ୍ରଧାନ ଶିକ୍ଷୟିତ୍ରୀ ଥିଲେ । ତେଣୁ ସେଠାରେ ପଢ଼ିବା ମୋ ଭାଗ୍ୟରେ ଜୁଟି ଥିଲା । ଯଦିଓ ମୋର ଦୂରଦର୍ଶୀ, ପ୍ରଗତିବାଦୀ ବାପାମାଆ ମୋତେ ଭାରତର ସର୍ବୋତ୍ତମ ଛାତ୍ରାବାସ, ବିଦ୍ୟାଳୟ ତଥା ପରେ ଦୁନିଆର ସବୁଠୁ ଭଲ ଶିକ୍ଷାନୁଷ୍ଠାନ ଗୁଡ଼ିକରେ ପଢ଼ାଇ ପାରିଥାନ୍ତେ ତଥାପି ସେ ସବୁକୁ ଏଡ଼େଇ ଦେଇ ମୋ ମାଆ ମୋତେ

ସବୁବେଳେ ପାଖରେ ରଖିବାକୁ ହିଁ ଚାହିଁଥିଲେ । ସେଥିପାଇଁ ମୁଁ ତାଙ୍କ ପାଖରେ କୃତଜ୍ଞ । ମୋ ବାପାମାଆଙ୍କ ସୁରକ୍ଷା ଓ ଉପଦେଶ ପାଇ ମୁଁ ବଞ୍ଚିଶିଖିଲି । ଏହାଠୁଁ ଭଲ କଥା ମୋ ପାଇଁ କ'ଣ ହୋଇପାରିଥାଆନ୍ତା ? ତେବେ ଏହାର ଅନ୍ୟ ଦିଗଟି ହେଲା, ମୋର ନିରାପଦ, ନିଭୃତ ଜୀବନ ମୋତେ ଟିକେ କାତର କରିଦେଇଥିଲା । ବେଳେ ବେଳେ ଆଗଭର ହେବାକୁ ଇଚ୍ଛା କରୁଥିଲି କିନ୍ତୁ ପୂରା ବାଟ ଏକା ଚାଲିବାର ସାହସ ନଥିଲା ।

ଆଗକୁ ବଢ଼ିବାର ସବୁ ପ୍ରଚେଷ୍ଟା ସତ୍ତ୍ୱେ ବି ପଥ ଭୟ ଓ ଉଦବେଗରେ ଭରି ଉଠୁଥିଲା । ସତେ ଯେପରି କିଛି ଗୋଟାଏ ଜିନିଷ ମୋତେ ସବୁବେଳେ ପଛକୁ ଟାଣିନେଉଛି । ମାଆ ଯଦିଓ ଭାରି କଠୋର ଥିଲେ ଓ ପ୍ରାୟ ସବୁବେଳେ ମୋ ଦୋଷ ଦୁର୍ବଳତା ଧରି ନେଉଥିଲେ, ଥରେ ଦୁଇଥର ତାଙ୍କର ଦୁର୍ବଳ ମୂହୂର୍ତ୍ତଗୁଡ଼ିକରେ ସେ ମୋତେ କହୁଥିଲେ, "ଯେତେ ଯାହା ହେଉ ପଛକେ, ଶେଷ କଥାଟି ହେଲା, ମନିକା ପାଇଁ କୌଣସି ଲକ୍ଷ୍ୟ ଅସମ୍ଭବ ନୁହେଁ, ସେ ଯାହା ଚାହିଁବ ହାସଲ କରି ପାରିବ ।" ତଥାପି ସେ ନଜର ରଖୁଥିଲେ ଯେମିତି ମୁଁ ସୁରକ୍ଷିତ ରହେ ଓ ତାଙ୍କ ସୁରକ୍ଷାର ବଳୟ ଭିତରେ ହିଁ ଆଗକୁ ବଢ଼େ । ମୋତେ ଶାନ୍ତିନିକେତନରେ ପାଠ ପଢ଼ାଇବା ପାଇଁ ମୋ ମାଆ ମୋତେ ଶାନ୍ତି ନିକେତନ ତିନି ଚାରିଥର ନେଇଛନ୍ତି । ମୁଁ ସେଠାରେ ବୈତାଳିକରେ ବି ଯୋଗଦେଇଛି ପରେ ବୈତାଳିକରେ ଯୋଗ ଦେବାପାଇଁ ସ୍ୱତନ୍ତ୍ର ଶାନ୍ତିନିକେତନୀ ପୋଷାକ ମଧ୍ୟ ମୋର ତିଆରି ହେଇଥିଲା, ମୋ ମାଆଙ୍କର ସେ ଇଚ୍ଛାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ତାଙ୍କ ଅନୁପସ୍ଥିତିରେ ମୁଁ କାଳେ ସେଠି ଅସୁବିଧାରେ ପଡ଼ିବି ସେୟା ଭାବି ସେ ତାଙ୍କ ମତ ବଦଲାଇଦେଲେ । ବୋଧହୁଏ ଏସବୁ ଜଣେ ମାଆର ମାଆ ସୁଲଭ ଛୋଟମୋଟ ଭୟସନ୍ଦେହ ବ୍ୟତୀତ ଆଉ ଅନ୍ୟ କିଛି ନଥିଲା । ତେଣୁ ମୁଁ ବି ସବୁବେଳେ ନିରାପଦରେ ରହିବାକୁ ଚେଷ୍ଟା କରୁଥିଲି । ଟିକେ ଭୟାତୁରା ହେଲେ ବି ଆଗକୁ ବଢ଼ିବାର ଉଦ୍ଦୀପନା ଥିଲା, କିନ୍ତୁ ବେଶୀ ବାଟ ଯାଇହେଲା ନାହିଁ । ମୋର ସମସ୍ତ ସମ୍ଭାବନା ଚୁପଚାପ୍ ମୋ ଭିତରେ କେଉଁଠାରେ ଲୁଚି ରହିଗଲା । ମୁଁ ସବୁ କାମରେ ଏକ ସନ୍ତୁଳନ ରକ୍ଷା କରିବାକୁ ଚାହୁଁଥିଲି । ଯଦ୍ୱାରା ଜୀବନରେ କୌଣସି ବଡ଼ ଧକ୍କା ଲାଗିବ ନାହିଁ । ଏପରିକି ଆଜି ଯାଏଁ ଧାରାଟି ଅବ୍ୟାହତ ରହିଛି । ଲୋକେ ମୋତେ ଅଧ୍ୟାପନା ଛାଡି ରାଜନୀତିରେ ପ୍ରବେଶ କରିବାକୁ ପ୍ରବର୍ତ୍ତାଇଛନ୍ତି । ସଙ୍ଗୀତ ଓ ଅନ୍ୟ ବିକଳ୍ପ ବୃତ୍ତିରେ ସଂପୃକ୍ତ ହେବାକୁ କହିଛନ୍ତି । ଯୁବାବସ୍ଥାରେ ଉପନୀତ ହେଲା ପରେ ଭାରତୀୟ ପ୍ରାଶାସନିକ ସେବାରେ ଯୋଗଦେବାକୁ ମଧ୍ୟ ଲୋକେ ମୋତେ କହିଛନ୍ତି ।

ଲୋକଙ୍କ କହିବା ଅନୁସାରେ ମୁଁ ଦକ୍ଷତାର ସହିତ ଏସବୁ କିଛି କରିବା ପାଇଁ ଅବଶ୍ୟ ଉପଯୁକ୍ତ ଥିଲି । କିନ୍ତୁ ମୋତେ ଏସବୁ ଉପଦେଶ ବିଶେଷ ନିର୍ଭରଯୋଗ୍ୟ ମନେହେଲା ନାହିଁ । ମୁଁ ବାଛିଲି ମଧ୍ୟମ ପନ୍ଥା । ଅଧ୍ୟାପନା ଓ ପାରିବାରିକ ଜୀବନ ଏବଂ ସାଥେ ସାଥେ ସଙ୍ଗୀତ ସାଧନା । ମୁଁ ଅନେକ ସମୟରେ ଫକୀରମୋହନ ସେନାପତିଙ୍କ ବିଷୟରେ ଆଲୋଚନା କଲାବେଳେ ଭାବେ ସେ ଏତେ କିଛି କାମ କେମିତି କରିପାରୁଥିଲେ । ବ୍ରିଟିଶ ଅମଳରେ ଗଡ଼ଜାତ ରାଜ୍ୟଗୁଡ଼ିକରେ ଦେୱାନ ହିସାବରେ ପ୍ରାଶାସନିକ ଦାୟିତ୍ୱ ତୁଲାଉଥିଲେ । ଉଚ୍ଚମାନର ସାହିତ୍ୟ ରଚନା କରି ଓଡ଼ିଆ ଭାଷାକୁ ଦୁର୍ଦ୍ଦିନରୁ ରକ୍ଷା କରିଥିଲେ ଓ ଆହୁରି କେତେ କ'ଣ । ସେଥିପାଇଁ ମୋ ମାଆ ଦୂର ଦିଗବଳୟ ଆଡକୁ ଚାହିଁ ବହୁ ସମୟରେ ଗମ୍ଭୀରତାର ସହ କହନ୍ତି, "ଆମେ ସବୁ ଫକୀରମୋହନଙ୍କ ଅଯୋଗ୍ୟ ବଂଶଧର ।" ଅନେକ ଜାଗାରେ ଏ କଥାଟି କହି ଅନେକ ଲୋକଙ୍କୁ ହସେଇଛି ମୁଁ ।

ନୀରଜମୋହନ ଓ ଅଧିରାଜମୋହନ ସେନାପତି ପାଖରେ ରହୁଥିଲେ । ବାଖରାବାଦ ଘରକୁ ସେମାନେ ବେଳେବେଳେ ଆସୁଥିଲେ । ସେମାନେ ଅଳ୍ପବହୁତେ ଫକୀରମୋହନ ସେନାପତିଙ୍କ ଭଳି ଦିଶୁଥିଲେ । ଆମ ପରିବାରରେ ଆଉ ଜଣେ ମଧ୍ୟ ଅଚନ୍ତି ଯିଏ ଫକୀରମୋହନ ସେନାପତିଙ୍କ ଭଳି ଦେଖାଯାଆନ୍ତି । ସେନାପତି ବଂଶର କିଛି ଦାୟାଦଙ୍କ ବିଷୟରେ ଏବେ ଏବେ ଜାଣିବାକୁ ପାଇଲି । ଆମେ ଯେହେତୁ ଫକୀରମୋହନଙ୍କ ପୁଅଙ୍କ ବଂଶଜ ଆମେ କେବଳ ମୋହିନୀମୋହନଙ୍କ ପିଲା ଥିଲୁ । ତେଣୁ ମୋହିନୀମୋହନଙ୍କ ପିଲା ଓ ତାଙ୍କର ନାତିନାତୁଣୀଙ୍କ ମଧ୍ୟରେ ନିଜକୁ ସୀମିତ ରଖୁଥିଲୁ ଟିକିଏ ଦୂରରେ ଥିଲା ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ପରିବାର । ତାଙ୍କର ସବୁଠୁ ଭଲ ଝିଅ ଥିଲେ ସ୍ନେହମୟୀ ମହାପାତ୍ର । ସେ ବୁଢ଼ୀ ଦିଦି ବୋଲି ଆମଠାରେ ପରିଚିତ ଥିଲେ । ସେ ଦେଖିବାକୁ ଖୁବ ସୁନ୍ଦରୀ ଥିଲେ । ତାଙ୍କର ବୁଦ୍ଧି ପ୍ରଖର ଥିଲା ଓ ସେ ଖୁବ ଭଲ ଗୀତ ଗାଇ ପାରୁଥିଲେ । ରାମକୃଷ୍ଣ ମିସନ୍ ସହ ସେ ଭଲ ଭାବେ ଜଡ଼ିତ ଥିଲେ । ତାଙ୍କ ସହ ପିଲାବେଳର କଥା ମୋର ମନେଅଛି । ପ୍ରକୃତରେ ତାଙ୍କ ଘରେ ମୁଁ ବହୁତ ସମୟ ବିତେଇଛି । ମୋ ଘର ଲୋକ, ବିଶେଷ କରି ମୋ ମାଆ ଅନେକ ସମୟରେ ତାଙ୍କୁ ଭେଟିବାକୁ ଯାଉଥିଲେ । ମୋର ମନେଅଛି ସେମାନେ କେମିତି ଘଣ୍ଟା ଘଣ୍ଟା ଧରି ବହିପତ୍ର ସଂପର୍କରେ କିମ୍ବା ଅନ୍ୟ ଗୁରୁତ୍ୱପୂର୍ଣ୍ଣ ବିଷୟ ସବୁ ଚର୍ଚ୍ଚା କରୁଥିଲେ । ମୁଁ ବଡ ଲୋକଙ୍କ କଥା ଶୁଣି ଶୁଣି ସମୟ କଟାଉଥିଲି । ବେଳେବେଳେ ସଞ୍ଜୁ, ରୁନୁ ଓ

ପିନାକୀ ସହ ଖେଳୁଥିଲି ମଧ୍ୟ । ବୁଢ଼ୀ ଦିଦି ତାଙ୍କ ସମୟର ଜଣେ ରେନେସାଁ ମହିଳା ଥିଲେ । ତାଙ୍କଠାରେ ଅନେକ ପ୍ରତିଭା ଥିଲା ଓ ସେ ସମସ୍ତଙ୍କୁ ଖୁବ୍ ଅମାୟିକ ବ୍ୟବହାର କରୁଥିଲେ । ଆଜିର ଯୁଗରେ ତାଙ୍କ ପରି ଝିଅ ପଛରେ କେତେ ପୁଅ ପଡ଼ିଥାଆନ୍ତେ । ଯାହାଙ୍କୁ କୁହନ୍ତି, ବ୍ରେନସ୍ ୱିଥ୍ ବିଉଟି । ସେ ମୋର ଭାରି ପ୍ରିୟ ଥିଲେ । ମୋତେ ସେ ସବୁବେଳେ କିଛି ନା କିଛି କଥା କହୁଥିଲେ । ସେ କହିବେ, ପାଖୀ, (ମୋ ଡାକ ନାଁ) କେବେ ଗୀତ ଗାଇବା ଛାଡ଼ିବୁନି । ବୋଧେ ତାଙ୍କରି ଏଇ କଥା ଆଉ ମୋ ବାପାଙ୍କ ପ୍ରୋତ୍ସାହନ ଯୋଗୁଁ ହିଁ ମୋ ପରି ଜଣେ ମଣିଷ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କଲା ଓ ଆକାଶବାଣୀର କଳାକାର ହୋଇପାରିଲା । ତା'ପରେ ବିଖ୍ୟାତ ଓଡ଼ିଶୀ ସଙ୍ଗିତଜ୍ଞ ଶ୍ରୀ କାଶୀନାଥ ପୂଜାପଣ୍ଡା ମୋତେ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା ଦେଲେ । ମୁଁ କଟକରେ ଦୀର୍ଘ ଆଠ ବର୍ଷ ଧରି ଗାଇଲି । ପରବର୍ତ୍ତୀ ସମୟରେ ଦିଲ୍ଲୀ ଆକାଶବାଣୀରେ ଦଶ ବର୍ଷ ଗାଇଲି । ଅନେକ ଦିନ ପରେ ଦିଲ୍ଲୀରେ ଜହୁର ଅହମ୍ମଦ ଖାନ ମୋତେ ସଙ୍ଗୀତ ଶିକ୍ଷା ଦେଲେ । ମୋର ସୌଭାଗ୍ୟ ମୋ କଣ୍ଠ ସଂଗୀତ ସବୁ ପାଇଁ ସଙ୍ଗୀତ ସଜାଇଥିବା ବ୍ୟକ୍ତି ହେଲେ ସଙ୍ଗୀତ ବିଶାରଦ ଶ୍ରୀ ଭୁବନେଶ୍ୱର ମିଶ୍ର । ଅନ୍ୟତମ ବାଦ୍ୟ ନିପୁଣ ବ୍ୟକ୍ତି ଶ୍ରୀଯୁକ୍ତ ସୁନାକର ସାହୁଙ୍କ ସହ ମଧ୍ୟ ଅନେକ ଥର ବସିବାର ସୁଯୋଗ ମିଳିଛି । ଆଉ ଗୋଟିଏ କଥା ଗର୍ବର ସହ କହି ରଖିବାକୁ ଚାହିଁବି । ମୁଁ ୧୯୬୦ ଦଶକରେ ଆକାଶବାଣୀ କଟକରେ ଗାୟିକା ଥିଲା ବେଳେ ମହାନ ବଂଶୀବାଦକ ହରିପ୍ରସାଦ ଚୌରାସିଆ ସେଠାରେ ସହଯୋଗୀକଳାକାର ଭାବେ ନିଯୁକ୍ତ ଥିଲେ । ତେଣୁ ତାଙ୍କର ବଂଶୀବାଦନ ସହିତ ଗୀତ ଗାଇବାର ସୌଭାଗ୍ୟ ମଧ୍ୟ ମୋତେ ପ୍ରାପ୍ତ ହୋଇଛି । ଆଜି ଅବଶ୍ୟ ଏହି କଥା ଅନେକ ଲୋକ ବିଶ୍ୱାସ କରି ପାରିବେ ନାହିଁ । ମୁଁ ମଧ୍ୟ ସଙ୍ଗୀତ ଦୁନିଆରେ ଆଜି ଅପରିଚିତ ହୋଇଯାଇଛି । ସେ ତ ଗୋଟେ ଭିନ୍ନ କଥା । କିନ୍ତୁ ସୌଭାଗ୍ୟବଶତଃ କିଛି ଦିନ ପୂର୍ବେ ଶ୍ରୀ ଚୌରାସିଆଙ୍କୁ ସାକ୍ଷାତ କରିବାର ପୁଣି ସୁଯୋଗ ପାଇଥିଲି ଦିଲ୍ଲୀରେ; ତାଙ୍କ ବହିର ଉନ୍ମୋଚନ ଉତ୍ସବ ଅବସରରେ । ସେ ବହିଟି 'ପେଙ୍ଗୁଇନ' ସଂସ୍ଥା ପ୍ରକାଶ କରିଛନ୍ତି । ଏ ସଂସ୍ଥା ମୋର ଏକ ବହିର ପ୍ରକାଶନ ମଧ୍ୟ । ତେଣୁ ମୋତେ ନିମନ୍ତ୍ରଣ ମିଳିଥିଲା । କାର୍ଯ୍ୟକ୍ରମ ଶେଷ ହେବା ପରେ ଶ୍ରୀ ଚୌରାସିଆଙ୍କ ପାଖକୁ ଯିବା ପାଇଁ ସାହସ କୁଟେଇଲି । ଯାଇ ପ୍ରଣାମ କଲି । ସେ ପ୍ରତି ନମସ୍କାର ଜଣାଇଲେ । ମୁଁ ଯାହା ଭାବିଥିଲି ତାହାର ଓଲଟା ହେଲା । ସେ ଭାରି ନମ୍ର ଲୋକ ପରି ମନେହେଲେ ଓ ପୁରୁଣା ଦିନର କଥା ସବୁ ମନେ ପକେଇଲେ ଯେତେବେଳେ କି କଟକ ରେଡିଓ ଷ୍ଟେସନରେ ସେ ଆର୍ଟିଷ୍ଟ ଥିଲେ । କଳା ସାଧନା କରୁଥିବା ଲୋକଙ୍କ ଭିତରେ ଏମିତି ନମ୍ରତା ରହିଥାଏ ।

# ମୋହିନୀମୋହନ ସେନାପତି

ଫକୀରମୋହନ ସେନାପତି ଥିଲେ ପ୍ରବଳ ଧର୍ମ ବିଶ୍ୱାସୀ । ତା' ସାଙ୍ଗକୁ ସବୁ ଧର୍ମକୁ ସେ ସମାନ ଭାବରେ ସମ୍ମାନ ଦେଉଥିଲେ । ତାହାର ଏକ ପ୍ରମାଣ ହେଉଛି ତାଙ୍କ ଦ୍ୱାରା ନିର୍ମିତ 'ସର୍ବଧର୍ମ ସମନ୍ୱୟ ସ୍ତମ୍ଭ' । ଯାହା ଏବେ ମଧ୍ୟ ବାଲେଶ୍ୱରର ଶାନ୍ତିକାନନରେ ସଗର୍ବେ ଦଣ୍ଡାୟମାନ । ତାଙ୍କର ଠିକ୍ ବିପରୀତ ଚରିତ୍ର ଥିଲେ ମୋହିନୀମୋହନ ସେନାପତି । ତାଙ୍କର ଧର୍ମ ଓ ଈଶ୍ୱରଙ୍କ ଉପରେ ନିଜସ୍ୱ ବିଚାର ଥିଲା । ସେ ନାସ୍ତିକ ଜଣା ପଡୁଥିଲେ । ନାସ୍ତିକ ନ ହେଲେ ବି ତାଙ୍କ ବିଚାରରେ ଈଶ୍ୱରଙ୍କ ସ୍ଥିତି ଅଜ୍ଞେୟ ଥିଲା । ମୋ ମାଆ ଅନେକ ସମୟରେ ଏସବୁ କଥା ମନେ ପକାଇଲା ବେଳେ ତାଙ୍କ ବାପା ତଥା ମୋ ଅଜା ମୋହିନୀମୋହନ ସେନାପତିଙ୍କ ଚରମ ମତବାଦ ପଛରେ କ'ଣ ସବୁ କାରଣ ରହିଥିଲା ତାହା ପ୍ରକାଶ କରୁଥିଲେ । ଦର୍ଶନ ଶାସ୍ତ୍ର ଅଧ୍ୟୟନ ତଥା ଜୀବନରେ ଅନ୍ୟ କେତୋଟି ଜିନିଷ ତାଙ୍କୁ ଖୁବ ପ୍ରଭାବିତ କରିଥିଲା । ସେ ଭକ୍ତକବି ମଧୁସୂଦନ ଦାସଙ୍କ ସଂସ୍ପର୍ଶରେ ଆସିଥିଲେ ଓ ପରେ ପରେ ବ୍ରାହ୍ମ ଧର୍ମ ଆଡ଼କୁ ଆକୃଷ୍ଟ ହୋଇଥିଲେ । 'ଉପାସନା' ସମୟରେ ମଧୁସୂଦନ ଦାସଙ୍କ ପ୍ରାର୍ଥନା ଗାନରେ ଯେଉଁ ଗଭୀରତା ଓ ଲାଳିତ୍ୟ ପ୍ରତିଫଳିତ ହେଉଥିଲା ତାହା କଟକର ଜ୍ଞାନୀଗୁଣୀ ଲୋକଙ୍କୁ ଟାଣି ଆଣୁଥିଲା । ସେତେବେଳର ବଙ୍ଗଳା ସାହିତ୍ୟରେ ସାକାର ଓ ନିରାକାର ବ୍ରହ୍ମଙ୍କ ବିଷୟରେ ଆଲୋଚନା ହେଉଥିଲା । ସେ ବିଷୟରେ ଗରମାଗରମ ଯୁକ୍ତିତର୍କ ମଧ୍ୟ ହେଉଥିଲା । ମୋହିନୀମୋହନ ଏହି ବିଷୟରେ ଉତ୍ସାହୀ ଆଲୋଚକ ଥିଲେ ।

ଏହି ପିତାପୁତ୍ରଙ୍କ ମଧ୍ୟରେ ଥିବା ମତଭେଦକୁ କାଳକ୍ରମେ ଲୋକେ ବଢ଼େଇଚଢ଼େଇ ଏମିତି ବର୍ଣ୍ଣନା କରିଛନ୍ତି ଯେ ମନେହୁଏ ସେ ଦୁହେଁ ପରସ୍ପରର ପରମ ଶତ୍ରୁ ଥିଲେ ବା ପରସ୍ପରର ପ୍ରତିଦ୍ୱନ୍ଦୀ ଭଳି ଦୁହେଁ ଦୁହିଁଙ୍କୁ ତୀବ୍ର ବିରୋଧ କରୁଥିଲେ । ମୋ ମାଆଙ୍କ କହିବା ଅନୁସାରେ ପ୍ରକୃତ କଥାଟି କିନ୍ତୁ ଜମା ସେପରି ନଥିଲା । ଦୁହିଁଙ୍କ ଭିତରେ କୌଣସି ପ୍ରକାରର ଶତ୍ରୁତା ଆଦୌ ନଥିଲା । ଏହା ସପକ୍ଷରେ ଅନେକ ପ୍ରମାଣ ରହିଛି । ତାଙ୍କ ଭିତରର ସମ୍ପର୍କ ଯେ କୌଣସି ସାଧାରଣ ବାପପୁଅ ସମ୍ପର୍କ ପରି ହିଁ ଥିଲା । ଉଭୟେ ପରସ୍ପରର ଅତି ଘନିଷ୍ଠ ଥିଲେ । ମୋହିନୀମୋହନ ସେନାପତି ନିଜେ

ଜଣେ ବିଦ୍ୱାନ ବ୍ୟକ୍ତି ଥିଲେ । ଏବେ ୨୦୧୬ରେ ଯେତେବେଳେ ପ୍ରଫେସର ଶ୍ରୀଯୁକ୍ତ ଅଧିକାରୀ ମହୋଦୟ (ଫକୀରମୋହନ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି) ଫକୀରମୋହନଙ୍କ ଜୀବନ ଓ ଅବଦାନ ବିଷୟରେ ଏକ ତିନି ଦିନିଆ ସମ୍ମିଳନୀର ଆୟୋଜନ କଲେ, ସେଠାରେ ଭାରତର ବିଭିନ୍ନ ଅଞ୍ଚଳରୁ ଫକୀରମୋହନଙ୍କ ବିଷୟରେ ଅଧ୍ୟୟନ କରୁଥିବା ଗବେଷକମାନେ ଏକାଠି ହୋଇଥିଲେ । ଫକୀରମୋହନଙ୍କ ବଂଶଧର ଭାବେ ମୋର ନିଜସ୍ୱ ଅଭିଜ୍ଞତା ବିଷୟରେ ବକ୍ତୃତା ଦେବା ପାଇଁ ମୋତେ ସେଠାକୁ ନିମନ୍ତ୍ରଣ କରାଯାଇଥିଲା । ସେ ମଞ୍ଚରେ ଏହି ପିତାପୁତ୍ରଙ୍କ ସମ୍ପର୍କରେ ବିଦ୍ୱେଷ ଥିବାର ଯେଉଁ କପୋଳକଳ୍ପିତ ଅବଧାରଣା ରହିଆସିଛି ସେ ବିଷୟରେ ମଧ୍ୟ ମୁଁ ଆଲୋକପାତ କରିଥିଲି । ସେ ପ୍ରକାରର ବିଦ୍ୱେଷମୂଳକ ଚର୍ଚ୍ଚାରେ ଆଦୌ କୌଣସି ସତ୍ୟତା ନାହିଁ, କେବଳ ଚାଞ୍ଚଲ୍ୟ ସୃଷ୍ଟି କରିବା ଉଦ୍ଦେଶ୍ୟରେ ହିଁ ସେ ପ୍ରକାର ଚର୍ଚ୍ଚାର ସୂତ୍ରପାତ ଘଟିଥାଇପାରେ ବୋଲି ମୋର ଦୃଢ଼ ବିଶ୍ୱାସ ରହିଛି ବୋଲି ମୁଁ କହିଥିଲି ।

ମୋର ସୌଭାଗ୍ୟ ଯେ ମୋ ମତକୁ ବିଶିଷ୍ଟ ଲେଖକ ଶ୍ରୀଯୁକ୍ତ ଦେବେନ୍ଦ୍ର ଦାଶ ସମର୍ଥନ କଲେ । ସେ ଫକୀରମୋହନ ସେନାପତିଙ୍କ ଉପରେ ଅନେକ ଲେଖାଲେଖି କରିଛନ୍ତି ଓ ସେଥିପାଇଁ ସେ ଖ୍ୟାତି ମଧ୍ୟ ଅର୍ଜନ କରିଛନ୍ତି । ଏ ପ୍ରସଙ୍ଗରେ ମୁଁ ମନେ ପକେଇ ଦେବାକୁ ଚାହିଁବି ଯେ କ'ଣ ମୋହିନୀମୋହନ ସେନାପତି ଫକୀରମୋହନଙ୍କ ରଚନାମାନ ସଙ୍କଳନ କରିନଥିଲେ ? ତାଙ୍କ ଦ୍ୱାରା ରଚିତ 'ବିବିଧ ପ୍ରସଙ୍ଗରେ'ରେ ଅନେକ ସ୍ଥାନରେ ସେ ତାଙ୍କର ପିତାଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି । 'ବିବିଧ ପ୍ରସଙ୍ଗ'ରେ ନିଜେ ଉଲ୍ଲେଖ କରିଛନ୍ତି- "ମୋ ବାପା ଫକୀରମୋହନ ସେନାପତି ମୋ ଜନ୍ମ ବରଷଠାରୁ ମହାଭାରତ ଅନୁବାଦ ଆରମ୍ଭ କରିଥିଲେ । କାମଟି ଶେଷ କଲେ ୧୯୦୨ରେ । ସାହିତ୍ୟ ଜଗତରେ ଏତାଦୃଶ ଅଧ୍ୟବସାୟ ଓ କଠିନ ପରିଶ୍ରମର ଦୃଷ୍ଟାନ୍ତ କ୍ୱଚିତ ଦେଖିବାକୁ ମିଳେ ।"(ବିବିଧ ପ୍ରସଙ୍ଗ)

ଓଡ଼ିଆ ମାସିକ ପତ୍ରିକା 'ଯୁଗଶ୍ରୀ ଯୁଗନାରୀ' ୨୦୧୭ ପୂଜା ସଂଖ୍ୟାରେ ମୋ ଉପରେ ଏକ ସ୍ୱତନ୍ତ୍ର ସାକ୍ଷାତକାର ପ୍ରସ୍ତୁତ କରାଯାଇଥିଲା । ସେଥିରେ ମଧ୍ୟ ମୁଁ ଫକୀରମୋହନଙ୍କ ଇଚ୍ଛାପତ୍ର ସଂକ୍ରାନ୍ତୀୟ ସ୍ପଷ୍ଟୀକରଣ ପ୍ରଦାନ କରିଥିଲି । ଏହି ସାକ୍ଷାତକାରଟି ଡ. ରବୀନ୍ଦ୍ର କୁମାର ଦାସ (ଶାନ୍ତିନିକେତନ)ଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା । ଏହାର ପ୍ରକାଶିକା ଥିଲେ 'ଯୁଗଶ୍ରୀ ଯୁଗନାରୀ'ର ସମ୍ପାଦିକା ଶ୍ରୀମତୀ ମମତା ମହାପାତ୍ର । ଏବଂ ତାହା ଏହିପରି -

ଡ. ରବୀନ୍ଦ୍ର - କୁହାଯାଏ, ଫକୀରମୋହନ ଏବଂ ମୋହିନୀମୋହନଙ୍କ ମଧ୍ୟରେ ଅଧିକାଂଶ ସମୟରେ ମତପାର୍ଥକ୍ୟ ଦେଖାଦେଉଥିଲା ଏବଂ ଏହା ପରବର୍ତ୍ତୀ ସମୟରେ ପାରିବାରିକ ବିବାଦର ରୂପ ନେଇଥିଲା, ଯାହା ଫକୀରମୋହନଙ୍କ 'ଇଚ୍ଛାପତ୍ର'ରେ ଉଲ୍ଲେଖିତ - ଏ ବିଷୟରେ ଆପଣଙ୍କ ବ୍ୟକ୍ତିଗତ ଘୋଷଣାନାମା କ'ଣ ହୋଇପାରେ ?

ଡ. ମନିକା - ଏହା ସଂପୂର୍ଣ୍ଣ ଏକ ମନଗଢ଼ା ଧାରଣା ଏବଂ ଏହା ବୋଧହୁଏ ଗୋଟେ ଅତ୍ୟଧିକ ଉତ୍ତେଜନାଜନକ ଅତିରଞ୍ଜିତ ପ୍ରଚାର । ମୁଁ ମୂଳରୁ ସ୍ପଷ୍ଟ କରିଦେବାକୁ ଚାହୁଁଛି ଯେ ଘଟଣାଟି ଆଦୌ ସେପରି ନୁହେଁ । ଫକୀରମୋହନ ବିଶ୍ୱବିଦ୍ୟାଳୟରେ ଏ ସମ୍ବନ୍ଧରେ ମୁଁ ସ୍ପଷ୍ଟୀକରଣ ଦେବା ସମୟରେ ବିଖ୍ୟାତ ଫକୀରମୋହନୀୟ ଗବେଷକ ଡ. ଦେବେନ୍ଦ୍ର ଦାଶ ଏହାକୁ ଦୃଢ଼ ଭାବରେ ସମର୍ଥନ କରିଥିଲେ । ଫକୀରମୋହନ ଏବଂ ମୋହିନୀମୋହନଙ୍କ ମଧ୍ୟରେ କିଛିକିଛି ଘଟଣାକୁ ନେଇ କେବେ କେବେ ମତଭେଦ ଦେଖା ଦେଉଥିଲା, ଯାହା ଆମ ସାମାଜିକ ଜୀବନରେ ପିତାପୁତ୍ର ମଧ୍ୟରେ ପିଢ଼ିଗତ ବ୍ୟବଧାନକୁ ନେଇ ଘଟିତ ହୁଏ । ଏହା ଅତି ସ୍ୱାଭାବିକ କଥା । ମୋହିନୀମୋହନ ଅଣପାରମ୍ପରିକ ଧାରାର ବୁଦ୍ଧିଜୀବୀ ଥିଲେ ଓ ନିଜ ଦୃଷ୍ଟିକୋଣକୁ ଜାହିର କରିବାକୁ ଚେଷ୍ଟା କରୁଥିଲେ । ଏଥିପାଇଁ ପିତା ଓ ପୁତ୍ରଙ୍କ ମଧ୍ୟରେ ତର୍କବିତର୍କ ଆବଶ୍ୟକ ସ୍ଥଳେ ଉପୁଜୁଥିଲା । ଆଜିର ତାରିଖରେ ମଧ୍ୟ ତାହାଠାରୁ ଆହୁରି ଅଧିକ ଘଟୁଛି । ଏହା ଅତ୍ୟନ୍ତ ସାଧାରଣ ଓ ସ୍ୱାଭାବିକ କଥା, ନୁହେଁ କି ? ଫକୀରମୋହନଙ୍କ ଗ୍ରନ୍ଥାବଳୀ ଓ ଆତ୍ମଜୀବନୀକୁ ମୋହିନୀମୋହନ ହିଁ ପ୍ରଥମେ ଆଲୋକୋନ୍ମୁଖ କରାଇଥିଲେ । ଫଳସ୍ୱରୂପ ଆଜି ବି ପାଠକମାନେ ତା'ର ଉପଯୋଗିତାର ଅଂଶୀଦାର ହୋଇପାରୁଛନ୍ତି ।

ଅପର ପକ୍ଷରେ ମୋହିନୀ ମୋହନ 'ବିବିଧ ପ୍ରସଙ୍ଗ' ଗ୍ରନ୍ଥରେ ଫକୀରମୋହନଙ୍କୁ ଭୂୟସୀ ପ୍ରଶଂସା କରିଛନ୍ତି । ତେଣୁ ପିତାପୁତ୍ର ମଧ୍ୟରେ ଥିବା ମତପାର୍ଥକ୍ୟ ଯେ ପରବର୍ତ୍ତୀ ସମୟରେ ପାରିବାରିକ ବିବାଦର ରୂପ ନେଇଥିଲା, ଏହା କହିବା ଆଦୌ ଉଚିତ ନୁହେଁ ।

କିନ୍ତୁ 'ଇଚ୍ଛାପତ୍ର' ପ୍ରସଙ୍ଗଟିକୁ ମୁଁ ଏଠାରେ ସ୍ପଷ୍ଟ କରିଦେବାକୁ ଚାହେଁ । ଫକୀରମୋହନ ତାଙ୍କ ପୁତ୍ରବଧୂ ହିରଣପ୍ରଭାଙ୍କ ନାମରେ ସମସ୍ତ ସଂପତ୍ତି ଉଇଲ୍ କରିଦେଇଥିଲେ, ଏହା ସତ କଥା । ଏହାର ପଶ୍ଚାତରେ କିନ୍ତୁ ଅନ୍ୟ ଏକ ବିଶେଷ କାରଣ ଥିଲା । ପୁତ୍ରବଧୂ ହିରଣପ୍ରଭା ଫକୀରମୋହନଙ୍କର ପ୍ରାଣାଧିକ ପ୍ରିୟ ଓ ବିଶ୍ୱାସୀ ଥିଲେ । ସେଥିପାଇଁ ସେ ତାଙ୍କୁ ସମସ୍ତ ସଂପତ୍ତିର ଉତ୍ତରାଧିକାରିଣୀ ଭାବେ ମନୋନୀତ

କରିଥିଲେ । ମୋ ଦିଦିମା' ହିରଣପ୍ରଭା କେବେକେବେ ଥଟ୍ଟାରେ "ମୁଁ ଏ ବଂଶର ସମସ୍ତ ସ୍ଥାବରଅସ୍ଥାବର ସଂପତ୍ତିର ଏକମାତ୍ର ମାଲିକାଣୀ..." କହି ମୋହିନୀମୋହନଙ୍କୁ ଚିଡ଼େଇବାକୁ ଚେଷ୍ଟା କରୁଥିଲେ ଏବଂ ସଙ୍ଗେ ସଙ୍ଗେ "ହଁ, ଏସବୁ ସଂପତ୍ତି ତମେ ଢାକାରୁ (ହିରଣପ୍ରଭା ଢାକା ଜମିଦାରଙ୍କ କନ୍ୟା ଥିଲେ) ଆସିଲାବେଳେ ସାଙ୍ଗରେ ଧରି ଏଇଠିକୁ ଆସିଥିଲ" ବୋଲି କହି ମୋହିନୀମୋହନ ମଧ୍ୟ ହିରଣପ୍ରଭାଙ୍କୁ ପରିହାସ ଛଳରେ ଉତ୍ତର ଦେଉଥିଲେ । ଏଇ ଘଟଣାକୁ ନେଇ ଆମ ଘରେ କିଛି ଆଲୋଡ଼ନ ନଥିଲା । ମୋହିନୀମୋହନଙ୍କ ମୃତ୍ୟୁ ଅନ୍ତେ ଦିଦିମା' ଫକୀରମୋହନଙ୍କ ସମସ୍ତ ସଂପତ୍ତିକୁ 'ଇଚ୍ଛାପତ୍ର'ର ଘୋଷଣାନାମା ଅନୁସାରେ ବଣ୍ଟନ କରିଦେଇଥିଲେ । ମୋ ମାଆଙ୍କ ଭାଗରେ ମଲ୍ଲିକାଶପୁର (ବାଲେଶ୍ୱର)ର ସଂପତ୍ତି ପଡ଼ିଥିଲା । ସେ ବିଷୟରେ ମୁଁ 'ଅନ୍ୱେଷଣ' ଡକ୍ୟୁ-ଫିଲ୍ମରେ ଉଲ୍ଲେଖ କରିଛି । ଏ ହେଉଛି ଫକୀରମୋହନଙ୍କ 'ଇଚ୍ଛାପତ୍ର'କୁ ନେଇ ଦେଖାଦେଇଥିବା ପ୍ରସଙ୍ଗର ପ୍ରକୃତ ରହସ୍ୟ, ଯାହାକୁ ମୁଁ ଏଠାରେ ସଂଯୋଜିତ କରି ଓଡ଼ିଶାର ଜନମାନସରେ ଶତାଧିକ ବର୍ଷ ଧରି ଛାପ ସୃଷ୍ଟି କରିଆସିଥିବା 'ଫକୀର - ମୋହିନୀ' ବିବାଦକୁ ଲିଭାଇ ଦେବା ପାଇଁ ବିନମ୍ର ପ୍ରୟାସଟିଏ କରିଛି । (ସୌଜନ୍ୟ- ଯୁଗଶ୍ରୀ ଯୁଗନାରୀ, ପୂଜା ସଂଖ୍ୟା, ୨୦୧୭)

ଅନେକ ଲୋକ ମତ ରଖନ୍ତି ଯେ ମୋହିନୀମୋହନ ଜ୍ଞାନୀ ତଥା ସ୍ୱାଧୀନଚେତା ବ୍ୟକ୍ତିଟିଏ ଥିଲେ ମଧ୍ୟ ଯଥୋଚିତ ଖ୍ୟାତି ସମ୍ମାନ ପାଇବାରୁ ବଞ୍ଚିତ ହୋଇଛନ୍ତି । ମୋର ମନେହୁଏ ତାଙ୍କର ମୌଳିକ ଚିନ୍ତାଧାରାର ପ୍ରତିଫଳନ ବର୍ଟ୍ରାଣ୍ଡ ରସେଲଙ୍କ ଲେଖାରେ ଦେଖିବାକୁ ମିଳେ । ଥରେ 'ଦ ବେଷ୍ଟ ରସେଲ' ବହିଟି ପଢ଼ିବାର ସୁଯୋଗ ମିଳିଲା । ମୁଁ ପୃଷ୍ଠା ପରେ ପୃଷ୍ଠା ପଢ଼ିଚାଲିଲି ଆଉ ମୋର ମନେ ହେଲା ଯେ ସେଥିରେ ଥିବା ବିଚାରମାନ ଅନେକ ମାତ୍ରାରେ ମୋ ଅଜା ମୋହିନୀମୋହନ ସେନାପତିଙ୍କ ବିଚାରଧାରା ସହ ସମାନ । ପ୍ରକୃତରେ ହିଁ ସବୁ ମହାନ ବ୍ୟକ୍ତି ଏକାପରି ଚିନ୍ତା କରିଥାଆନ୍ତି ।

ସେ ଥିଲେ ଜଣେ ସ୍ୱାଧୀନ ଚିନ୍ତକ ଏବଂ ପ୍ରଗତିଶୀଳ ଶିକ୍ଷାର ଦୃଢ଼ ସମର୍ଥକ । ସେତେବେଳେ ଉଦାରବାଦୀ (Liberal) ଶିକ୍ଷାକୁ ସମର୍ଥନ କରିବା ପ୍ରଚଳିତ ଧାରାର ବିପରୀତ ଥିଲା । କିନ୍ତୁ ଏବେ ଅନେକ ବିଦେଶୀୟ ବିଶ୍ୱବିଦ୍ୟାଳୟରେ ଲିବେରାଲ ଶିକ୍ଷା ପୃଷ୍ଟପୋଷକତା ଲାଭ କରୁଛି । ତଥାପି ମୋହିନୀମୋହନ ତାଙ୍କର ଅସାଧାରଣ ବିଚାର ଓ ମତ ପାଇଁ ଉପହସିତ ହେଉଥିଲେ । ସେ ଥିଲେ ତାଙ୍କ ସମୟଠୁଁ ଅନେକ ଆଗରେ । 'ଆମେରିକାର ଆବିଷ୍କାର', 'ପ୍ରାଣୀମାନଙ୍କ ଅଧିକାର', 'ମହିଳାମାନଙ୍କର ସ୍ୱାବଲମ୍ବୀ

ହେବାର ଅଧିକାର', 'ମହିଳାଙ୍କ ଶିକ୍ଷା', 'ବିବାହ ଅନୁଷ୍ଠାନର ଅନାବଶ୍ୟକତା' ପରି ଅନେକ ବିଷୟରେ ସେ ଲେଖିଛନ୍ତି । 'ଦ ଷ୍ଟେଟସମାନ୍' ପୃଷ୍ଠାରେ ତାଙ୍କ ବକ୍ତୃତାମାନ ପ୍ରକାଶ ପାଉଥିଲା ଯାହା ଗରମାଗରମ ଯୁକ୍ତିତର୍କ ପାଇଁ ଖୋରାକ ଯୋଗାଉଥିଲା । 'ଆନନ୍ଦ ବଜାର ପତ୍ରିକା'ରେ ତାଙ୍କ ଯୁକ୍ତି ପ୍ରକାଶ ପାଉଥିଲା । ଏ ସନ୍ଦର୍ଭରେ ମୋ ମାଆ କହିବାର ମନେପଡ଼େ ଯେ ତାଙ୍କ ବାପା (ମୋହିନୀମୋହନ) ଯଥୋଚିତ ସ୍ୱୀକୃତି ପାଇଲେ ନାହିଁ । କାହିଁକି ନା ଫକୀରମୋହନ ସେନାପତିଙ୍କ ପୁଅ ବୋଲି ସେ ଲୋକଲୋଚନ ଆଢୁଆଳରେ ରହିଗଲେ । ମାଆ କହୁଥିଲେ ଯେ, ଫକୀରମୋହନ ଏକ ବିଶାଳ ବରଗଛ ପରି ଥିଲେ ଯାହାର ଛାଇରେ ପରବର୍ତ୍ତୀ ପିଢ଼ିର ଛୋଟ ଛୋଟ ଗଛଲତା ବଢ଼ି ପାରିଲେ ନାହିଁ ।

ମୋହିନୀମୋହନଙ୍କ ଲେଖା ସବୁ ମୁଖ୍ୟତଃ ସମାଜ ସଂସ୍କାର ବିଷୟକ ଥିଲା । ବିଭିନ୍ନ ସାମାଜିକ, ଅର୍ଥନୈତିକ ଓ ଆଧ୍ୟାତ୍ମିକ ବିଷୟ ବସ୍ତୁ ଉପରେ ସେ ଦାର୍ଶନିକ ଓ ନବୀନ ବିଚାରମାନ ପରିବେଷଣ କରୁଥିଲେ । ସେ ସମାଜର ଆମୂଳଚୂଳ ପରିବର୍ତ୍ତନ ପାଇଁ ପ୍ରସ୍ତାବ ରଖୁଥିଲେ । ସମାଜର ମଙ୍ଗଳ ପାଇଁ ପ୍ରେସକ୍ରିପସନ ପରି ସେସବୁ ଲେଖା ତାଙ୍କ କଲମରୁ ଝୁରୁଥିଲା । ହୁଏତ ସେ ଲେଖାଗୁଡ଼ିକ ଅନେକ ଲୋକଙ୍କ ପାଇଁ ଖୁବ ସିଧାସଳଖ ଓ କଡ଼ା ଥିଲା । ସେ ଲେଖାଗୁଡ଼ିକର ବିଷୟବସ୍ତୁ ମଧ୍ୟ ବିବାଦୀୟ ଥିଲା । ଅପରପକ୍ଷେ ଫକୀରମୋହନଙ୍କ ଲେଖାର ଅନେକ ମୁଗ୍ଧ ପାଠକ ଥିଲେ । ତାଙ୍କ ଲେଖାରେ ଥିଲା ଅନୁଭବର ଗଭୀରତା, ସାମାଜିକ ବିଷୟବସ୍ତୁ, ହାସ୍ୟରସ ଓ ସାମାଜିକ ବାସ୍ତବତାବାଦ । ତା' ସାଥିରେ ଅନନ୍ୟ ଶବ୍ଦ ଚୟନ ଓ ଭାଷା ସଂଯୋଜନା । ଏ ସବୁ ମିଶି ସେ ଲେଖାସବୁ ପାଠକଙ୍କ ପାଇଁ ଅମୃତ ପାଲଟି ଯାଉଥିଲା । ଲୋକେ ସେ ଲେଖାକୁ ପିଇଗଲା ପରି ଆଦର କରୁଥିଲେ । ଫକୀରମୋହନ ପାଲଟିଗଲେ କିମ୍ବଦନ୍ତୀ ପୁରୁଷ । ଉଭୟ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଏକ ବିଖ୍ୟାତ ନାମ ।

## ଦିଦିମା

ଫକୀରମୋହନ ସେନାପତି ତାଙ୍କ ବୋହୂ ଅର୍ଥାତ୍ ମୋ ଦିଦିମାଙ୍କ କର୍ତ୍ତବ୍ୟପରାୟଣତା ବିଷୟରେ ବିଶେଷ ଭାବରେ ଉଲ୍ଲେଖ କରିଛନ୍ତି । ସେ ଭୁଲ୍ ବଶତଃ ସଲଫ୍ୟୁରିକ ଅମ୍ଳ ଖାଇଦେଇଥିବା ବେଳେ ତାଙ୍କ ବୋହୂ କେତେ ସେବାଯତ୍ନ କରିଥିଲେ ସେକଥା ମଧ୍ୟ ଲେଖିଛନ୍ତି ।

ଏଣୁ ମୋ ପାଇଁ ଦିଦିମା ଥିଲେ ସଦାଚାର, ପ୍ରତିଭା ଓ ନିଃସର୍ତ୍ତ ଭଲପାଇବାର ଏକ ମୂର୍ତ୍ତିମନ୍ତ ପ୍ରତୀକ । ମୋ ଜୀବନର ପ୍ରାରମ୍ଭରୁ ସେ ମୋ ପାଇଁ ମାଆ ପରି ହିଁ ଥିଲେ । ମୁଁ କଲିକତାରେ ଲେଡ଼ି ବ୍ରେବୋର୍ଣ୍ଣ କଲେଜରେ ପଢୁଥିଲା ବେଳେ ମଝିରେ ମଝିରେ ଆସି ଦିଦିମାଙ୍କୁ ଦେଖା କରୁଥିଲି । ତାଙ୍କ ସହ ଅନ୍ତରଙ୍ଗ ବାର୍ତ୍ତାଳାପବେଳେ ମୁଁ ରବୀନ୍ଦ୍ର ସଙ୍ଗୀତ ଓ ରବୀନ୍ଦ୍ର ନାଟକ ସହ ମୋ ପରିଚୟ କେମିତି ହେଲା କହୁଥିଲି । ମୁଁ କେମିତି 'ଚଣ୍ଡାଲିକା' ନାଟକରେ ନୃତ୍ୟ କରିଥିଲି, 'ଭାନୁ ସିଂହେର ପଦାବଳି'ରୁ ଗୀତ ଗାଉଥିଲି ଏବଂ ଅନ୍ୟ ଜାଗାଗୁଡ଼ିକରେ ରହିବା ବେଳେ ମୋର କିପରି ଅନୁଭୂତି ଥିଲା ସେ ବିଷୟରେ ଗପୁଥିଲି ।

ଏଠାରେ ମୋ ଦିଦିମା ଅର୍ଥାତ୍ ମୋହିନୀମୋହନଙ୍କ ଧର୍ମପତ୍ନୀ ଏବଂ ଫକୀରମୋହନଙ୍କ ପୁତ୍ରବଧୂଙ୍କୁ ନେଇ ଫକୀରମୋହନ ଯେଉଁ 'ନବବଧୂ ଆହ୍ୱାନ' କବିତାଟି ରଚନା କରିଥିଲେ ତାହାକୁ ସଂଯୁକ୍ତ କରୁଛି ।

**ନବବଧୂ ଆହ୍ୱାନ**

(ରାଗ-ବଙ୍ଗଳାଶ୍ରୀ)

ଆସରେ ଆସରେ ନୟନପ୍ରତିମା !

ନେବି ମୁଁ ତୋତେ ବନ୍ଦାଇ,

ଆହା ! ଆହା ! ଆହା ! ଦୁଃଖିନୀ ମାତାକୁ

ଆସିଅଛୁ ତୁ କନ୍ଦାଇ ।

କେଉଁ ଦେବତାର କନ୍ୟା ତୁ ଝିଅ ରେ,

କେଉଁ ତାରକାର ଜ୍ୟୋତି,
କେଉଁ ଚାନ୍ଦିମାର ବିମଳ କୌମୁଦୀ
ହୋଇଅଛୁ ମୂର୍ତ୍ତିମତୀ ?
ଦୟା, ମାୟା, ସ୍ନେହ ଲାବଣ୍ୟ ମାଧୁରୀ,
ତୁହି କିରେ ରୂପାନ୍ତରା ?
ଅଭିଶାପଗ୍ରସ୍ତା ଆରେ ମୋ ସଙ୍ଗାଳି,
ତୁ କି ତ୍ରିଦିବ ଅପ୍‌ସରା ?
ତୁ କିରେ ମୋହର ପ୍ରଦୋଷ-ଗଗନ
ପ୍ରାଙ୍ଗଣରେ ସୁଖ-ତାରା ?
ହେବୁ କି ମୋହର ଅନ୍ଧର ଲଉଡ଼ି,
ସମସ୍ତ ସନ୍ତାପହରା ?
ହିରଣ୍ୟର ପ୍ରଭା, ସୁମନର ଶୋଭା
ତୁ କି ମାଣିକ୍ୟର ଦ୍ୟୁତି ?
ତୁ କି ପଦ୍ମାସନା ଗୋଲୋକବାସିନୀ
କ୍ଷୀରାବ୍ଧି ତନୟା ମୂର୍ତ୍ତି ?
ବସନ୍ତ ମାଳତୀ, ଫୁଲ୍ଲ କୁମୁଦିନୀ,
ତୁ କି ଶାରଦ ମଲ୍ଲିକା ?
କେଉଁ ତପୋବଳେ ପାଇଛି ରେ ତୋତେ ?
କୁଳବଧୂ ପ୍ରାଣାଧିକା !
ଆଶୀର୍ବାଦ କରେଁ ଆରେ ମୋ କଲ୍ୟାଣି
ସୁଖେ ରହ ମୋହ ଘରେ,
କରୁଛି କାମନା, ତୋହପରି ବଧୂ
ପାଏଁ ଜନ୍ମ ଜନ୍ମାନ୍ତରେ ।

ଦିଦିମାଙ୍କର ଉଚ୍ଚକୋଟୀର ସୌନ୍ଦର୍ଯ୍ୟବୋଧ ଥିଲା । ଯଦିଓ ସେ ଟିକେ ଗେଡ଼ୀ ଥିଲେ ଓ ଦେଖିବାକୁ ସେତେ ଗୋରୀ ନଥିଲେ । ତାଙ୍କ ବ୍ୟକ୍ତିତ୍ୱରେ ଥିଲା ଅତୁଳନୀୟ ଲାବଣ୍ୟ । ତାଙ୍କ ମୁଖମଣ୍ଡଳରେ ଆକର୍ଷଣ ଥିଲା ଅସାମାନ୍ୟ । ମୋର ମନେଅଛି ସେ ଯେତେବେଳେ ଗାଧୁଆ ଘରୁ ବାହାରି ଆସିବେ ବାତାବରଣରେ କେମିତି ଏକ ସୁନ୍ଦର ମହକ ଚହଟି ଯାଉଥିଲା । ତା'ପରେ ସେ ଦେହସାରା କ୍ୟୁଟିକ୍ୟୁରା ପାଉଡର ଲଗାଉଥିଲେ, ବିଶେଷ କରି ବେକରେ । ମୁଁ ଅଧିକାଂଶ ସମୟରେ ତାଙ୍କ ଦେହକୁ ଜାବୁଡ଼ି ଧରୁଥିଲି ଓ ଏକ ଦିବ୍ୟ ଅନୁଭବରେ ନିମଜ୍ଜିତ ହୋଇଯାଉଥିଲି । ମୋର ମନେଅଛି ସେ ଗୋଟାଏ ପୁରୁଣା ଦର୍ପଣ ଆଗରେ କେମିତି ଛିଡ଼ାହେଉଥିଲେ । ସେ ଦର୍ପଣଟି ହୁଏତ ଏବେବି ଥାଇପାରେ । ସେ ଗୋଟିଏ ପତଳା ଗାମୁଛାରେ ତାଙ୍କ ଓଦା ବାଳ ବାନ୍ଧିଦେଇଥିବେ ଯେମିତିକି ପ୍ରସାଧାନରେ ସୁବିଧା ହେବ । ସେତେବେଳେ ବାଳକୁ ଥାକ ଥାକ କରି ସଜାଇବା ପାଇଁ କୌଣସି ଯନ୍ତ୍ର ତ ନଥିଲା । ତେଣୁ ନାରୀର କେଶ ସଜାଇବା ପାଇଁ ଉପାୟ ଥିଲା ଓଦା ଗାମୁଛା ବାନ୍ଧିବା । ଗାମୁଛା ଟିକିଏ ଶୁଖିଗଲା ପରେ ସେ ତାହାକୁ ଖୋଲିଦେଇ ବାଳରେ ଅନ୍ତିମ ସ୍ପର୍ଶ ଦେଇ ସଜାଇଦେଉଥିଲେ । ଯେତେବେଳେ ତାଙ୍କୁ ବାହାରକୁ କୁଆଡେ ଯିବାର ଥାଏ, ସେ ଅତର ପରଫ୍ୟୁମ୍ ଲଗାଉଥିଲେ । ମୋ ମାଆଙ୍କର ମଧ ସେଇ ଅଭ୍ୟାସ ଥିଲା । ସେ ପରଫ୍ୟୁମଟି ହେଲା 'ଇଭନିଙ୍ଗ ଇନ୍ ପ୍ୟାରିସ' ।

ମୋର ଯାହା ମନେ ପଡୁଛି, ଦିଦିମା ସବୁବେଳେ ବିନା ଧଡ଼ିବାଲା ଧଳା ଶାଢ଼ୀ ଓ ତା ସାଥିରେ ଧଳା ବ୍ଲାଉଜ ପିନ୍ଧୁଥିଲେ । କାରଣଟି ହେଲା ସେ ବହୁତ ଆଗରୁ ହିଁ ବିଧବା ହୋଇଯାଇଥିଲେ । ମୋହିନୀମୋହନ ଷାଠିଏ ପାଖାପାଖି ବୟସରେ ହିଁ ଚାଲିଗଲେ । ତେଣୁ ତାଙ୍କ କଥା ମୋର ପ୍ରାୟ ମନେ ନାହିଁ । ତାଙ୍କ ବିଷୟରେ ମୁଁ ଯାହା ଯେତିକି ଜାଣିଛି ସବୁ ମାଆଙ୍କ ଠାରୁ ଶୁଣିଛି, ଆଉ ତାଙ୍କ ଲିଖିତ ବହିଗୁଡ଼ିକରୁ । ଯେହେତୁ ଦିଦିମା ଫକୀରମୋହନଙ୍କର ଏକ ମାତ୍ର ବୋହୂ ଥିଲେ ତେଣୁ ତାଙ୍କୁ ଅନେକ ବହୁମୂଲ୍ୟ ଗହଣା ଉପହାର ମିଳିଥିଲା । ସେସବୁ ପୁଣି ବ୍ରିଟିଶ ବଣିଆ ତିଆରି କରିଥିଲେ । ସେସବୁ ଗହଣାରେ ଅତି ସୂକ୍ଷ୍ମ କାରୁକାର୍ଯ୍ୟ ହୋଇଥିଲା । ଥରେ ଦିଦିମା କହିଲେ ଯେ ସେ ଆଗରୁ କେବେ ଦିନେ କଲିକତା ଯାଇଥାଆନ୍ତି । ତାଙ୍କ ହାତରେ ଥାଏ ଗହଣାଗାଣ୍ଠିରେ ଭର୍ତ୍ତି ଗୋଟେ ଛୋଟିଆ ବାକ୍ସ । ଯେଉଁ କୁଲି ଏଇ ବାକ୍ସକୁ ମୁଣ୍ଡରେ ବୋହି ଚାଲୁଥିଲା ସେ ବୋଧେ ବାକ୍ସରେ ଗହଣା ଥିବା କଥା ଜାଣିପାରିଲା କି କ'ଣ ଯେ ବାକ୍ସକୁ ଧରି କେତେବେଳେ ଚୁପକିନା ଖସିଗଲା । ଯେ କୌଣସି ନାରୀ ପାଇଁ ନିଜ ଗହଣା ହଜାଇବା

ଘୋର କଷ୍ଟଦାୟକ ଘଟଣା । କିନ୍ତୁ ଦିଦିମା ବେଶୀ ସମୟ ପାଇଁ ଦୁଃଖ କଲେ ନାହିଁ କି ନିଜ ଭାରସାମ୍ୟ ହରାଇଲେ ନାହିଁ । ସେ ଚୋରି ଘଟଣାଟି ଘଟିନଥିଲେ ଆମପାଖରେ ଆଜି କ'ଣ ନଥାନ୍ତା । ତେବେ ଯାହା କିଛି ବି ସୁରକ୍ଷିତ ଥିଲା ଦିଦିମା ତାଙ୍କ ନାତୁଣୀମାନଙ୍କ ଭିତରେ ସବୁ ବାଣ୍ଟିଦେଲେ । ମୁଁ କେତେଗୁଡ଼ିଏ ସୁନ୍ଦର ଗହଣା ତାଙ୍କଠାରୁ ପାଇଥିଲି । ଲୋକେ କହିଲେ ମୁଁ ଦିଦିମାଙ୍କର ସବୁଠୁ ଆଦରର ଥିଲି ବୋଲି ମୋତେ ସବୁଠାରୁ ସୁନ୍ଦର ଗହଣାତକ ମିଳିଲା । କିନ୍ତୁ ଦିଦିମା କେବେ ପକ୍ଷପାତ କରୁ ନଥିଲେ । ତାଙ୍କ ଆଚରଣ ସବୁବେଳେ ନ୍ୟାୟସଙ୍ଗତ ଥିଲା । ମୋର ମନେଅଛି ଥରେ, ଆମେ ଯେତେ ଭାଇଭଉଣୀ ଆଇନା ଆଗରେ ଛିଡା ହୋଇଥାଉ । ଆମ ଭିତରୁ ଯିଏ ସବୁଠୁ ସାନ ଥିଲା ପଚାରିଲା 'ଦିଦିମା, କହିଲ ଦେଖି ଆମ ଭିତରୁ କିଏ ସବୁଠୁ ବେଶୀ ଗୋରା ଓ ସୁନ୍ଦର' । ଦିଦିମା ଟିକେ ସମୟ ନୀରବ ରହିଲେ ଓ କହିଲେ, 'କେହି ବି ନୁହଁ ।' ସେ କଥା ସେଇଠି ସରିଗଲା ।

ଦିଦିମାଙ୍କର ଗୋଟେ ପୋଷା ବିଲେଇଥିଲା । ଯାହାର ନାଁ ଥିଲା 'ନାକଫୁଲି' । ତାକୁ ଶୋଇବାକୁ ଇଚ୍ଛା ହେଲେ ସେ ଦିଦିମାଙ୍କର କାଠ ଆଲମାରୀ ଉପରକୁ ଚଢ଼ିଯାଉଥିଲା । ଦିଦିମା ତାଙ୍କ ନିଜ ଭାଗରୁ ଗୋଟେ ବଡ଼ ମାଛ ଟୁକୁଡ଼ା କାଢ଼ି ବିଲେଇ ପାଇଁ ରଖିଦେଉଥିଲେ । ମୁଁ ଯେହେତୁ ଦିଦିମାଙ୍କ ପ୍ରତି ଏତେ ଅନୁରକ୍ତ ଥିଲି 'ନାକଫୁଲି' ଯତ୍ନ ନେବା ମୋର ପରମ କର୍ତ୍ତବ୍ୟ ବୋଲି ମୋର ମନେହେଉଥିଲା । ଥରେ ତା'ର କାନରେ ଗୋଟେ ଘାଆ ହୋଇଥିଲା । ମୁଁ ହିଁ ତା'ର ସେବା କରି ତାକୁ ସୁସ୍ଥ କଲି । ଦିଦିମାଙ୍କର ନିଜର ଏକ କୋଠରୀ ଥିଲା ଯେଉଁଠି ଅନେକ ବହି, ହାତଚାଳିତ ସିଲେଇ ମେସିନ ଓ ଅନ୍ୟାନ୍ୟ ଘରସଜା ଜିନିଷ । ସେ ପୋଷାକ ସିଲେଇ କରୁଥିଲେ, ପୁରୁଣା ଶାଢ଼ୀ ବ୍ୟବହାର କରି କନ୍ଥା ତିଆରି କରିପାରୁଥିଲେ । ସେ କନ୍ଥାସବୁ କେତେ ସୁନ୍ଦର ଆଉ କୋମଳ ଥିଲା । କଟକର ଶୀତରେ ଆମେ ସେହି କନ୍ଥାସବୁ ଘୋଡ଼େଇ କାମ ଚଳେଇ ଦେଉଥିଲୁ । ଏଇ କୋଠରୀରେ ସେ ମୋତେ ଫକୀରମୋହନ ସେନାପତିଙ୍କ ବିଷୟରେ କହୁଥିଲେ- ଫକୀରମୋହନଙ୍କ ପସନ୍ଦନାପସନ୍ଦ, ତାଙ୍କ ଅଭ୍ୟାସ, ସେ କେମିତି ସବୁବେଳେ କିଛି ନା କିଛି କାମରେ ନିଜକୁ ବ୍ୟସ୍ତ ରଖୁଥିଲେ ଇତ୍ୟାଦି । ଦିଦିମା ସୂକ୍ଷ୍ମ ଏମ୍ବ୍ରୋଡୋରୀ କାମ ମଧ୍ୟ କରିପାରୁଥିଲେ । ଘରେ ତାଙ୍କ ଦ୍ୱାରା ନିର୍ମିତ ଅନେକ ଏମ୍ବ୍ରୋଡୋରୀ ରହିଥିଲା । ଦିଦିମା ଜଣେ ଉତ୍ସାହୀ ପାଠକ ଥିଲେ । ତାଙ୍କର ପ୍ରିୟ ଲେଖକ ଥିଲେ ବଙ୍କିମଚନ୍ଦ୍ର ଓ ରବୀନ୍ଦ୍ରନାଥ ଠାକୁର । ସେ ବୃଦ୍ଧକାଳରେ ମଧ୍ୟ ଗଳ୍ପ ଉପନ୍ୟାସ ପଢ଼ିବା ଜାରି ରଖିଥିଲେ । ମୋର ମନେଅଛି ତାଙ୍କୁ ଯେତେବେଳେ ପଞ୍ଚସ୍ତରୀ କି ତା'ଠାରୁ

ଅଧିକ ବୟସ, ସେ କେମିତି ବିନା ଚଷମାରେ ପଢ଼ିପାରୁଥିଲେ । ତାଙ୍କର ଖୁବ କମ୍ ବାଳ ପାଚିଥିଲା । ଚର୍ମ ଥିଲା କୋମଳ ଓ ସୁନ୍ଦର । ମୁଁ ତାଙ୍କ ସହ ଶୋଉଥିଲି ଓ ଶୋଇବା ବେଳେ ତାଙ୍କ ଦେହକୁ ଛୁଉଁଥିଲି । ବହୁତ ସୁନ୍ଦର ଅନୁଭବ ଥିଲା ସେଇଟା । ମୋତେ ବେଳେ ବେଳେ ଲାଗେ ମୁଁ ମୋ ମାଆ ଅପେକ୍ଷା ଦିଦିମାଙ୍କ ପାଖରେ ବେଶୀ ଘନିଷ୍ଠ ଥିଲି । ଦିଦିମା ସବୁବେଳେ ଉଦାର ଓ ସ୍ନେହୀ ଥିଲେ । ଆଉ ମୋ ମାଆ ପ୍ରାୟ କଠୋର ରହୁଥିଲେ ବୋଲି ବୋଧେ ଏମିତି ଲାଗୁଥିଲା । ମୁଁ ଯେତେବେଳେ ବଡ଼ ହେଲି ଆଉ ଯୁବାବସ୍ଥାରେ ପାଦ ଦେଲି, ଦିଦିମା କହିଲେ, ଆଉ କେତୋଟି ବର୍ଷ ଭିତରେ ତୋର ବାହାଘର ହୋଇଯିବ ଓ ତୁ ଗୋଟେ ସୁନ୍ଦର ସ୍ୱାମୀ ପାଇବୁ । ନିଶ୍ଚିତ ଭାବରେ, ମୁଁ ଯାହାଙ୍କୁ ବାହା ହେଲି ସେ ଦେଖିବାକୁ ଖୁବ ସୁନ୍ଦର ଥିଲେ । ଦୁର୍ଭାଗ୍ୟକୁ ଦିଦିମା ସେତେବେଳେ ଆମକୁ ଆଶୀର୍ବାଦ କରିବାକୁ ଆଉ ନଥିଲେ । ତାଙ୍କର ଦେହାନ୍ତ ହୋଇସାରିଥିଲା ।

ନାରୀସୁଲଭ ରୂପଲାବଣ୍ୟ ଓ ଗୁଣର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ଦିଦିମା । ନାରୀ ବୋଇଲେ ପ୍ରକୃତରେ ଯାହା ସବୁ ବୁଝାଏ ଦିଦିମା ତାହା ଥିଲେ । ଜଣେ ଆଦର୍ଶ ନାରୀର ସବୁ ଗୁଣ ଦିଦିମାଙ୍କ ଠାରେ ଥିଲା । ତାଙ୍କ କଥା ଲୋକେ ଭୁଲିଯାଇଛନ୍ତି । ମୋ ଦିଦିମା ହିରଣପ୍ରଭାଙ୍କ ଠାରେ ଯେଉଁ ସବୁ ବୈଶିଷ୍ଟ୍ୟ ଥିଲା ପ୍ରତ୍ୟେକ ନାରୀ ତାହାର ଅନୁକରଣ କରିବା ଉଚିତ । ଏସବୁ ବ୍ୟତୀତ ଘର ବାହାରେ ସେ କେମିତି ତ୍ରୁଟିହୀନ ବ୍ୟବହାର କରୁଥିଲେ ମୋର ମନେଅଛି । ଜଣେ ମହାନ ସତ୍କାରିଣୀ ହିସାବରେ ଲୋକେ ତାଙ୍କୁ ଜାଣୁଥିଲେ । ଲୋକଙ୍କୁ ଖୁଆଇବାରେ ତାଙ୍କର ଆନନ୍ଦ ଥିଲା । ଅତିଥିମାନଙ୍କର ଅଭ୍ୟର୍ଥନାରେ ସେ ଟିକିନିକି କରି ସବୁକଥାର ଯତ୍ନ ନେଉଥିଲେ । ଆଜି ଯାଏ ମଧ ଲୋକେ ତାଙ୍କ ଗୁଣ ଗାଉଛନ୍ତି ।

ମୋ ଜୀବନରେ ମୃତ୍ୟୁ କ'ଣ ପ୍ରଥମ ଥର ପାଇଁ ଜାଣିଲି ଯେତେବେଳେ ଦିଦିମା ଚାଲିଗଲେ । ସେ ଘଟଣା ଖୁବ ହୃଦୟ ବିଦାରକ ଥିଲା । ପ୍ରଥମ ଥର ପାଇଁ ମୁଁ ଜୀବନରେ ଚିତା ଜଳିବାର ଦେଖିଲି । ଅବଶ୍ୟ ସେଠାରେ ବେଶୀ ସମୟ ପର୍ଯ୍ୟନ୍ତ ଛିଡ଼ାହେବାକୁ ମାଆ ମୋତେ ବାରଣ କଲେ । ସେଠୁ ଫେରିବା ପରେ ମୁଁ ଦେଖିଲି ମୋ ମାଆଙ୍କ ପାଖରେ ସେହି ମୁଦି ଯାହାକୁ ଏତେ ବର୍ଷ ଧରି ଦିଦିମା ପିନ୍ଧୁଥିଲେ । ସେ ମୁଦିରେ ଗୋଟେ ଛୋଟିଆ ହୀରା ଲାଗିଥିଲା । ଯେଉଁଟାକି ଅନେକ ଦିନ ଆଗରୁ କେଉଁଠାରେ ପଡ଼ିଯାଇଥିଲା । ମାଆ ମୁଦିଟିକୁ ଏକ ସନ୍ତକ ହିସାବରେ ସାଇତି ରଖିବାକୁ

ଚାହିଁଥିଲେ । ଅନେକ ବର୍ଷ ପରେ ମୁଦିଟିକୁ ମୋ ପୁଅ ତଥା ତାଙ୍କ ପ୍ରଥମ ନାତିକୁ ସେ ଆଶୀର୍ବାଦ ସ୍ୱରୂପ ପ୍ରଦାନ କରିଦେଲେ । ସେ ଭାବାବେଗ ମୋ ପାଇଁ କୋଟିନିଧି ତୁଲ୍ୟ ।

ଫକୀରମୋହନ ନାରୀ ଜାତିକୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରୁଥିଲେ । ସେ କଥା ତାଙ୍କ ବିଭିନ୍ନ ରଚନାରେ ଅଭିବ୍ୟକ୍ତ ହୋଇଛି । ସେଥିପାଇଁ ଆମ ପରିବାରରେ ମୋ ଦିଦିମାଙ୍କଠାରୁ ଆରମ୍ଭ କରି ମୋ ମାଆଙ୍କ ପର୍ଯ୍ୟନ୍ତ ସମସ୍ତ ନାରୀଙ୍କ ପ୍ରତି ଫକୀରମୋହନ ନ୍ୟାୟସଂଗତ ମର୍ଯ୍ୟାଦା ପ୍ରଦାନ କରିଛନ୍ତି । ନାରୀ ସଂପର୍କିତ ତାଙ୍କର ଏତାଦୃଶ ବିଚାରବୋଧକୁ ସ୍ମରଣ କରିବା ପାଇଁ ମୁଁ ତାଙ୍କର 'ନାରୀ' ଶୀର୍ଷକ କ୍ଷୁଦ୍ର କବିତାଟିକୁ ଏଠାରେ ସ୍ଥାନିତ କରୁଛି ।

## ନାରୀ

ବିଧାତା ବିଚିତ୍ର ଚିତ୍ର ରମଣୀ - ଶରୀର/ ତହୁଁ ବଳି କିବା ଅଛି ଜଗତେ ରୁଚିର ।
ସଂସାର କଣ୍ଟକବନେ କୁସୁମିତା ଲତା / ମୂର୍ତ୍ତିମତୀ କିବା ପ୍ରଭାରାଶି ପବିତ୍ରତା ।
ତୃଷ୍ଣା ଦୂର କରେ ପୂତ ମନ୍ଦାକିନୀ ଜଳ / ଦୃଷ୍ଟିମାତ୍ରେ ନାରୀରୂପ ଜୀବନ ଶୀତଳ ।
ସ୍ୱର୍ଗ ପାରିଜାତ ଜିଣି ବଦନ କମଳ / ଅମୃତଲହରୀ ଗଣ୍ଡଦେଶେ ଢଳଢଳ ।
ନୀଳ ନୀରଦର ତଳେ ଭାସିଯାଏ ଇନ୍ଦୁ / ପ୍ରେମରସ ଘନୀଭୂତ କିବା ସୁଧାସିନ୍ଧୁ ।
ଚପଳ ଚାହାଣି ଚଳେ ନୟନର ପ୍ରାନ୍ତେ / ବିକଚ କମଳ ଯେହ୍ନେ ତରଙ୍ଗ ଆଘାତେ ।
ରମଣୀ ହୃଦୟ ପଦ୍ମ କଳିକା ଆକାର / ଦୟା ମାୟା ସ୍ନେହ ଭକ୍ତି କିବା ସ୍ତୂପାକାର ।
ନିର୍ମଳ ଚରିତ୍ର ପୂତମନା ଯେ ମାନବ / ସ୍ୱର୍ଗୀୟ ସୁଷମା ସେଥି କରେ ଅନୁଭବ ।
ବାଳକ-ଜୀବନଦାୟୀ ଅମୃତଭଣ୍ଡାର / କନ୍ଦର୍ପ ନେତ୍ରରେ ତାହା ଦେଖେ ଦୁରାଚାର ।
ଆଦ୍ୟାଶକ୍ତିଠାରୁ ଏହି ଜଗତ ଉତ୍ପତ୍ତି / ଜଗତର ସାରଭୂତା ରମଣୀସମ୍ପତ୍ତି ।
ନଳିନୀ ନୟନା ନାରୀ ଆନନ୍ଦ ପ୍ରତିମା / ଗୃହିଣୀ ଗୃହର ଲକ୍ଷ୍ମୀ, ସୁଧାମଧୁରିମା ।
ପ୍ରତ୍ୟକ୍ଷ-ଦେବତା-ଶିଶୁ ପାଳନ୍ତି ଜନନୀ / ନାରୀ ଯୋଗେ ପରିପୂର୍ଣ୍ଣ ଜୀବରେ ଅବନୀ ।
ଯହିଁ ନାରୀ ତହିଁ ଲକ୍ଷ୍ମୀ ତହିଁ ସ୍ୱର୍ଗଧାମ / ଶ୍ମଶାନ ସେ ଗୃହ ଯହିଁ ନାହିଁ ନାରୀ ନାମ ।
ଏପରି ନାରୀକୁ ଯେବା କରେ ଅନାଦାର / ନିର୍ବୋଧ ରାକ୍ଷସ ସେହି ପାଷଣ୍ଡ ପାମର ।

(ଫକୀରମୋହନ ସେନାପତି)

# ବାଖରାବାଦ ଘରର ରୂପରେଖ

ବାଖରାବାଦ ଘରଟି ଏଇ ଗ୍ରନ୍ଥର ପ୍ରଚ୍ଛଦରେ ରହିଛି । ବାଖରାବାଦ ଘରର ପରିସର ଏକ ଏକର ପାଖାପାଖି ହେବ । ଏହି ପରିସରରେ ଥିଲା ଅନେକ ପ୍ରଜାତିର ଗଛ । କୌଣସି ପ୍ରକାରର ଯୋଜନା ଅନୁସାରେ ଏହି ଗଛ ସବୁ ଲଗାଯାଇଥିବ ବୋଲି ମନେହୁଏ ନାହିଁ । ଗୋଟେ ରକମର ପ୍ରାକୃତିକତା ଅନୁଭୂତ ହେଉଥିଲା ଏହି ସବୁଜିମାରେ । ବୋଧହୁଏ ଏଇଥି ପାଇଁ ହିଁ ଘରଟିର ପରିବେଶ ଏଡ଼େ ମନୋହର ଲାଗୁଥିଲା । ଅଗଣାରେ ବିଶେଷ କରି ଫଳ ଗଛ ସବୁ ଲଗାଯାଇଥିଲା । ନଡ଼ିଆ, ପିଜୁଳି, ଆମ୍ବ ଓ କେତେ ରକମର କୋଳି ଗଛରେ ଭର୍ତ୍ତି ଥିଲା ଅଗଣାଟି । ଆମ ଶୋଇବା ଘରଗୁଡ଼ିକରୁ ଅଗଣା ଦିଶୁଥିଲା । ଘର ପାଖକୁ ଲାଗିକି ଥିଲା ପରିବା ବଗିଚା ଆଉ ଗୋଟେ କୋଣରେ ଥିଲା ବେଲ ଗଛଟିଏ । ଟିକିଏ ଦୂରରେ ଥିଲା ଘରର ଚାକରବାକରଙ୍କ ପାଇଁ ଗୋଟେ ପାଇଖାନା ଘର । ଅନ୍ୟ ପଟେ, ଯାହାକୁ ଆମେ ଘରର ସାମ୍ନା ପଟ ବୋଲି କହୁଥିଲୁ, ସେଠାରେ ଥିଲା ବିଭିନ୍ନ କିସମର ଦେଶୀବିଦେଶୀ ଫୁଲ ଗଛ । ବଗିଚାର ଗୋଟେ କୋଣରେ ଥିଲା କୂଅଟିଏ । ପ୍ରକୃତରେ ଏ କୂଅଟି କିମ୍ବଦନ୍ତୀସମ୍ପନ୍ନ । କାରଣ ଏକଦା ଏହି କୂଅରେ ହିଁ ପଡ଼ିଯାଇଥିଲେ ମହାନ ନେତା ବିଜୁ ପଟ୍ଟନାୟକ ଯାହା ପରେ ସୂଚିତ । ବଗିଚାର ମଧ୍ୟ ଭାଗରେ ଏକ ବିଶାଳ ଜାମୁରୋଳ ଗଛ ଥିଲା । ଜାମୁରୋଳ ନାମକ ଫଳଟି ଅବଶ୍ୟ ଆଜିକାଲି ବିରଳ ହୋଇଗଲାଣି । ଏ ଗଛଟିକୁ ଫକୀରମୋହନ ସେନାପତି ନିଜେ ଲଗାଇଥିଲେ । ଆଜି ବି ଏହି ଗଛ ଠିଆହୋଇ ରହିଛି ସେଇଠି । ଆମେ ପିଲାବେଳେ ସେ ଗଛ ଚଢ଼ି ତାହାର ଶାଖା ପ୍ରଶାଖା ମାନଙ୍କରେ ନିଜ ନିଜ ଆସ୍ଥାନ ଜମାଇ ଦେଉଥିଲୁ । କେହି ବଡ଼ ଲୋକ ଘରକୁ ଆସିବା ପାଇଁ ତାଗିଦ ନକଲା ଯାଏଁ ଗଛ ଡାଳରେ ଆଉଜି ପଡି ଆମେ ଗପସପ ଚଳାଉଥିଲୁ । ଏହି ଗଛ ଓ ଏହାର ଫଳ ମୋ ଜୀବନରେ ବିଶେଷ ମହତ୍ତ୍ୱ ରଖେ । ଆଜି ବି କେବେ କେମିତି ଜାମୁରୋଳ ବିକ୍ରି ହେଉଥିବାର ଦେଖିଲେ ମୁଁ ନିଶ୍ଚୟ କିଣେ ଓ ଖାଇବା ପୂର୍ବରୁ ଫଳଟିର ପ୍ରଶଂସା କରିବାକୁ ଭୁଲେ ନାହିଁ ।

# ବାଖରାବାଦ ଘରର ଶୌଚାଳୟ

ସେକାଳର ଶୌଚାଳୟ ବ୍ୟବସ୍ଥା ବିଷୟରେ କିଛି ନକହି ରହିହେଉ ନାହିଁ । ଆଗକାଳର ଯେମିତି ଘୃଣ୍ୟ ବ୍ୟବସ୍ଥାଟି ଥିଲା ସେ କଥା ଆଜିକାଲିର ପିଲାମାନଙ୍କ ପାଇଁ ବିଶେଷ ଭାବରେ ତାତ୍ପର୍ଯ୍ୟପୂର୍ଣ୍ଣ ମନେହେବ । ଏବେ ଭାବିଲେ ଜାଣିହେଉଛି ସେ ସମୟର ବ୍ୟବସ୍ଥାରେ କେମିତି ରୀତିମତ ଭାବେ ମାନବାଧିକାର କ୍ଷୁଣ୍ଣ ହେଉଥିଲା ।

ତେବେ କଥାଟି ହେଉଛି, ପାଇଖାନା ବସିବା ଜାଗାଟି ଥିଲା ଉଚ୍ଚରେ । ଏତେ ଉଚ୍ଚରେ ଯେ ଚଢ଼ିବା ପାଇଁ ପାହାଚ ତିଆରି ହୋଇଥିଲା । ପାଇଖାନା କହିଲେ, ମଳ ବର୍ଜନ ପାଇଁ ବସିଲା ବେଳେ ପାଦ ରଖିବା ପାଇଁ ଦୁଇଟି ଷାଣ୍ଡ ଓ ମଝିରେ ତିନୋଟି ବଡ଼ ବଡ଼ କଣା । ସେ କଣା ବାଟ ଦେଇ ମଳ ସିଧା ଯାଇ ପଡ଼ିବ ତଳେ । ଗୋଟେ ସିମେଣ୍ଟ ନିର୍ମିତ ଚଟାଣରେ । ଏବେ ଆସିବା ଆମ ଇତିହାସର ସବୁଠୁ କୁତ୍ସିତ ପରମ୍ପରା ପାଖକୁ । ମଳ ସଫା କରିବା ପାଇଁ ନିଯୁକ୍ତ ଲୋକେ ଗୋଟେ ନିର୍ଦ୍ଦିଷ୍ଟ ସମୟରେ ଆସି ବଡ଼ ଟିଣ ଡବାରେ ମଳ ସବୁ ନେଇ କୁଆଡ଼େ ପକାନ୍ତି ଭଗବାନ ଜାଣେ । ଡବା ମଳରେ ପୂରା ଭର୍ତ୍ତି ଥାଏ । କାରଣ ସେମାନେ ଖାଲି ଆମ ଘରୁ ନୁହଁ, ଅନେକ ଘରୁ ମଳ ସଫା କରିଥାଆନ୍ତି । ଏବେ ମୋର ମନେପଡୁଛି ଯେ ସେଇ ମଳ ସଫା କରିବା ପାଇଁ ଆସୁଥିବା ଲୋକଙ୍କ ଭିତରୁ ଅଧିକାଂଶ ମହିଳା ହିଁ ଥିଲେ । ତାଙ୍କ ମଳ ଭର୍ତ୍ତି ଟିଣ ଡବାଗୁଡ଼ିକରେ କୌଣସି ଢାଙ୍କୁଣି ଲାଗିନଥାଏ । ସୁତରାଂ ଯଦି କେହି ରାସ୍ତାରେ ତାଙ୍କ ସହ ଚାଲିବ ଆପଣ ଅନୁମାନ କରିପାରୁଥିବେ କ'ଣ ହେବ ଅବସ୍ଥା । ସେ ସମୟରେ ଏ ବ୍ୟବସ୍ଥା ବିଷୟରେ କେହି ଗୁରୁତ୍ୱ ଦେଉନଥିଲେ । କିନ୍ତୁ ଏବେ ଏହି କଥା ଚିନ୍ତା କଲେ ବାନ୍ତି ହେଇଯିବ । ସେଇ ମଳ ସଫାକରି ଫୋପାଡୁଥିବା ଲୋକଙ୍କ ପାଇଁ ଏହାଠାରୁ ବଳି ନାରକୀୟ କାର୍ଯ୍ୟ କ'ଣ ହୋଇପାରେ ? ଭଗବାନଙ୍କୁ ଅଶେଷ ଧନ୍ୟବାଦ ଯେ ଏ ବ୍ୟବସ୍ଥାଟି ଲୋପ ପାଇ ଯାଇଛି । ସେପ୍ଟିକ ପାଇଖାନା ଦ୍ୱାରା ମାନବ ଜାତିର ଅନେକ କଲ୍ୟାଣ ହୋଇଛି । କିନ୍ତୁ ଏବେବି ଆହୁରି ଅନେକ ପରିବର୍ତ୍ତନର ଆବଶ୍ୟକତା ରହିଛି । ବର୍ତ୍ତମାନ ଆବର୍ଜନା ନିଷ୍କାସନ ଓ ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧୀୟ ସମସ୍ୟାମାନ ବିକଟ ରୂପ ଧାରଣ କଲାଣି । ପୂର୍ବକାଳରେ ଯେଉଁ ଘୃଣ୍ୟ ବ୍ୟବସ୍ଥାଟି ଥିଲା ତାହାର ନୂଆ ଅବତାର ହେଉଛି ଆଜିର ଆବର୍ଜନା ନିଷ୍କାସନ ଅବ୍ୟବସ୍ଥା । ଆଜିକାଲି କଅଁଳ ବୟସର ପିଲାମାନେ ଜୀବିକା ଉପାର୍ଜନ ପାଇଁ ଆବର୍ଜନା ଗୋଟାଉଥିବାର ଦେଖିଲେ ମନେହୁଏ ସେକାଳର ଅମାନବିକ

ପରମ୍ପରାଟି କ'ଣ ସତରେ ମୃତ ? ଆବର୍ଜନାକୁ ଠିକଣା ଜାଗାରେ ପହଞ୍ଚାଇବା ପାଇଁ ଏକ ସଭ୍ୟ ବ୍ୟବସ୍ଥା କ'ଣ ଆମେ ଆପଣାଇ ପାରିବା ନାହିଁ ? ଏସବୁ ବିଷୟ ଉପରେ ମୁଁ ଭାରି ସମ୍ବେଦନଶୀଳ । ଏଥିପାଇଁ ଯେତେବେଳେ ଯାହା ମୋ ଦ୍ୱାରା ସମ୍ଭବ ହୋଇପାରିବ ମୁଁ କରିଛି । ଫକୀରମୋହନ ଫାଉଣ୍ଡେସନ ଆନୁକୂଲ୍ୟରେ ମୁଁ "ରିଭରସ୍ ଅଫ୍ ଦ ୱାର୍ଲଡ୍ (ଆର୍.ଓ.ଡବ୍ଲ୍ୟୁ), ମାରୀ ଲାଣ୍ଡ, ଆମେରିକା" ସହ ମିଶି ଭୁବନେଶ୍ୱର ପାଖରେ ଦୟା ନଦୀର ସୁରକ୍ଷା ପାଇଁ କିଛି କାମ କରିଛି । ନଦୀ ତୁଠରେ ମଳତ୍ୟାଗ କରିବା ପରିବର୍ତ୍ତେ ନିଜ ଘରେ ଅଳ୍ପ ଖର୍ଚ୍ଚରେ ପାଇଖାନା ତିଆରିବା ପାଇଁ ଲୋକଙ୍କ ଭିତରେ ଆଗ୍ରହ ସୃଷ୍ଟି କରିବାକୁ ଚେଷ୍ଟା କରିଛି । ଆମେ ଯେଉଁଠାରେ ରହୁ, ଫରିଦାବାଦର ଗୋଟିଏ ଆପାତତଃ ଉଚ୍ଚ ବର୍ଗୀୟ ଲୋକଙ୍କ ଆବାସସ୍ଥଳୀ, ସେଠାରେ ମଧ୍ୟ ଆବର୍ଜନା ଗଦା ହୋଇଥିବାର ଦେଖିବାକୁ ମିଳେ । ସେ ଆବର୍ଜନା ଏବେ ମଧ୍ୟ ମିଳିବ । ଏ ସମ୍ବନ୍ଧରେ କିଛି କରିବା ପାଇଁ ଇଚ୍ଛା ହେଲା । ଆବର୍ଜନା ଗଦା ହୋଇଥିବାର ଫଟୋ ଉଠେଇଲି ଓ ବିଭାଗୀୟ ଅଧିକାରୀମାନଙ୍କୁ ରିପୋର୍ଟ କଲି । କିଛିଦିନ ପାଇଁ ଅଳିଆ ଗଦା ହେବା ବନ୍ଦ ହୋଇଗଲା କିନ୍ତୁ ପୁଣି ପୂର୍ବାବସ୍ଥାକୁ ଫେରିଆସିବା ପାଇଁ ବେଶୀ ଦିନ ଲାଗିଲା ନାହିଁ । ମୂଳରୁ ଶେଷ ଯାଏଁ ପୂରା ବ୍ୟବସ୍ଥାକୁ ବଦଳେଇବାକୁ ପଡ଼ିବ । ବ୍ୟକ୍ତିଗତ ଭାବେ ଉଦ୍ୟମ କରି କେଉଁଠି ମଝିରେ ଟିକିଏ ପରିବର୍ତ୍ତନ ଆଣି ସମସ୍ୟାର ସମାଧାନ କରିହେବ ବୋଲି ମୋର ବିଶ୍ୱାସ ହେଉନାହିଁ । କାରଣ ଜଣେ ଲୋକର ବଦାନ୍ୟତା ବା ଦାନଧର୍ମ ଯୋଗୁଁ କଦବା କ୍ୱଚିତ ସମାଜରେ କୌଣସି ବୃହତର ପରିବର୍ତ୍ତନ ଆସିନଥାଏ । ଏଥିପାଇଁ ଗଣ ଉଦ୍ୟମ ଲୋଡା ।

ହଁ, ଏବେ ମୂଳ କଥାକୁ ଫେରିଯାଉଛି । ବାଖରାବାଦ ଘରର ଗାଧୁଆଘର ବଢ଼ିଆ ଥିଲା । ଘରଟି ଆକାରରେ ବଡ଼ ଥିଲା ଓ ସେଥିରେ ଥିଲା ସିମେଣ୍ଟରେ ପାଲିସ କରା ଗୋଟେ ବଡ଼ ପାଣିକୁଣ୍ଡ । ଆମ ପିଲାଙ୍କ ପାଇଁ ଗାଧୁଆ ଜାଗା ଥିଲା ଅଗଣାପଟରେ କୂଅ । କୂଅ ପାଖରେ ଆମେ ପିଲାମାନେ ଧାଡ଼ି କରି ଛିଡ଼ା ହେବୁ ଓ ଆମ ପରିଚାରକମାନେ କୂଅରୁ ପାଣି କାଢ଼ି ଆମ ଉପରେ ଢାଳିବେ । ସିଧା ବାଲଟିରୁ ପାଣି ଢଳା ହେବ ଆମ ମୁଣ୍ଡ ଉପରେ । ଆମେ ଅପେକ୍ଷା କରି ରହୁଥିଲୁ ଯେ କେତେବେଳେ ଆମ ପାଳି ପଡ଼ିବ । ଖୋଲାମେଲାରେ ଏମିତି ଥଣ୍ଡା ଥଣ୍ଡା ତାଜା ଗାଧୁଆର ମଜା ହିଁ ଥିଲା ଅନନ୍ୟ । ଦୁଇ ଜଣ ଲୋକ ଥିଲେ ଆମ ଗାଧୁଆ ପାଇଁ ପାଣି କାଢ଼ିବାକୁ । ଗାଧୁଆ ସରିବା ପରେ ଦୁଇ ଜଣ ଆୟା ଆମ ଦେହ ପୋଛି ଦେଉଥିଲେ । ତା' ପରେ ମଧ୍ୟାହ୍ନ ଭୋଜନ । ତା'ପରେ ଶୋଇବା । ତା'ପରେ ଖେଳ । ତା'ପରେ ଟିକେ ପାଠପଢ଼ା । ଆଉ ଶେଷରେ ଶୋଇବା ବେଳେ ଦିଦିମା କିମ୍ବା ମୋନା ମାସୀ ଆସିଥିଲେ ତାଙ୍କ ପାଖରୁ ଗପ ଶୁଣି ଶୁଣି ନିଘୋଡ ନିଦରେ ଶୋଇ ପଡ଼ିବା ।

# ମୋ ମାଆ ବୀଣାପାଣି

କହିବାକୁ ଗଲେ ମାଆ ଜଣେ ସେମିତି ଧାର୍ମିକ ଲୋକ ନଥିଲେ । କିନ୍ତୁ ମନ୍ଦିରର ଶୋଭା, ସାଜସଜ୍ଜା, ଫୁଲରେ ଅଲଂକୃତ ଦେବଦେବୀ, ଦୀପ, କପାଳରେ ଝଟକୁଥିବା ସିନ୍ଦୁର ଟୀକା, ଚନ୍ଦନର ବାସ୍ନା, ପାର୍ବଣ ସମୟର ଝୋଟିଚିତା ଓ ରଙ୍ଗୋଲି ଇତ୍ୟାଦି ଦେଖି ସେ ଭାରି ପ୍ରଶଂସା କରୁଥିଲେ । ତାଙ୍କର ଉନ୍ନତ ସୌନ୍ଦର୍ଯ୍ୟବୋଧ ଯୋଗୁଁ ଏସବୁ ତାଙ୍କ ପାଇଁ ପ୍ରେରଣାଦାୟକ ଥିଲା । କିନ୍ତୁ ଧର୍ମାନ୍ଧତାକୁ ସେ ନିନ୍ଦା କରୁଥିଲେ; କିନ୍ତୁ ଅପରପକ୍ଷରେ ପ୍ରଭୁ ଜଗନ୍ନାଥଙ୍କ ପ୍ରତି ଲୋକଙ୍କର ପ୍ରଗାଢ଼ ଆସ୍ଥା ଦେଖି ସେ ଚକିତ ହେଉଥିଲେ । ସେ କହୁଥିଲେ, "ଗୋଟିଏ ଦିନ - ରଥଯାତ୍ରା - ଲକ୍ଷ ଲକ୍ଷ ଲୋକ ପ୍ରଭୁ ଜଗନ୍ନାଥଙ୍କ ଭକ୍ତିରେ ନିଜକୁ ହଜାଇ ଦେଉଛନ୍ତି, ସତରେ କେତେ ଚିତ୍ତାକର୍ଷକ ଘଟଣା ! ପ୍ରଭୁଙ୍କ ଠାରେ, ଗୋଟିଏ ସ୍ଥାନରେ, ଠୁଳ ହୋଇ ପଡୁଥିବା ଏତେ ସବୁ ନିଷ୍ଠା ନିଶ୍ଚିତ ଭାବେ ଏକ ବିଶାଳ ଶକ୍ତିର ଉତ୍ସ ହେବ । ଚମତ୍କାର କଥା ।"

ସେ ପୁରୁଷ ଲୋକଙ୍କ ସହ ତାଳ ଦେଇ କଥା ହୋଇପାରୁଥିଲେ । ତାଙ୍କ ଶ୍ରେଣୀରେ ସେ ଜଣେ ମାତ୍ର ଝିଅ ଥିଲେ । ଏଣୁ ପୁଅଙ୍କ ସହ ହିଁ କଥା ହେବାକୁ ପଡୁଥିଲା । ତାଙ୍କ ଚାଲିଚଳନ ବ୍ୟବହାରରେ ଏକ ପ୍ରକାରର କଠୋରତା ଅନୁଭବ କରି ହେଉଥିଲା । ଯେଉଁଥିପାଇଁ କି ପୁଅପିଲାମାନେ ତାଙ୍କୁ ଡରୁଥିଲେ । ପ୍ରଖ୍ୟାତ ଲେଖକ ଗୋପୀନାଥ ମହାନ୍ତି ଏବଂ କବି ସଚ୍ଚି ରାଉତରାୟଙ୍କ ସହିତ ମୋ ମାଆଙ୍କର ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ଥିଲା । ମାଆଙ୍କ ପାଖରେ ଯେପରି ସୂକ୍ଷ୍ମ ଅନୁଭବବୋଧ ରହିଥିଲା ତାହା କ୍ୱଚିତ୍ ଲୋକଙ୍କ ପାଖରେ ଦେଖିବାକୁ ମିଳେ । ଅଥଚ ସେ ତାଙ୍କ ଜୀବନରେ ବିଶେଷ ବଡ଼ କାମ କିଛି କରିପାରିଲେ ନାହିଁ । ମୋତେ ବଡ଼ କରିବାର ଦାୟିତ୍ୱ ମୁଣ୍ଡାଇ ସେ ଜଳାଞ୍ଜଳି ଦେଲେ ନିଜସ୍ୱ ଆଶା ଆକାଂକ୍ଷାଗୁଡ଼ିକୁ । ତାଙ୍କରି ରୋଜଗାରରେ ହିଁ ଆମ ଘର ଚଳୁଥିଲା ।

ସ୍ୱଭାବତଃ ମାଆ ଜଣେ ସମାଲୋଚିକା ଥିଲେ । ତାଙ୍କ କହିବା କଥା ଥିଲା ଆମେ ନିଜର ସଫଳତାକୁ ନେଇ ଆତ୍ମସନ୍ତୋଷରେ ନ ମାତି, ସବୁବେଳେ ଉତ୍ତମତା ପାଇଁ ଉଦ୍ୟମ କରିବା ଉଚିତ । ଯେଣୁତେଣୁ କରି କାମ ଚଳାଇଦେବା ପ୍ରବୃତ୍ତି ତାଙ୍କର ଆଦୌ ପସନ୍ଦ ନଥିଲା । ତାଙ୍କୁ ଦୁଃଖ ଲାଗୁଥିଲା ଯେ, ଲୋକମାନେ ନାନାଦି କାରଣରୁ

ନିଜ ସାମର୍ଥ୍ୟ ଅନୁରୂପ ସଫଳତା ପାଇପାରୁ ନାହାନ୍ତି । ସେ ନିଜ ପାଇଁ ମଧ୍ୟ ତତ୍ପର ଥିଲେ । ତାଙ୍କ କାମର ନିଖୁଣତାର ଗୋଟିଏ ପ୍ରମାଣ ଦେଉଛି । ସେତେବେଳେ ଯୋଗାଯୋଗ ରକ୍ଷା କରିବା ପାଇଁ ପୋଷ୍ଟକାର୍ଡରେ ଚିଠି ଲେଖା ହେଉଥିଲା । ମାଆ ପ୍ରଥମେ ଗୋଟେ ରଫ୍ ଚିଠି ସାଦା କାଗଜ ଲେଖିବେ । ଆଉ ତା'ପରେ ଯତ୍ନର ସହ ତାକୁ ଶୁଦ୍ଧ ଭାବରେ ପୋଷ୍ଟକାର୍ଡରେ ଲେଖିବେ । ମୁଁ ମଧ୍ୟ ସେମିତି କରିବା ଉଚିତ ବୋଲି ସେ ସବୁବେଳେ କହୁଥିଲେ । ଯାହାକି ମୋ ପାଇଁ ଏକ କଠିନ ବ୍ୟାପାର ଥିଲା । ଅନ୍ୟ ସମୟରେ, ଯେମିତିକି କୌଣସି ଅବସର ସମୟରେ ମୁଁ ଉପଯୁକ୍ତ ପୋଷାକ ପିନ୍ଧିଛି କି ନାହିଁ ସେ ଟିକିନିଖି କରି ଦେଖୁଥିଲେ । ମୋ ଭାବଭଙ୍ଗୀରେ କୌଣସି ତ୍ରୁଟି ଦେଖିଲେ ସେ ସୂଚାଇ ଦେଉଥିଲେ । ଗାଇବା ବେଳେ ମୋ କଣ୍ଠସ୍ୱର ଠିକ ଅଛି କି ନାହିଁ କହିଦେଉଥିଲେ । ସଂଯୋଗକୁ ମୁଁ ପରେ ଆକାଶବାଣୀ କଟକ ଓ ଦିଲ୍ଲୀରେ କଣ୍ଠଶିଳ୍ପୀ ହେଲି । ସଂକ୍ଷିପ୍ତରେ କହିଲେ ମାଆ ମୋର ଜଣେ ବଡ଼ ସମାଲୋଚିକା ଥିଲେ । ସେ ଥିଲେ ଜଣେ ହାର୍ଡକୋର୍ ପରଫେକ୍ସନିଷ୍ଟ ବା ପୂର୍ଣ୍ଣାଙ୍ଗତାଯୁକ୍ତ ରୁଚିସମ୍ପନ୍ନା ମହିଳା ।

# ମୋ ବାପା କାଶୀନାଥ ମିଶ୍ର

ମୋ ବାପା ଉଚ୍ଚ ଶିକ୍ଷିତ ଥିଲେ । ଅନେକ ପଢ଼ାପଢ଼ି କରିଥିଲେ । କିନ୍ତୁ ତାଙ୍କ ଜୀବନ ଥିଲା ସ୍ୱପ୍ନମୟ । ସେ ଜୀବନକୁ ଖାମଖିଆଲି ଭାବରେ ନେଇ ଯାଉଥିଲେ ଯାହା ଆଜିକାଲି ଯୁବକମାନଙ୍କର ଗୋଟିଏ ସ୍ୱାଭାବିକ ଚଳଣି ଭାବରେ ଗୃହିତ ହୋଇଯାଇଛି । ସେତେବେଳେ ଅବଶ୍ୟ ଏହା ଏକ ପ୍ରଶଂସନୀୟ ଜୀବନଶୈଳୀ ନଥିଲା । ମୋ ବାପାଙ୍କର ଜୀବନସାଥୀ ଥିଲେ ତାଙ୍କ ବହିମାନେ । ସମୟ କାଟିବା ପାଇଁ ସେ କଥାବାର୍ତ୍ତା ହେଉଥିଲେ । ପ୍ରଖ୍ୟାତ ଲେଖକ ଗୋପୀନାଥ ମହାନ୍ତି ଥରେ କହିଥିଲେ, କାଶୀନାଥ ମିଶ୍ର ବାବୁଙ୍କୁ ଦେଖି ଜଣେ ଅନାୟାସରେ କହି ଦେଇ ପାରେ ଯେ ସେ ହେଉଛନ୍ତି "ଆନନ୍ଦ ମୂର୍ତ୍ତି"ର ଜୀବନ୍ତ ଉଦାହରଣ ଯାହା ମୁଁ ପୂର୍ବରୁ କହି ସାରିଛି । ସେ ଦେଖିବାକୁ ସୁନ୍ଦର ଥିଲେ । ବୌଦ୍ଧିକ ଓ ଶାରୀରିକ ଉଭୟ ସ୍ତରରେ ଥିଲେ ସାମର୍ଥ୍ୟବାନ । ସବୁବେଳେ ଖୁସିରେ ରହିପାରୁଥିଲେ ସେ । ସଂଯୋଗର କଥା ଯେ ଗୋପୀନାଥ ମହାନ୍ତି ମୋ ମାଆଙ୍କର ସହପାଠୀ ଥିଲେ । ତାଙ୍କ ପୁଅ, ଶ୍ରୀ ବିପିନ ଚୌଧୁରୀଙ୍କ କନ୍ୟା ତଥା ମୋର ମାଉସୀ ଝିଅ ଭଉଣୀ ନିବେଦିତାଙ୍କୁ ବିବାହ କରିଛନ୍ତି । ଶ୍ରୀ ବିପିନ ଚୌଧୁରୀ ହେଲେ ଫକୀରମୋହନଙ୍କ ଝିଅ ସରୋଜିନୀ ଚୌଧୁରୀଙ୍କ ପୁଅ । ଏଣୁ ସମ୍ପର୍କରେ ସେ ମୋ ମାଆଙ୍କ ଭାଇ ହେବେ; ଆମେ ତାଙ୍କୁ ବିପିନ ମାମୁ ବୋଲି ଡାକୁଥିଲୁ । ସେ ଭଲ କି ଶୁଣି ପାରୁନଥିଲେ କି କଥା କହି ପାରୁନଥିଲେ । 'ଭିନ୍ନକ୍ଷମ' ଶବ୍ଦଟି ତାଙ୍କ ପାଇଁ ଏକ ବିଶେଷ ଭାବରେ ଉପଯୁକ୍ତ ହେବ । କାରଣ ସେ ଭାରି ବୁଦ୍ଧିମାନ ଥିଲେ । ଫକୀରମୋହନ ସେନାପତିଙ୍କ ପ୍ରଥମ ତୈଳଚିତ୍ର ସେ ହିଁ ଆଙ୍କିଥିଲେ । ସେ ଚିତ୍ରଟି ଓଡ଼ିଶା ସାରା ଲୋକେ ତଥା ଓଡ଼ିଶା ବାହାର ଲୋକ ମଧ୍ୟ ବିଭିନ୍ନ ପ୍ରକାର ମୁଦ୍ରଣ କାମରେ ବ୍ୟବହାର କରିଛନ୍ତି । ମୋ ପାଖରେ ସେ ଚିତ୍ରର ଏକ ସୁନ୍ଦର ନକଲ ଏବେ ମଧ୍ୟ ଉପଲବ୍ଧ ।

# ଗତିଆ

ଆଈଙ୍କର ଜଣେ ବିଶ୍ୱସ୍ତ ଚାକର ଥିଲେ ଯାହାଙ୍କ ନାମ ଥିଲା ଗତିଆ । ସେ ଜଣେ ପ୍ରକୃତ ସେବକ ଭାବେ ଅନେକ ଦିନରୁ ବିଶ୍ୱାସଯୋଗ୍ୟ ହୋଇ ରହିଥିଲେ । ଦେଖିବାକୁ ଟିକେ ଗେଡ଼ା ଓ ମୋଟା । ସବୁବେଳେ ମୁଁ ତାଙ୍କୁ କିଛି ନା କିଛି କାମ କରୁଥିବାର ଦେଖିବାକୁ ପାଏ । ଘରେ ଅନ୍ୟ ଚାକରବାକର ଥିଲେ ବି ଗତିଆ ଆଈଙ୍କର ସବୁଠାରୁ ବିଶ୍ୱାସଯୋଗ୍ୟ ଲୋକ ଥିଲେ । ଘରର ରକ୍ଷଣାବେକ୍ଷଣକୁ ନେଇ କେଉଁଠି କିଛି ଭୁଲ୍ ଭଟକା ହେଲେ ସେ ଖୁବ ସହଜରେ ଦୋଷଟି ନିଜ ଉପରକୁ ନେଇ ଯାଉଥିଲେ । ସେ କଥା କମ୍ କହୁଥିଲେ ଆଉ ନିଜ କାମକୁ ଗୁରୁତ୍ୱ ସହକାରେ ତୁଲାଉଥିଲେ । ସେ ଯେପରି ଘରର ଏକ ସ୍ଥାୟୀ ଅଙ୍ଗ ପାଲଟି ଯାଇଥିଲେ । ଆମକୁ କୁହାଯାଇଥିଲା ଯେ ବାଖରାବାଦ ଘରକୁ ପ୍ରଥମ ଆସିଲା ବେଳେ ସେ ପିଲାଲୋକ ଥିଲେ । ମୋତେ ପଚିଶ ବର୍ଷ ବୟସ ହେବା ଯାଏଁ ମୁଁ ତାଙ୍କୁ ଦେଖିଛି । ସେତେବେଳେ ତାଙ୍କୁ ଷାଠିଏ ପୂରିଯାଇଥିବ । ତାଙ୍କ ଅନୁପସ୍ଥିତିକୁ ମୁଁ ବେଳେ ବେଳେ ଭାବି ହୁଏ । କେତେ ଦୁର୍ଭାଗ୍ୟର କଥା ଯେ ଜୀବନ ଜଞ୍ଜାଳ ଭିତରେ ତାଙ୍କ କଥା ଆମେ କେତେ ଶୀଘ୍ର ଭୁଲିଗଲୁ । ମୁଁ ଭାବେ ସେ ଏବେ ସେ ଘରେ ଥାଆନ୍ତେ କି, ଆଉ ମୁଁ ତାଙ୍କ ବୃଦ୍ଧାବସ୍ଥାରେ ତାଙ୍କୁ ଟିକିଏ ସାହାଯ୍ୟ କରିପାରନ୍ତି । ଦିନେ ମୋ ମାଉସୀଙ୍କ ପୁଅଝିଅଙ୍କଠୁଁ ଖବର ପାଇଲି ଯେ ସେ ଆଉ ଏ ଇହଧାମରେ ନାହାନ୍ତି । ଖବରଟି ପାଇ ମନେହେଲା ମୋର ନିଜର କୌଣସି ଅଂଶ ଯେମିତି ମୋ ଠାରୁ ଅଲଗା ହେଇଗଲେ ।

ପଛକୁ ଦେଖିଲେ ଆଜିର ଜୀବନଶୈଳୀ ଓ ସେକାଳର ଜୀବନଶୈଳୀ ଭିତରେ କେତେ ପାର୍ଥକ୍ୟ ଆସିଯାଇଛି ଜାଣିହୁଏ । ଗ୍ରୀଷ୍ମ ଆସିଲେ ଶୀତତାପ ନିୟନ୍ତ୍ରକ ବିନା ଶୋଇବା କଥା ଆଜି କଳ୍ପନା କରିହେଉନାହିଁ । କବାଟ ଝରକା ସବୁ ଭଲ ଭାବେ ବନ୍ଦ କରିବାକୁ ପଡୁଛି । ପାଖରେ ରଖିବାକୁ ହେଉଛି ଘୋଡେଇ ହେବା ପାଇଁ ପତଳା ରେଜେଇଟିଏ ବା ସେହିପରି ଅନ୍ୟ କିଛି । ହାତପାଆନ୍ତାରେ ରିମୋଟ କଣ୍ଟ୍ରୋଲର । ଏସବୁ ହେଉଛି ଆଜିର ଗ୍ରୀଷ୍ମକାଳୀନ ଶୟନ ବ୍ୟବସ୍ଥା ପାଇଁ ଅତ୍ୟାବଶ୍ୟକ ସରଞ୍ଜାମ । ବାଖରାବାଦ ଘରେ ଖରା ମାସଗୁଡ଼ିକରେ ଆମେ ବାହାରେ ଶୋଉଥିଲୁ, ଖୋଲା ଆକାଶ

ତଳେ । ତାରା ଗଣୁଥିଲୁ । ବିଭିନ୍ନ ତାରକାପୁଞ୍ଜ ଚିହ୍ନିବାକୁ ଚେଷ୍ଟା କରୁଥିଲୁ । ପୂର୍ଣ୍ଣିମାରୁ ଅମାବାସ୍ୟା ଓ ଅମାବାସ୍ୟାରୁ ପୂର୍ଣ୍ଣିମା ହେବା ଦେଖୁଥିଲୁ । ବ୍ରିଟିଶ୍ ଜାଲିରେ ତିଆରି ମଶାରି ଭିତରୁ ଡେଙ୍ଗା ହେଙ୍ଗା ଗଛମାନେ ଧୀରେ ଧୀରେ ଦୋହଲିବାର ଦେଖୁଥିଲୁ । କେତେ ଆନନ୍ଦର ମୁହୂର୍ତ୍ତ ଥିଲା ସେ ସବୁ ।

ବାଖରାବାଦ ଘରେ ରହୁଥିବା ସବୁ ଲୋକଙ୍କ ପାଇଁ ଶେଯ ସଜାଡ଼ିବାର କଳା ଦିଦିମା ଗତିଆକୁ ଭଲ ଭାବରେ ଶିଖେଇ ଦେଇଥିଲେ । ଆମେ ଦଶ ଜଣ ଥିଲୁ । ଶେଯ ସଜାଡ଼ିବା ଏକ ବିଧି ପରି ଲାଗୁଥିଲା । ରାତି ଗାଢ଼ତର ହେଲା ବେଳକୁ ଖୋଲା ଅଗଣାରେ, ବଗିଚାକୁ ଲାଗି ବିଛଣା ବିଛେଇବାକୁ ହେଉଥିଲା । ପାଖାପାଖି ହୋଇ ବିଛଣା ପଡୁଥିଲା ଓ ପିଲାଙ୍କ ପାଇଁ ଗୋଟେ ବଡ଼ ବିଛଣା ପ୍ରସ୍ତୁତ ହୋଇଯାଉଥିଲା । ତା' ଉପରେ ଟଙ୍ଗାଯାଉଥିଲା ଗୋଟେ ବଡ଼ ମଶାରି । ଗତିଆ ସଞ୍ଜ ହେଲେ ଗଦି ସବୁ ବାହାରକୁ ଆଣିଆସୁଥିଲେ ଓ ଏକ ଖଡିକା ଝାଡୁରେ ଗଦିରୁ ଧୂଳି ଝାଡୁଥିଲେ । ଗଦି ଉପରେ ବିଛାଯାଉଥିଲା ଧଳା ବିଛଣା ଚଦର । ଯଥାସ୍ଥାନରେ ତକିଆ ସବୁ ରଖାଯାଉଥିଲା । ତକିଆଗୁଡ଼ିକ ମଧ୍ୟ ଧଳା ଖୋଳ ଭିତରେ ରହୁଥିଲା । ହଁ, ଆହୁରି ଟିକେ ଆରାମ ପାଇଁ ଲମ୍ବା ଲମ୍ବା ଗୋଲେଇ କଡ ତକିଆ ମଧ୍ୟ ରହୁଥିଲା । ଗତିଆ ବେଡଶିଟ୍ ଓ ମଶାରିକୁ ଗଦି ତଳେ ଭଲଭାବରେ ଜାକି ଦେଉଥିଲେ । ଆମ ବିଛଣା ପ୍ରସ୍ତୁତ ହେଉଥିଲା, ଏକଦମ୍ ନିଖୁଣ ଭାବେ । ବିଛଣା କଡ଼ରେ ରଖାଯାଉଥିଲା କଂସା ଗ୍ଲାସ ଓ ପିଇବା ପାଣି ଭର୍ତ୍ତି ସୁରେଇ । ଯାହାର ପାଣି ଦରକାର ସେ ନିଜେ ପାଣି ଢାଳି ପିଇପାରିବେ । ଶୀତଦିନେ ଭିନ୍ନ ଢଙ୍ଗରେ ବିଛଣା ପଡୁଥିଲା । ଆମେ ଘର ଭିତରେ ଶୋଉଥିଲୁ । ଗତିଆ, ଯିଏକି ଆମର ବିଶ୍ୱସ୍ତ ପରିଚାରକ ଥିଲେ; ସେ ନିଜର ନିଷ୍ଠା, ନିଷ୍କପଟତା ଓ ଆନ୍ତରିକତା ଯୋଗୁଁ ଆଜି କେତେ ଆଦରଣୀୟ ମନେ ହେଉଛନ୍ତି । କିନ୍ତୁ ସେତେବେଳେ ଏହା କିଛି ଅସାଧାରଣ କଥା ନଥିଲା । ତଥାପି ଆମେ ସମସ୍ତେ ବିଭିନ୍ନ କାରଣରୁ ତାଙ୍କୁ ଭଲ ପାଉଥିଲୁ କାରଣ ସେ ଆମ ନିତିଦିନିଆ ଜୀବନ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଥିଲେ ।

# ମାୟାଦତ୍ତ

ମୋ ସାନ ମାଉସୀ ମାୟା । ଆମେ ତାଙ୍କୁ ଖୁକୁ ମାସୀ ବୋଲି ଡାକୁଥିଲୁ । ସେ ଜଣେ ଶାନ୍ତ ପ୍ରକୃତିର ମଣିଷ ଥିଲେ । ଦିନ ଯାକ ଚୁପଚାପ ତାଙ୍କ କାମ କରିଚାଲିଥିବେ । ସେ ଅସମୟରେ ବିଧବା ହୋଇଗଲେ । ତେଣୁ ପିଲାଙ୍କ ଲାଳନପାଳନର ଦାୟିତ୍ୱ ସମ୍ପୂର୍ଣ୍ଣ ଭାବେ ତାଙ୍କୁ ହିଁ ନିର୍ବାହ କରିବାକୁ ହେଲା । ବାଖରାବାଦ ଘରେ ଥିଲା ବେଳେ ସେ ମୋର ଯତ୍ନ ନେଉଥିଲେ । ବଡ଼ଦିନ ପର୍ବ ଆସିଲେ ସେ ଆମ ମନରେ ବିଶ୍ୱାସ ଜାତ କରେଇ ପାରୁଥିଲେ କି ସାନ୍ତା କ୍ଲଜ୍ ସତରେ ଘରର ଚିମିନି ଦେଇ ଆମ ଶୋଇବା ଘରକୁ ଆସିବ ଓ ପିଲାମାନଙ୍କ ପାଇଁ ଉପହାର ଆଣିଦେବ । ତେଣୁ ଆମେ ଶୋଇଲା ବେଳେ ମଶାରି ଭିତରେ ଜାକିଜୁକି ହୋଇ ଶୋଇପଡୁଥିଲୁ । ସେ ପଲଙ୍କଟି ଖୁବ ବଡ଼ ଥିଲା । ଅତି କମରେ ତିନି ଜଣ ତ ଆରାମରେ ଶୋଇପାରିବେ । ସକାଳେ ନିଦ ଭାଙ୍ଗିଲେ ଆମେ ଦେଖିବୁ ତକିଆ ତଳେ କିଛି ଅଛି । ମୋର ମନେଅଛି, ଉପହାରରେ ସବୁବେଳେ ଚୋପାଲାଗା ଅଖରୋଟ ପୁଡିଆ ରହୁଥିଲା ।

ସେତେବେଳେ ଅଖରୋଟ ଗୋଟେ ବିରଳ ଦରବ ଥିଲା । ତଥାପି ବର୍ଷ ପରେ ବର୍ଷ ବଡ଼ଦିନରେ ଆମେ ଅଖରୋଟ ପାଉଥିଲୁ । ବହୁତ ଦିନ ପରେ ଆମେ ଜାଣିଲୁ ଯେ ଆମ ସାନ୍ତା କ୍ଲଜ୍ ଆଉ କେହି ନୁହଁ, ଖୁକୁ ମାସୀ ନିଜେ । ସେ ଖୁବ ଭଲ ଏସରାଜ୍ ବାଦକ ଥିଲେ । ସେମିତିକା ବାଦ୍ୟଯନ୍ତ୍ର ସେତେବେଳେ କ୍ୱଚିତ ଶୁଣିବାକୁ ମିଳୁଥିଲା । ମୋ ମାଆ ତ ଭଲ ଗୀତ ଗାଉଥିଲେ । ସେ ମଧ ମଝିରେ ମଝିରେ ଏସରାଜ ବଜେଇବା ଶିଖୁଥିଲେ । ଖୁକୁ ମାସୀଙ୍କ ପତି ଥିଲେ ଡାକ୍ତର ଜଗଦୀଶ ବାବୁ । ଆମ ମଉସା ବା ମେସୋ । କଟକ ଚିକିତ୍ସା ମହାବିଦ୍ୟାଳୟରେ ସେ ମୁଖ୍ୟ ଚିକିତ୍ସକ ଥିଲେ । ସେ ଭାରି ପରିଚିତ ଥିଲେ ସବୁଆଡ଼େ । ଦେଖିବାକୁ ସୌମ୍ୟ । ତାଙ୍କ ଅନେକ ରୁଚି ଥିଲା । ତାଙ୍କ କଥା ଅଳ୍ପ ଅଳ୍ପ ମନେଅଛି । ଥରେ ବର୍ଷା ଋତୁରେ କାଠଯୋଡିରେ ବନ୍ୟା ଆସିଥାଏ । ଖବର ପ୍ରଚାରିତ ହେଲା ଯେ ବନ୍ୟା ଜଳରେ ଲୋକେ କେତୋଟି ବୃହଦାକାୟ କୁମ୍ଭୀର ଦେଖିବାକୁ ପାଇଛନ୍ତି । ଜଗଦୀଶ ମୋସୋ ବନ୍ଧୁକ ସାହାଯ୍ୟରେ ଗୁଳି କରି ସେହି ନଦୀ ଜଳରୁ ଗୋଟିଏ କୁମ୍ଭୀର ବାହାର କଲେ । ସେଠାରେ ଏକତ୍ର

ହୋଇଥିବା ସମସ୍ତ ଦେଖଣାହାରୀ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ଆମ ପାଇଁ ସେଇଟା ଅତ୍ୟନ୍ତ ରୋମାଞ୍ଚକର ଦୃଶ୍ୟ ଥିଲା । ସେଇଦିନଠାରୁ ମେସୋ ଆମ ହିରୋ ହେଇଗଲେ । ଗୋଟିଏ ସଡ଼କ ଦୁର୍ଘଟଣାରେ ଯୁବାକାଳରେ ହିଁ ତାଙ୍କର ମୃତ୍ୟୁ ଘଟିଲା । ତାଙ୍କ ଶବାଧାରରେ କିଛି ବାଟ ଯାଏ ଚାଲିଥିବା କଥା ମୋର ମନେଅଛି । ତାଙ୍କର ସାନ ଝିଅର ନାମ ଥିଲା ବୁଲାଇ । ତାକୁ ସେତେବେଳକୁ ଦୁଇ ବର୍ଷ ପୂରିନଥାଏ । ମୁଁ ସେତେବେଳକୁ ପ୍ରାୟ ସାତ ବର୍ଷ ବୟସର ପିଲା ହୋଇଯାଇଥିଲି ।

# ମୀରା ମାସୀ

ମୋ ମାଉସୀମାନଙ୍କ ଭିତରୁ ସବୁଠୁ ବଡ଼ ଥିଲେ ମୀରା । ମୁଁ ତାଙ୍କୁ ଦେଖିନାହିଁ କାରଣ ମୋ ମାଆଙ୍କ ବାହାଘରର ବହୁ ପୂର୍ବରୁ ତାଙ୍କର ମୃତ୍ୟୁ ହୋଇ ସାରିଥିଲା । ସମସ୍ତଙ୍କୁ ଜଣାଥିଲା ଯେ ଫକୀମୋହନ ସେନାପତି ମୀରାଙ୍କୁ ଖୁବ ଭଲପାଉଥିଲେ । ସେ ଦୁହିଁଙ୍କର ଗୋଟିଏ ଫଟୋ ଏଯାବତ ଉପଲବ୍ଧ । ମୀରାଙ୍କର ଅନ୍ୟାନ୍ୟ ଫଟୋ ମଧ ମଧ ମୁଁ ରଖିଛି ଯେଉଁଥିରେ ସେ ମୋ ମାଆ ଓ ମାଉସୀମାନଙ୍କ ସହ ଅଛନ୍ତି । ସେ ଜଣେ ମର୍ଯ୍ୟାଦାବନ୍ତ ଓ ବିନମ୍ର ଲୋକ ଥିଲେ । ମସ୍ତିଷ୍କ ଅପେକ୍ଷା ତାଙ୍କ ହୃଦୟରେ ବେଶୀ ବୈଶିଷ୍ଟ୍ୟ ରହିଥିଲା । ତାଙ୍କୁ ସମସ୍ତେ ଭଲ ପାଉଥିଲେ ।

ସେତେବେଳେ ସେ ଯାଜପୁର ଜିଲ୍ଲାର କେଉଁ ଏକ ସ୍କୁଲରେ ଶିକ୍ଷୟତ୍ରୀ ଥିଲେ । ପ୍ରତ୍ୟହ ଗାଧୋଇବା ପାଇଁ ଯାଉଥିଲେ ବ୍ରାହ୍ମଣୀ ନଦୀକୁ । ସାଙ୍ଗରେ ଲଣ୍ଠନ ଧରି ଯାଉଥିଲେ ତାଙ୍କ ଚାକରାଣୀ । ମୋ ମାଆ କହିବା ଅନୁସାରେ ଦିନେ ଚାକରାଣୀଟି ପାଟି କରି କରି ଫେରିଲା । ଆଉ କହିଲା ଯେ, ମୀରା ମାଉସୀ ନଦୀକୁ ଓହ୍ଲାଇବା ପାଇଁ ପାହାଚରୁ ଯେମିତି ପାଣିରେ ପାଦ ଦେଲେ ଗୋଟାଏ କୁମ୍ଭୀର ତାଙ୍କୁ ପାଣି ଭିତରକୁ ଟାଣିନେଲା । ତା'ପରେ ତାଙ୍କର ଚିହ୍ନବର୍ଣ୍ଣ କିଛି ମିଳିଲାନି । ଏହା ଏକ ଦୁଃଖଦ ଘଟଣା ଥିଲା । ଏକଥା ଭାବି ବେଳେବେଳେ ମୁଁ ଶିହରିଉଠେ ।

# କାର୍ତ୍ତିକ ପୂର୍ଣ୍ଣିମା, ବୋଇତ ଭସାଣ ଓ ଅନ୍ୟାନ୍ୟ ସ୍ମୃତି

ବାଖରାବାଦ ଘରର ମଧୁର ସ୍ମୃତି ଏବେ ବି ମୋତେ ପୁଲକିତ କରେ । କାର୍ତ୍ତିକ ମାସରେ ବୋଇତ ବନ୍ଦାଣ ଉତ୍ସବ ହେଉଥିଲା । ଏହା କାଗଜ ଡଙ୍ଗା ଓ ବଡ଼ ଆକାରର ପତ୍ରରେ ତିଆରି ଡଙ୍ଗାମାନ ନଈରେ ଭସାଇବାର ଉତ୍ସବ । ଆଜି ମଧ୍ୟ ଓଡ଼ିଆମାନେ ଖୁବ ଉତ୍ସାହର ସହ ଏ ପର୍ବ ପାଳନ କରନ୍ତି । ବାଖରାବାଦ ଘରେ ଆମେ ସବୁ ଭାଇଭଉଣୀ ସେଦିନ ଭୋରରୁ ଉଠିପଡୁଥିଲୁ । ବଡ଼ ଲୋକମାନଙ୍କ ସାହାଯ୍ୟରେ (ପ୍ରାୟତଃ ଘରର ମହିଳାମାନଙ୍କର) ଆମେ ତିଆରୁଥିଲୁ ଆମର ଛୋଟିଆ ଛୋଟିଆ ଫୁଲରେ ସଜ୍ଜିତ ବୋଇତମାନ । ଦୀପ, ସଳିତା, ଘିଅ ପ୍ରସ୍ତୁତ କରାଯାଉଥିଲା କାଠଯୋଡି ନଦୀରେ ଡଙ୍ଗାଗୁଡ଼ିକୁ ଭସାଇବା ପାଇଁ । ଆମ ପାଇଁ ଏହା ଏକ ବଡ଼ ଆନନ୍ଦର ସମୟ ଥିଲା । ଏ ଦିନ କେବେ ଆସିବ ହେବ ଅପେକ୍ଷା କଲାବେଳେ ଖୁସିର ସୀମା ରହୁ ନଥିଲା । ଆମେ ସମ୍ପର୍କୀୟ ଭାଇଭଉଣୀ ଏକାଠି ହୋଇ କାଠଯୋଡ଼ିକୁ ଯାଉଥିଲୁ । ଆମ ସାଙ୍ଗରେ ଥିବେ ଜଣେ ଦୁଇ ଜଣ ଘରର ବଡ଼ ଲୋକ । ପରେ ଆମେ ଯେତେବେଳେ ଟିକେ ବଡ଼ ହୋଇଗଲୁ ଆମର ସେବାଯତ୍ନ ପାଇଁ ନିଯୁକ୍ତ ଆୟାମାନେ ଆମ ସହ ଯାଉଥିଲେ । ଘରର ସବୁ ଲୋକଙ୍କ ଭିତରୁ ଦିଦିମା ଏହି ପର୍ବ ପାଇଁ ସବୁଠୁଁ ଉତ୍ସାହୀ ଥିଲେ । ଆମେ କେମିତି ଖୁସିରେ ଏ ପର୍ବ ପାଳନ କରିବୁ ସେଥିପାଇଁ ସେ ବିଶେଷ ତତ୍ପର ହୋଇଉଠୁଥିଲେ । ମୋ ମାଆଙ୍କ ପାଇଁ ମଧ୍ୟ ଏହି ପର୍ବ ପାଳନର ପ୍ରଥମ ଆଭିମୁଖ୍ୟ ଥିଲା ଆମ ଆନନ୍ଦ । ବାକି ସବୁ ପରର କଥା । ସକାଳର ଡଙ୍ଗାଭସା ସରିବା ପରେ ଦିନବେଳେ ଆମକୁ ବାଲିଯାତ୍ରା ମେଳା ବୁଲାଇବାକୁ ନିଆଯାଉଥିଲା । ସେଠାରେ ବିକ୍ରି ହେଉଥିବା ଖାଦ୍ୟଦ୍ରବ୍ୟ ଏବଂ ପାଟିସୁଆଦିଆ ମିଷ୍ଟାନ୍ନକୁ ଉପଭୋଗ କରିବାର ସୁଯୋଗ ନେଉଥିଲୁ । ମୋର ମନେଅଛି ବାଲିଯାତ୍ରାରେ ବୃହଦାକାର ପୁରୀ ଓ ମିଠା ଖାଇବା କଥା । ମୋ ମାଆ ମୋର ଅନ୍ୟ ଭାଇଭଉଣୀ ଓ ମୋର ସାଙ୍ଗ ମାନଙ୍କୁ ମଧ୍ୟ ସାଥିରେ ପଠାଉଥିଲେ । ଏବେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ, ପ୍ରତ୍ୟେକ ଦିନ ବାଖରାବାଦ ଘରେ ମୋତେ ଆଣି ଛାଡ଼ିବା ମାମଲାରେ ମାଆ ଏତେ ନିଷ୍ଠାପର କାହିଁକି ଥିଲେ । ମୁଁ ଥିଲି ତାଙ୍କର ଏକମାତ୍ର ସନ୍ତାନ ।

ସେ ଚାହୁଁଥିଲେ କେମିତି ମୁଁ ମୋ ବୟସର ପିଲାଙ୍କ ସାହଚର୍ଯ୍ୟରେ ବଡ଼ ହୁଏ । ଏଣୁ ଆଈଙ୍କ ଘରର ନିରାପଦ ପରିବେଶରେ ମୋ ମାଉସୀଙ୍କ ପିଲାଙ୍କ ଗହଣରେ ମୋତେ ଛାଡ଼ିଦେବାକୁ ସେ କର୍ତ୍ତବ୍ୟ ମନେ କରୁଥିଲେ ।

ବାଖରାବାଦ ଘର କାଠଯୋଡି ନଦୀଠାରୁ ଟିକେ ଦୂରରେ ଥିଲା । ମୋ ବାପାମାଆ ଯେଉଁ ଘରେ ରହୁଥିଲେ ସେଇଟା ତ କାଠଯୋଡି କୂଳରେ ହିଁ ଥିଲା । ପିଲାବେଳେ ସମୟ ବିତେଇବାର ଆଉ ଏକ ବାଟ ଥିଲା ଶୁଖିଲା କାଠଯୋଡ଼ି ନଦୀଶଯ୍ୟା ଅତିକ୍ରମ କରିବା । ଦୁଃସାହସିକ କାମରେ ଲିପ୍ତ ହେବାର ମୋର ପ୍ରବୃତ୍ତି ଥିଲା । ମୋର ମନେ ଅଛି ମୁଁ କେବେ କେବେ ଆମରି ବୟସର (ସାତ ରୁ ଦଶ ବର୍ଷ ହେବ) କିଛି ପିଲାଙ୍କୁ ଧରି କାଠଯୋଡ଼ି ନଦୀ ଶଯ୍ୟା ଅତିକ୍ରମ କରି ନଦୀର ଆର ପାଖକୁ କେତେ ଥର ବୁଲିବାକୁ ଯାଇଛି । ଆମେ ଆହୁରି ଆହୁରି ଆଗକୁ ଯିବାକୁ ସେତେବେଳେ ଇଚ୍ଛା କରୁଥିଲୁ । କିନ୍ତୁ ସେ ପାଖର ଲୋକେ ପିତୃତୁଲ୍ୟ ସ୍ନେହରେ ଆମକୁ ବୁଝେଇ କହୁଥିଲେ ଯେ ଅନ୍ଧାର ହେବା ଆଗରୁ ନିଜ ନିଜ ଘରକୁ ବାହୁଡ଼ିଯିବା ପାଇଁ । ଆମକୁ ଦେଖି, ଆମ ବାହାଦୁରୀ ଦେଖି ସେମାନେ ଆନନ୍ଦିତ ହେଉଥିଲେ କିନ୍ତୁ ଆମ ସୁରକ୍ଷା କଥା ମଧ୍ୟ ଚିନ୍ତା କରୁଥିଲେ । କେତେ ଭଲ ଓ ନିରାପଦ ଥିଲା ସେତେବେଳର ସମୟ । ମୁଁ ଭାବେ, ବର୍ତ୍ତମାନ ସମୟରେ ସେମିତିକା ସାହସିକ ଉଦ୍ୟମର ପରିଣତି କ'ଣ ହୋଇପାରେ ! ଆମ ଦଳରେ ଆମେ ଅଧିକାଂଶ ଝିଅ ପିଲା ଥିଲୁ । ସେ ଯାହା ହେଉ, ଘରକୁ ଫେରିବା ପରେ ଆମ ଉପରେ ତୁମୁଳ ଗାଳି ବର୍ଷା ହେଉଥିଲା । ଆମକୁ ଚେତାବନୀ ଦିଆଯାଉଥିଲା । ମୁଁ ଦଳର ସର୍ଦ୍ଦାର ଭାବେ ମୁଖ୍ୟ ଅଭିଯୁକ୍ତ ବୋଲି ଚିହ୍ନିତ ହେଉଥିଲି । ତଥାପି ଆମେ ସେଇ କଥାକୁ ଦୋହରାଉଥିଲୁ ।

ଆମ ବଂଶ ପରମ୍ପରାରେ ଏହି ସର୍ଦ୍ଦାର ବା ଲିଡର ହେବାର ପ୍ରବୃତ୍ତି ଫକୀରମୋହନଙ୍କଠାରୁ ରହିଆସିଛି । ହୁଏତ ସେହି ସୂତ୍ରରେ ମୁଁ ସେହି ବିରାସତର ଅଧିକାରିଣୀ ଭାବରେ ଅନେକ କ୍ଷେତ୍ରରେ ନିଜକୁ ପ୍ରମାଣିତ କରିପାରିଛି । କିଛି ଦିନ ପାଇଁ ଆମେ ସେପରିକା ସାହସିକ ଉଦ୍ୟମରୁ ଦୂରେଇ ରହିଲୁ । ବଡ଼ ହେଲା ପରେ ଅନ୍ୟ ଉପାୟରେ ସମୟ କାଟିବା ପାଇଁ ଆମେ ଯୋଗ୍ୟ ବିବେଚିତ ହେଲୁ । କ୍ୟାରମ୍ ଓ ଚାଇନିଜ୍ ଚେକର ଖେଳିଲୁ ।

ବାଖରାବାଦ ଘରେ ଯେତେବେଳେ ମୁଁ ଆଈଙ୍କ ସହ ରହୁଥିଲି, ପିଲାମାନଙ୍କୁ ସଙ୍ଗୀତ ଓ ନୃତ୍ୟ ଶିକ୍ଷା ଦେବା ପାଇଁ ଆମ ଘରକୁ ଶିକ୍ଷକମାନେ ଆସୁଥିଲେ । ସେମାନଙ୍କ

ମଧ୍ୟରେ ଥିଲେ କ୍ଷିତିଶ ମୈତ୍ର ଯିଏକି ଜଣେ ପ୍ରମୁଖ କଣ୍ଠଶିଳ୍ପୀ ଥିଲେ । ସଙ୍ଗୀତ ଜଗତର ଆଉ ଏକ ବଡ଼ ନାମ ହେଲେ ରାଖାଲ ସାର୍ । ସେ ମଧ୍ୟ ମୋତେ ଗୀତ ଶିଖାଇଛନ୍ତି । ସେମାନେ କେବଳ ତାଙ୍କ କାମ ବା କର୍ତ୍ତବ୍ୟ ଦୃଷ୍ଟିରୁ ଆମ ଘରକୁ ଆସୁନଥିଲେ । ସେମାନଙ୍କୁ ଆମ ଘର ଲୋକଙ୍କ ଆତିଥ୍ୟ ଭଲ ଲାଗୁଥିଲା । ବିଶେଷ କରି ଆଈ ଓ ମାଉସୀଙ୍କର ଅତିଥି ଚର୍ଚ୍ଚା । ମୋ ମାଆ ଜ୍ଞାନ ଚର୍ଚ୍ଚା କରିବା ଲୋକ । ଅତିଥିମାନଙ୍କ ସହ ଜ୍ଞାନ ଚର୍ଚ୍ଚା କରିବାକୁ ଭଲ ପାଉଥିଲେ । କ୍ଷିତିଶ ମୈତ୍ର ଜଣେ ନିଷ୍ଠାବାନ କଳାକାର ଥିଲେ । କଟକର ସଙ୍ଗୀତ ଦୁନିଆର ଲୋକେ ତାଙ୍କୁ ଆଜି ବି ମନେ ରଖିଛନ୍ତି । ସେ ଗୋଟିଏ ସାଇକେଲ ଧରି ଆସୁଥିଲେ । ଆଉ ସାଇକେଲ ଚଲାଇଲାବେଳେ ବିଭିନ୍ନ ଶାସ୍ତ୍ରୀୟ ରାଗରେ ଆଳାପ ଓ ତାନ ଗାଉଥିଲେ । ଶୁଣିବାକୁ ମିଳୁଥିଲା ଯେ ସେ ସାଇକେଲ ଚଲାଇଲାବେଳେ କୌଣସି ଖାଲଖମାରେ ପଡ଼ିଗଲେ ମଧ୍ୟ ତାଙ୍କ ଗୀତ ବନ୍ଦ ହେଉନଥିଲା । ସେ ରାଗ ସଙ୍ଗୀତ ଜଗତରେ ମସଗୁଲ୍ ରହୁଥିଲେ । ନୃତ୍ୟଗୁରୁ ଥିଲେ ମାଇତି ସାର୍ । ସେତେବେଳେ ପୁଅମାନେ ହିଁ ପ୍ରାୟ ଓଡ଼ିଶୀ ନାଚ କରୁଥିଲେ (ଗୋଟିପୁଅ) । ଝିଅମାନଙ୍କୁ ସଉକରେ ମଧ୍ୟ ନାଚ ଶିଖିବାକୁ ବାରଣ କରାଯାଉଥିଲା । ସମ୍ଭ୍ରାନ୍ତ ଘର ଭାବେ ଜଣାଶୁଣା ବାଖରାବାଦ ଘରେ ସଂସ୍କୃତି ପ୍ରତି ଆଦର ରହିବା ସ୍ୱାଭାବିକ । ତେଣୁ ଆମ ପିଲାଙ୍କ ନୃତ୍ୟ ଶିକ୍ଷା ପାଇଁ ନିଯୁକ୍ତ ହେଲେ ମାଇତି ସାର୍ । ଚାକରମାନଙ୍କୁ କୁହାଯାଇଥିଲା ଯେ ସେ ସାର୍ ଆସିବା ଦିନ ଘରେ ପଡ଼ିଥିବା ବଡ଼ ବଡ଼ ସୋଫା ସେଟ୍‌ଗୁଡାକ ଗୋଟେ ପାଖକୁ ଘୁଞ୍ଚାଇ ଦେବା ପାଇଁ । ଯେମିତି ନାଚ ଶିଖିବା ପାଇଁ ଯଥେଷ୍ଟ ଜାଗା ମିଳିପାରିବ । ଘରର ଚଟାଣ ଲାଲ ରଙ୍ଗରେ ପାଲିଶ ହୋଇଥିଲା । ସାର୍ ଆମକୁ ତାଳ ପକେଇ ନାଚ ଶିଖାଉଥିଲେ । ଆମ ଇଚ୍ଛା ଅନୁସାରେ ଆମେ ନାଚିପାରିବୁ ବୋଲି ସେ କହୁଥିଲେ । ସମସ୍ତଙ୍କ ପାଇଁ ସ୍ୱାଧୀନତା । ଆମ ପାଇଁ ଏଇଟା ମଜାର କଥା ଥିଲା ।

ଆମେ ପାଦ ଘୋଷାଡ଼ି ଘରଟା ଯାକ ବୁଲୁଥିଲୁ । ମୋ ମାଆ ଦିନେ ଲକ୍ଷ୍ୟ କଲେ ନାଚ ଶିଖେଇବାରେ ଭୁଲ ରହିଯାଉଛି । ତେଣୁ ସେ ମୋତେ କଳା ବିକାଶ କେନ୍ଦ୍ର ପଠେଇଲେ । ସେଇଠି ମୁଁ ଓଡ଼ିଶୀ ନୃତ୍ୟର ଅଗ୍ରଣୀ ଗୁରୁ ଶ୍ରୀ କେଳୁଚରଣ ମହାପାତ୍ରଙ୍କ ତତ୍ତ୍ୱାବଧାନରେ ନାଚ ଶିଖିଲି । ତେଣୁ ଘରକୁ ଆସି ଭାଇ ଭଉଣୀ ସମସ୍ତଙ୍କୁ ଟିକେ ଭଲ ନୃତ୍ୟ ମୁଦ୍ରା ଦେଖେଇ ପାରିଲି । କିଛି ଦିନ ପରେ ଘରେ ଅଭିନୀତ ହେବାକୁ ଥିବା ଏକ ନାଟକର ମୁଁ ନିର୍ଦ୍ଦେଶନା ଦେଲି । ପଡ଼ିଶାର ସବୁ ପିଲାଙ୍କୁ ଏକାଠି କରାଏ ହେଲେ ନାଟକର ପ୍ରାକ୍ଟିସ କେବେ କେମିତି ହିଁ ହୁଏ । ଶେଷରେ ନାଟକଟି କରାଗଲା ଯେଉଁଥିରେ ଆଈ ଓ ମାଉସୀ ମୁଖ୍ୟ ଅତିଥି ଥିଲେ । କିଛି ବାହାର ଲୋକ ମଧ୍ୟ ଆସିଥିଲେ ।

ଆମେ ପିଲାମାନେ ମିଶି ବେଳେବେଳେ ନାଟକ ପରିବେଷଣ କରୁଥିଲୁ । ନାଚ ଗୀତ ମଧ୍ୟ ହେଉଥିଲା । ସେଥିପାଇଁ ଆମେ ମଞ୍ଚ ମଧ୍ୟ ପ୍ରସ୍ତୁତ କରୁଥିଲୁ । ମଞ୍ଚ ପରଦା ଭାବରେ ବ୍ୟବହାର କରୁଥିଲୁ ପୁରୁଣା ଶାଢ଼ୀ ଓ ବେଡସିଟ୍ । ନାଟକ ପରିବେଷଣର ବହୁ ଦିନ ଆଗରୁ ଆମେ ଜୋରଦାର ପ୍ରସ୍ତୁତି ଆରମ୍ଭ କରିଦେଉଥିଲୁ । ଆମର ଦର୍ଶକ ଥିଲେ ମୁଖ୍ୟତଃ ଆମ ଘର ଲୋକ, କିଛି ପଡ଼ୋଶୀ ଓ ଆଉ କେତେ ଜଣ ନିମନ୍ତ୍ରିତ ଅତିଥି । ଏଥିରେ ମଧ୍ୟ ମୁଁ ନେତୃତ୍ୱ ନେଉଥିଲି । ମୋର ସବୁଠୁ ସାନ ମାଉସୀ ଝିଅ (କିଛି ଦିନ ପୂର୍ବରୁ ଅବସରପ୍ରାପ୍ତ ଜେ.ଏନ୍.ୟୁ ପ୍ରଫେସର ମନ୍ଦିରା ଯାହାର ଡ଼ାକ ନାମ ଥିଲା ବୁଲାଇ) ହେଉଥିଲା ମୋର ଅନୁରକ୍ତ ଚେଲା । ଆମ ସହିତ ପଡ଼ିଶାର କେତେଜଣ ସାଙ୍ଗକୁ ମଧ୍ୟ ଆମେ ସାମିଲ କରାଉଥିଲୁ । କିନ୍ତୁ ସେମାନଙ୍କୁ ମିଳୁଥିଲା ଛୋଟିଆ ମୋଟିଆ ରୋଲ । ଏମିତି ଛୋଟ ବେଳର ମଜା କଥା ମନେପଡ଼ିଲେ ଏବେ ମଧ୍ୟ ପ୍ରବଳ ହସ ଲାଗେ ।

କାଠଯୋଡି ନଦୀଟି ବାଖରାବାଦ ଘରର ଅତି ନିକଟରେ ଥିବାରୁ ନଦୀର ଭିନ୍ନ ଭିନ୍ନ ରୂପ ଦେଖିବା ପାଇଁ ଆମେ ଅନେକ ସମୟରେ ଯାଉଥିଲୁ । ଖରା ଛୁଟି ବେଳେ ନଦୀଶଯ୍ୟା ଶୁଖିଲା ପଡ଼ିଥିବ । କେତୋଟି ସରୁ ଜଳ ଧାର ପରସ୍ପରକୁ କାଟିବା ପାଇଁ ପ୍ରତିଯୋଗିତା କରି ବହି ଚାଲିଥିବେ । ମୌସୁମୀ ସମୟରେ କାଠଯୋଡି ନଦୀ ଫୁଲି ଉଠେ । କୂଳ ଲଂଘି ଯିବାର ବିପଦ ସୃଷ୍ଟି କରେ । ଖରାଦିନେ ଆମେ ଛୋଟିଆ ପଥର ଗୋଟାଇ ତହିଁରେ ଆଖି ନାକ ଆଙ୍କି ଛୋଟ ଛୋଟ କନ୍ୟା ପିନ୍ଧାଉ ଦେଉ । ତା'ପରେ ସେଗୁଡ଼ିକୁ କଣ୍ଢେଇ କରି ଖେଳୁ । ମୁଁ ସେଗୁଡ଼ିକୁ ଆମ ବୈଠକଖାନାର କାନ୍ଥ ଆଲମାରିରେ ସାଇତି ରଖୁଥିଲି । ଆଲମାରି ଉପରେ ଉଭୟ ପାର୍ଶ୍ୱରେ ଫଟୋଚିତ୍ର କେତୋଟି ବନ୍ଧେଇ ହୋଇ ଶୋଭା ପାଉଥାଏ । ସେଇଠି ଥିଲା ଫକୀରମୋହନଙ୍କ ମୂଳ ଫଟୋ । ତାହା ସହିତ ଥିଲା ମୋହିନୀମୋହନ ସେନାପତି ଓ ଆଉ କେତେଜଣଙ୍କ ଫଟୋ । ସେଇ ଅନ୍ୟମାନଙ୍କ ବିଷୟରେ ମୁଁ କେବେ ଜାଣିବାକୁ ଚେଷ୍ଟା କରିନାହିଁ ।

ଏହି ଫଟୋଗୁଡ଼ିକ ଆଲମାରି ଉପରେ ଥିବା ମୋ କଣ୍ଢେଇମାନଙ୍କୁ ଘେରି ରହିଥିଲେ । ବଡ଼ ଲୋକମାନେ ମୋ କଣ୍ଢେଇମାନଙ୍କ ଉପରେ ନଜର ରଖିଛନ୍ତି ଭାବି ମୁଁ ଭାରି ନିଶ୍ଚିନ୍ତ ଥିଲି । କିଏ ଜାଣିଥିଲା ଯେ ସେ ଲୋକମାନେ କେବଳ ତଥାକଥିତ ଭାବେ ବୟସ ଦୃଷ୍ଟିରୁ ବଡ଼ ଲୋକ ନଥିଲେ ବରଂ "ବଡ଼ ଲୋକ" କହିଲେ ପ୍ରକୃତରେ ଯାହା ସେମାନେ ସେଭଳି ବ୍ୟକ୍ତିତ୍ୱଧାରୀ ମଣିଷ ଥିଲେ ।

ମୁଁ ଅନେକ ସମୟରେ ସେ କୋଠରୀରେ ବସି ଭାବୁଥିଲି ଯଦି ଏହି ବ୍ୟକ୍ତିମାନେ ଏବେ ଏଇଠି ଥାଆନ୍ତେ ଓ ତାଙ୍କ ସମୟରେ ଜୀବନର ଦୃଶ୍ୟ ମୋ ଆଖି ଆଗରେ ଭାସି ଉଠନ୍ତା ତେବେ କେତେ ଭଲ ହୁଅନ୍ତା ଯେ । ଏହି ବିଶାଳ ବୈଠକଖାନାଟି ଏପରି ଏକ ଜାଗା ଥିଲା ଯେଉଁଠି ଘରର ଅଧିକାଂଶ ଲୋକ ଅନେକ ସମୟରେ ଦେଖିବାକୁ ମିଳୁଥିଲେ । ସେଠାରେ ଇଂରେଜ ଅମଳରେ ନିର୍ମିତ ସୋଫା ଓ ଚୌକି ପଡ଼ିଥିଲା ଯେଉଁଥିରେ ଇଂରେଜୀ ସ୍ୱାଦର ଝଲକ ଥିଲା । ସେଗୁଡ଼ିକ ଏବେ ମଧ୍ୟ ସେଇ କୋଠରୀରେ ଅଛି । ସୋଫାଗୁଡ଼ିକରେ ଦାମୀ କାଠର ଫ୍ରେମ ଉପରେ ଭାରି ଝାଲର କାମ ସୁନ୍ଦର ଭାବରେ ହୋଇଥିଲା । କୋଠରୀର ଗୋଟିଏ ପାଖରେ ଥିଲା ରେଡ଼ିଓଟିଏ ଓ ଦୁଇଟି ପୁରୁଣା କାଠ ଆଲମାରି । ଆଲମାରି ସାମ୍ନାରେ କାଚ ଲାଗିଥିଲା ଯାହାଦେଇ ସେଥିରେ ଥିବା କଳାକୃତି ଓ ଅନ୍ୟାନ୍ୟ ସଂଗ୍ରହଣୀୟ ବସ୍ତୁ ଦେଖିହେଉଥିଲା । ବାମଣ୍ଡା ରାଜାଙ୍କ ଠାରୁ ଫକୀରମୋହନ ସେନାପତି ପାଇଥିବା ସରସ୍ୱତୀ ସମ୍ମାନଟି ବୋଧହୁଏ ଏବେ ବି ସେଇଠି ଥିବ । ପିଲାବେଳେ ମୋ ପାଇଁ ସମୟ କାଟିବାର ସବୁଠାରୁ ଭଲ ବାଟ ଥିଲା ଆଲମାରି କାଚ ଦେଇ ସେଥିରେ ଥିବା ଜିନିଷ ସବୁକୁ ଦେଖିବା । ଆଲମାରି ଖୋଲିବ ନାହିଁ ବୋଲି ଆଈ ଓ ମାଉସୀଙ୍କ ସ୍ପଷ୍ଟ ନିର୍ଦ୍ଦେଶ ଥିଲା । ଆଲମାରିରେ ତାଲାପକାଇ ସବୁ ସମୟରେ ବନ୍ଦ ରଖାଯାଉଥିଲା ।

ସେଠାରେ ଏକ ମଧ୍ୟମ ଆକାରର ଗ୍ରାଣ୍ଡଫାଦର କ୍ଲକ ଥିଲା ଯାହା ଏକ ରାଜକୀୟ ଠାଣିରେ ସମୟ ଘୋଷଣା କରୁଥିଲା । ଏଥିରେ ସୁନା ରଙ୍ଗଯୁକ୍ତ ପେଣ୍ଡୁଲମଟି ଝୁଲୁଥିବାର ଦୃଶ୍ୟ ମୋ ପାଇଁ ଏକ ଅତ୍ୟନ୍ତ ଆକର୍ଷଣୀୟ କଥା ଥିଲା । ମୋ ମନରେ ଏହାର ଅଳିଭା ଛାପ ରହିଯାଇଛି । ଆଜି ବି ମୋ ଘରେ ସବୁବେଳେ ମୁଁ ସମୟ ଦେଖିବା ପାଇଁ ବଡ଼ ଘଣ୍ଟାଟିଏ ଝୁଲାଇ ରଖିଥାଏ । ଆମେରିକାରେ ରହୁଥିବା ମୋ ପୁଅକୁ ଭାରି ମଜା ଲାଗେ ଯେତେବେଳେ ମୁଁ ବଡ଼ କାନ୍ଥ ଘଣ୍ଟା ସପକ୍ଷରେ ଯୁକ୍ତି କରେ । ଏହି ଡିଜିଟାଲ ଯୁଗରେ ଏମିତି ଜିଦ୍ ସେମାନଙ୍କୁ ବୋଧେ ଟିକେ ଅଡୁଆ ଲାଗେ । ମାଇକ୍ରୋ ଓଭେନ ଠାରୁ ଆରମ୍ଭ କରି ଘରର ଅନ୍ୟାନ୍ୟ ସମୟ ସୂଚାଉଥିବା ଜିନିଷରେ ସମୟ ଦେଖିବା ପାଇଁ ସେ ମୋତେ ଅଭ୍ୟସ୍ତ କରାଇବାକୁ ଚେଷ୍ଟା କଲା । କିନ୍ତୁ ସେ ବଡ଼ ଦାରୁଣ ଭାବେ ଅସଫଳ ହେଲା । ମୁଁ ଅଡ଼ି ବସିଲି ଆଉ ଶେଷରେ ଭାରତରୁ କାଲିଫର୍ଣିଆ ଯାଏଁ ମୋର କାନ୍ଥ ଘଣ୍ଟାଟିକୁ ମୋ ସହ ନେଇକି ଗଲି । ମୋ କାଲିଫର୍ଣିଆ ବାସଭବନର କୋଠରୀରେ ସେଇଟା ବ୍ୟବହୃତ ହେଲା ।

# ବାଖରାବାଦ ଘର ଓ ବିଜୁ ପଟ୍ଟନାୟକ

ଘରର ସାମ୍ନାପଟେ ବାଁ କଡ଼ରେ ଗୋଟେ କୂଅ ଥିଲା । ସେଇ କୂଅକୁ ନେଇ ଗୋଟିଏ ମଜାଦାର କାହାଣୀ ଅଛି । ସେ କାହାଣୀ ମୁଁ ମୋ ମାଆ ଓ ମାଉସୀମାନଙ୍କଠାରୁ ଶୁଣିଛି । ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ, ମୋ ମାଆ ଓ ମାଉସୀମାନଙ୍କ (ଫକୀରମୋହନ ନାତୁଣୀ) ର ସମ୍ପର୍କୀୟ ଭାଇଥିଲେ । ବିଜୁ ପଟ୍ଟନାୟକ ବାପା ଶ୍ରୀ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ ବିବାହ କରିଥିଲେ ମୋ ଆଈଙ୍କ (ହିରଣପ୍ରଭା) ଭଉଣୀଙ୍କୁ । ସେଇ ସଂପର୍କ ସୂତ୍ରରେ ବିଜୁ ପଟ୍ଟନାୟକ ବାପା ମୋ ମାଆଙ୍କର ମଉସା ଥିଲେ । ମୋ ମାଆଙ୍କ ସହିତ ବିଜୁ ପଟ୍ଟନାୟକଙ୍କର ଅତ୍ୟନ୍ତ ଘନିଷ୍ଠ ସଂପର୍କ ଥିଲା । ମୁଁ ତାଙ୍କୁ ସାନବେଳେ ବିଜୁ ମାମୁ ବୋଲି ଡାକୁଥିଲି । ମୋ ଆଈଙ୍କ ଭଉଣୀ ଅକାଳରେ ଚାଲିଗଲେ । ତେଣୁ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ ପରେ ଦ୍ୱିତୀୟ ବିବାହ କଲେ ଲତାଙ୍କୁ । ଯିଏ ତାଙ୍କ ପ୍ରଥମ ସ୍ତ୍ରୀଙ୍କର ପ୍ରିୟ ସାଙ୍ଗ ଥିଲେ । ସେହି ଦ୍ୱିତୀୟ ସ୍ତ୍ରୀଙ୍କ ସନ୍ତାନ ହେଲେ ବିଜୁ ପଟ୍ଟନାୟକ । ମୋ ମାଉସୀମାନେ ତାଙ୍କର ଭଉଣୀ ହେଇଥିବାରୁ ସେମାନଙ୍କ ଭିତରେ ଭଲ ସମ୍ପର୍କ ଥିଲା । ବିଜୁ ପଟ୍ଟନାୟକ ପିଲାଦିନେ ଅନେକ ସମୟରେ ମୋ ଆଈ ଅଜାଙ୍କୁ ଓ ମାଉସୀମାନଙ୍କୁ ଭେଟିବାକୁ ବାଖରାବାଦ ଘରକୁ ବୁଲିଆସୁଥିଲେ । ବିଜୁ ପଟ୍ଟନାୟକଙ୍କର ମୋ ମାଆ ସହ ବହୁତ ଭଲ ମିଳାମିଶା ଥିଲା ।

ଏବେ ଫେରିବା କୂଅ ପ୍ରସଙ୍ଗକୁ । ବିଜୁ ପଟ୍ଟନାୟକ ଯୁବାବସ୍ଥାରେ ବାଖରାବାଦ ବାସଗୃହ ପ୍ରାଙ୍ଗଣରେ ଥିବା କୂଅଟାକୁ ଦେଖୁ ଦେଖୁ କୂଅ ଭିତରେ ହଠାତ୍ ପଡ଼ିଗଲେ । କିଛି ସମୟ ପରେ ଲୋକେ ଶୁଣିବାକୁ ପାଇଲେ ଯେ କୂଅ ଭିତରୁ କାହାର ପାଟି ଶୁଭୁଛି । 'ମୁଁ କୂଅରେ ପଡ଼ି ଯାଇଛି, ଦେଖ ମୋତେ' କହି ବିଜୁ ପଟ୍ଟନାୟକ ଚିଲ୍ଲଉଥିଲେ । ମଜା କଥା ହେଲା ସେ କୂଅ ଭିତରେ ଥାଇ ଆରାମରେ କହୁଥିଲେ 'ମୁଁ ଠିକ୍‌ଠାକ୍ ଅଛି- ଶୀଘ୍ର ବାହାରକୁ ପଳେଇ ଆସିବି' । ଏ ଦୃଶ୍ୟ ଦେଖି ତାଙ୍କଠାରୁ ବେଶୀ ଭୟଭୀତ ହେଇ ଯାଇଥିଲେ ଦେଖଣାହାରୀମାନେ । ଟିକିଏ ଧରାଧରି କରିଦେଲାରୁ ବିଜୁ ପଟ୍ଟନାୟକ ସଫଳତାର ସହ ଉପରକୁ ଉଠି ଆସିଲେ । ତାଙ୍କର ଦୁଃସାହସିକ ପ୍ରକୃତିର ସଙ୍କେତ ସେଦିନ ଦେଖିବାକୁ ମିଳିଥିଲା ସେଇ କୂଅ ଭିତରେ ।

ଆଉ ଏକ ଘଟଣା ବିଷୟରେ ମଧ୍ୟ ମୋ ମାଆଙ୍କ ଠାରୁ ଶୁଣିଥିଲି । କୂଅରେ ପଡ଼ିବା ଘଟଣାର କିଛି ବର୍ଷ ପରେ ମୋ ମାଆ ବିଜୁ ପଟ୍ଟନାୟକଙ୍କ ଘରକୁ ବୁଲି ଯାଇଥାଆନ୍ତି । ସେତେବେଳକୁ ସେ ରାଜନୀତିରେ ପ୍ରବେଶ କରିସାରିଥିଲେ । ଯେମିତି ମୋ ମାଆ ତାଙ୍କ ବୈଠକଖାନାରେ ପଶିଛନ୍ତି ଆଗରେ ଆସି ଛିଡ଼ା ହେଲା ଗୋଟାଏ ଜୀବନ୍ତ ବାଘ । ମାଆ ଭୟରେ ଅବାକ୍ ହୋଇଗଲେ । ତାଙ୍କ ମୁଣ୍ଡ କାମ କରୁନଥାଏ କି ତାଙ୍କ ପାଟିରୁ କଥା ବାହାରୁ ନଥାଏ । ଅସ୍ପଷ୍ଟ ଭାବେ ସେ ଡାକୁଥାଆନ୍ତି, ବିଜୁ ବିଜୁ । ସାଙ୍ଗେ ସାଙ୍ଗେ ସେଠି ଆସି ପହଞ୍ଚିଲେ ବିଜୁ ପଟ୍ଟନାୟକ ଓ ମାଆଙ୍କୁ ଶାନ୍ତ କଲେ । ମାଆ ସ୍ୱାଭାବିକ ଅବସ୍ଥାକୁ ଫେରିବା ପରେ ବିଜୁ ପଟ୍ଟନାୟକ ତାଙ୍କ କଥାବାର୍ତ୍ତା ଆରମ୍ଭ କଲେ । ବିଜୁ ପଟ୍ଟନାୟକ କହିଲେ "ବ୍ୟସ୍ତ ହୁଅନା, ବାଘଟିକୁ ମୁଁ ଅତି ଶୀଘ୍ର ଜଙ୍ଗଲ ବିଭାଗକୁ ହସ୍ତାନ୍ତର କରିଦେବି ।" ପରେ ଯେତେବେଳେ ମୋ ମାଆ ବାଲେଶ୍ୱରର ବାରବାଟି ବାଳିକା ଉଚ୍ଚ ବିଦ୍ୟାଳୟରେ ପ୍ରଧାନଶିକ୍ଷୟିତ୍ରୀ ଥିଲେ (ତାଙ୍କ ବୟସ ସେତେବେଳେ ପଞ୍ଚାବନ ଉପରେ) ବିଜୁ ପଟ୍ଟନାୟକ ଆଗରୁ କିଛି ଖବର ନଦେଇ ମାଆଙ୍କୁ ଦେଖା କରିବାକୁ ପହଞ୍ଚି ଯାଇଥିଲେ । ମୋତେ ସେତେବେଳକୁ ପ୍ରାୟ ଛଅ ବର୍ଷ ହୋଇଥିଲା । ମୋର ମନେଅଛି ମୋତେ ବିଜୁ ପଟ୍ଟନାୟକ କେମିତି ଉପରକୁ ଉଠେଇ ନେଉଥିଲେ, ଉପରକୁ ଫିଙ୍ଗି ପୁଣି ଧରି ପକାଉଥିଲେ । ଅନେକ ଦିନ ପରେ ପୁଣି ତାଙ୍କ ସହ ମୋର ଦେଖାଦେଲା । ସେତେବେଳକୁ ସେ ତାଙ୍କ ରାଜନୈତିକ ଜୀବନରେ ଏତେ ବ୍ୟସ୍ତ ହୋଇଯାଇଥିଲେ ଯେ ଆମେ କ୍ୱଚିତ୍ ତାଙ୍କ ଦର୍ଶନ ପାଉଥିଲୁ । ମୁଁ ଭୁବନେଶ୍ୱରରୁ ଦିଲ୍ଲୀ ଯାଉଥିବାବେଳେ ବିମାନ ଭିତରେ ତାଙ୍କୁ ଥରେ ଦେଖିଥିଲି । ତାଙ୍କର ତୀକ୍ଷ୍ଣ ସ୍ମରଣ ଶକ୍ତି । ଦେଖୁ ଦେଖୁ ଚିହ୍ନି ପକାଇଲେ । ପଚାରିଲେ, ତୁ ବୀଣାର ଝିଅଟି ? ମୋ ମାଆଙ୍କୁ ସେ ବୀଣା ବୋଲି ଡାକୁଥିଲେ । ମୁଁ ସେତେବେଳକୁ କୈଶୋର ଅତିକ୍ରମକରି ଯୁବତୀ ପର୍ଯ୍ୟାୟରେ । ମୋତେ ଲାଗିଲା ବ୍ୟବହାରରେ ମୁଁ ତଦନୁରୂପ ସମ୍ଭ୍ରମତା ରକ୍ଷା କରିବା ଉଚିତ । ତା'ପରେ ମୁଁ ସଚେତନ ଥିଲି ଯେ ମୁଁ ଓଡ଼ିଶାର ମୁଖ୍ୟ ମନ୍ତ୍ରୀଙ୍କ ସହ କଥା ହେଉଛି । ଆଉଥରେ ତାଙ୍କ ସହ ଭେଟ ହୁଏ ଏକ ଅଜବ ପରିସ୍ଥିତିରେ । ଗାୟକ ଶ୍ରୀ ପ୍ରଣବ ପଟ୍ଟନାୟକ ପାଇଁ ଏକ ସମାରୋହରେ ଆୟୋଜନ ହୋଇଥାଏ । ମୋର ସେଠାରେ ଗୋଟିଏ ଭଜନ ଗାଇବାର କାର୍ଯ୍ୟକ୍ରମ ଥିଲା । ସେଦିନ ସନ୍ଧ୍ୟାର ମୁଖ୍ୟ କଣ୍ଠଶିଳ୍ପୀ ଥିଲେ ଶ୍ରୀ ପ୍ରଣବ ପଟ୍ଟନାୟକ । ସେ ମୋତେ ତାଙ୍କ ସହ ନେଇକି ଯାଇଥାଆନ୍ତି ନୂଆ ଦିଲ୍ଲୀର ପ୍ରଗତି ମଇଦାନକୁ । ଉତ୍କଳ ଦିବସ ଉପଲକ୍ଷ୍ୟେ ମୁଖ୍ୟମନ୍ତ୍ରୀଙ୍କ ପାଇଁ ଏକ ସମାରୋହର ଆୟୋଜନ ହୋଇଥାଏ । ଏଇଟା ତାଙ୍କ ଉଦାରତାର ପରିଚୟ ଯେ ସେ ମୋତେ ଗାଇବା ପାଇଁ ସୁଯୋଗ ଦେଇଥିଲେ । ଅବଶ୍ୟ ସେତେବେଳେ କେହି କାହା ପ୍ରତି ଅନୁଗ୍ରହ କରୁଛି

ବୋଲି ଭାବୁନଥିଲେ । ସବୁକିଛି ସ୍ୱାଭାବିକ ଢଙ୍ଗରେ ଘଟୁଥିଲା । ସେ ଯାହାହେଉ, କାର୍ଯ୍ୟକ୍ରମ ସରିବା ପରେ ମୁଁ ବିଜୁ ପଟ୍ଟନାୟକଙ୍କ ସହ କଥା ହେବାର ସୁଯୋଗ ପାଇଲି । ଅବଶ୍ୟ ନିର୍ଦ୍ଦିଷ୍ଟ ପ୍ରୋଟୋକଲ ଯୋଗୁଁ ଖୁବ ଅଳ୍ପ ସମୟ ପାଇଁ ହିଁ କଥା ହୋଇ ପାରିଲି । ଦୁର୍ଭାଗ୍ୟକୁ ସେଇଟା ଥିଲା ମୋ ସହ ତାଙ୍କର ଶେଷ ଦେଖା । ତାଙ୍କର ପ୍ରକୃତରେ ଏକ ବିଶାଳ ବ୍ୟକ୍ତିତ୍ୱ ଥିଲା । ମୋ ଠାରେ ସେ ଏକ ଅଲିଭା ସ୍ମୃତି ଛାଡ଼ିଯାଇ ଅଛନ୍ତି ।

ପରବର୍ତ୍ତୀ ସମୟରେ ତାଙ୍କ ଭାଇ ସିଜୁ ପଟ୍ଟନାୟକ ଓ ଜର୍ଜ ପଟ୍ଟନାୟକଙ୍କ ଝିଅ ମଞ୍ଜୁ ମହାନ୍ତିଙ୍କ ସହ ମୁଁ ଭଲଭାବରେ ମିଳାମିଶା କରିଛି । ନୂଆ ଦିଲ୍ଲୀର ବସନ୍ତକୁଞ୍ଜରେ ସିଜୁ ପଟ୍ଟନାୟକଙ୍କର ଯେଉଁ ସୌଖୀନ ଘରଟି ଥିଲା ସେଠାକୁ ଆସିବାକୁ ଅନେକ ସମୟରେ ମୋ ମାଆଙ୍କୁ ନିମନ୍ତ୍ରଣ ମିଳୁଥିଲା । ପରେ ପରେ ମୁଁ ଓ ମୋ ସ୍ୱାମୀ ମଧ୍ୟ ନିମନ୍ତ୍ରଣ ପାଇଲୁ । ଘରଟିର ନାମଥିଲା 'ସିଜୁ ହାଉସ୍' । ନୂଆ ବର୍ଷ ପାଟି ଦେବା ପାଇଁ ସେ ଆମକୁ ଜିମଖାନା କ୍ଲବଘରକୁ ଡାକିନେଉଥିଲେ । ମୋ ମାଆ ସହରକୁ ଆସିଥିବାର ଖବର ପାଇଲା ମାତ୍ରେ ସେ ମୋ ମାଆବାପାଙ୍କୁ ଦେଖା କରିବା ପାଇଁ ଚାଲି ଆସୁଥିଲେ । ଆମେ ସେତେବେଳେ ଦକ୍ଷିଣ ଦିଲ୍ଲୀର 'ଇଷ୍ଟ ଅଫ୍ କୈଲାଶ' କଲୋନୀରେ ବସବାସ କରୁଥିଲେ । ମୋର ଯେତେଦୂର ମନେପଡୁଛି ସେ ୱିଙ୍ଗ କମାଣ୍ଡର ଭାବେ ଅବସର ନେଇଥିଲେ । ତାଙ୍କର ଚାଲିଚଳନ ଥିଲା ଆର୍ମି ଶୈଳୀଯୁକ୍ତ । ସେଇଟା ଦେଖିବାକୁ ମୋତେ ଓ ମୋ କୁନି ପୁଅକୁ ଭାରି ମଜା ଲାଗୁଥିଲା । ଜର୍ଜ ପଟ୍ଟନାୟକ ଝିଅ ମଞ୍ଜୁ ମହାନ୍ତି ଓ ମୁଁ ଆଜି ଯାଏଁ ପରସ୍ପରର ଅନ୍ତରଙ୍ଗ ହୋଇ ରହିଛୁ । ଅନେକ ସମୟରେ ଆମେ କଥା ହେଉଥିଲୁ ସେଇ ରୋମାଞ୍ଚକର ପୁରୁଣା ଦିନଗୁଡ଼ିକ ବିଷୟରେ । ପ୍ରାୟ ଆମର ଦେଖା ହେଉଥିଲା । ଏବେ ସେ ଅନେକ ଦୂରରେ ରୁହନ୍ତି । ଏଠାରେ ମୁଁ ଜଣାଇ ଦେବାକୁ ଚାହେଁ ଯେ, ଫକୀରମୋହନ ସେନାପତିଙ୍କ ଜୀବନ ଉପରେ ଚଳଚ୍ଚିତ୍ର 'ଅନ୍ୱେଷଣ' ନିର୍ମାଣ କଲାବେଳେ ମଞ୍ଜୁ ଦିଦି ମୋତେ ଅନେକ ସାହାଯ୍ୟ କରିଥିଲେ । ସୁଟିଙ୍ଗ ପାଇଁ ବିକଳ୍ପ ସ୍ଥାନଟିଏ ଠିକ୍ କରିଦେଇଥିଲେ । ସେଥିପାଇଁ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଛି । ଲକ୍ଷ୍ୟ କରନ୍ତୁ ଖାସ୍ ସେଇଥିପାଇଁ ହିଁ ଫିଲ୍ମ ତିଆରି ବେଳେ ଯେମିତି ସବୁକିଛି ପୂର୍ବ ନିର୍ଦ୍ଧାରିତ ଥିଲା ବୋଲି ମୁଁ କହୁଥିଲି । ମଞ୍ଜୁଙ୍କର ନଣନ୍ଦ ବିବାହ କରିଛନ୍ତି ବାଲେଶ୍ୱରର ଜଣେ ବଡ଼ ଜମିଦାରଙ୍କୁ । ସେ ଆମକୁ ଦୟାପୂର୍ବକ ତାଙ୍କ ଘର ପରିସରରେ ସୁଟିଙ୍ଗ ପାଇଁ ବ୍ୟବସ୍ଥା କରିଦେଇଥିଲେ । ସୁଟିଙ୍ଗ ପାଇଁ ସବୁଠୁ ଭଲ ଜାଗା ଥିଲା ସେଇଟି । ଦୂରଦର୍ଶନର ସୁଟିଙ୍ଗ ପାଇଁ ଆସିଥିବା ଦଳଟି ଅନେକ ଦିନ ଧରି ତାଙ୍କ ଜାଗାରେ କ୍ୟାମ୍ପ ପକାଇ ରହିଥିଲେ । ମୁଁ ସେଇଠି ପାଇଥିଲି ବିଶେଷ ଅଧିକାର ମଧ୍ୟ । ମୁଁ ତାଙ୍କ ସହ ତାଙ୍କ ଘରେ ରହିଥିଲି ଓ ସେମାନେ ମୋର ପୂରା ଯତ୍ନ ନେଇଥିଲେ । 'ସାହେବ,

ବିବି ଔର ଗୁଲାମ'ର ସେଟିଙ୍ଗ ପରି ଲାଗୁଥିଲା ସେ ଅଟ୍ଟାଳିକା । ସେଥିପାଇଁ ମୋ ଖୁସି ଦ୍ୱିଗୁଣିତ ହୋଇ ଯାଇଥିଲା । ସେସବୁ ଦିନର କଥା ଭାବି ଭାରି ଖୁସି ଲାଗୁଛି । ଅନେକ ବର୍ଷ ଧରି ମୁଁ ସେହି ସ୍ମୃତି ସବୁକୁ ସ୍ମରଣ କରୁଥିବି । ମୁଁ ଯେଉଁ ସହାୟତା ପାଇଛି ସେଥିପାଇଁ ମୁଁ କୃତଜ୍ଞ । ମଞ୍ଜୁ ଦିଦି ଓ ତାଙ୍କ ସ୍ୱାମୀ ଶ୍ରୀଯୁକ୍ତ ମହାନ୍ତିଙ୍କୁ ମଧ୍ୟ ଆଉଥରେ ଧନ୍ୟବାଦ ଜ୍ଞାପନ କରୁଛି । ସେମାନଙ୍କର ସାହାଯ୍ୟ ପାଇ ନ ଥିଲେ 'ଅନ୍ୱେଷଣ' ସୁଟିଂ କାର୍ଯ୍ୟ ସମ୍ଭବ ହୋଇପାରିନଥାନ୍ତା । ଏସବୁ କଥାର ପୃଷ୍ଠଭୂମି ହେଲା, 'ଅନ୍ୱେଷଣ' ସୁଟିଙ୍ଗ କରିବା ପାଇଁ ମୁଁ ଯେତେବେଳେ ଫକୀରମୋହନ ସେନାପତିଙ୍କ ନିର୍ମିତ ବାଖରାବାଦ ଘରକୁ ଗଲି, ସେ ଘରର ବର୍ତ୍ତମାନର ବାସିନ୍ଦା ମୋତେ ପ୍ରବେଶ କରିବାକୁ ଅନୁମତି ଦେଲେ ନାହିଁ । ଏଣୁ ମୋତେ ଖୋଜିବାକୁ ହେଲା ସୁଟିଙ୍ଗ ପାଇଁ ଅନ୍ୟ ବିକଳ୍ପ ଏବଂ ତାହା ସଫଳତାର ସହିତ ସମ୍ପନ୍ନ ହୋଇଥିଲା ବିଭିନ୍ନ ବ୍ୟକ୍ତିଙ୍କର ଅକୁଣ୍ଠ ସାହାଯ୍ୟ ହେତୁ । ଭାଗ୍ୟର କଥା 'ଅନ୍ୱେଷଣ' ସେ ବର୍ଷର ଶ୍ରେଷ୍ଠ ଟେଲିଫିଲ୍ମ ଭାବେ ପୁରସ୍କୃତ ହୋଇଥିଲା ।

# ଅଞ୍ଜନ ଶୁକ୍ଳା

ବାଖରାବାଦ ଘରର ସାମନା ଆଡ଼େ ବାମ ପଟେ ଗୋଟେ କୂଅ ଥିଲା । ସାମନା ପଟ ବାରଣ୍ଡା ଖୁବ୍ ପ୍ରଶସ୍ତ ଥିଲା ଓ ଲାଲ ରଙ୍ଗର ସିମେଣ୍ଟରେ ପାଲିସ କରାଯାଇଥିଲା । ଘରର ଛାତ ଥିଲା ଉଚ୍ଚରେ ଓ ସେଥିରେ ପଙ୍ଖା ସବୁ ଲାଗିଥିଲା । ମୋଟାମୋଟି ଭାବେ କହିଲେ ସମୟ ବିତେଇବା ପାଇଁ ଏ ଜାଗାଟି ସବୁଠୁଁ ବଢ଼ିଆ ଜାଗା ଥିଲା । ବାରଣ୍ଡା ଆଗକୁ ଥିଲା ବଡ଼ ବଗିଚାଟିଏ । ବଗିଚାରେ ଭଳିକି ଭଳି ଗଛ ଲଗାଯାଇଥିଲା । ବାରଣ୍ଡାକୁ ଘେରି ରହିଥିଲା ବିଦେଶୀ ଗଛରେ ସୁଶୋଭିତ କୁଣ୍ଡ ଧାଡ଼ିଏ । ମୋ ପିଲାବେଳେ ଫକୀରମୋହନ ସେନାପତିଙ୍କ କଥା କେବେ ମୋ ମନକୁ ଆସୁନଥିଲା । ଆଠ ଦଶ ବର୍ଷର ପିଲାଟିଏ କେମିତ ହେଲେ ଜଣେ କିମ୍ବଦନ୍ତୀ ପୁରୁଷଙ୍କ ଉଦ୍ଭିଦବିଜ୍ଞାନ ସମ୍ବନ୍ଧୀୟ ରୁଚି ଓ ଉଦ୍ୟମଗୁଡ଼ିକୁ ବୁଝିପାରିଥାନ୍ତା ! ଅନେକ ଦିନପରେ ହିଁ ମାଆ, ଆଈ, ମାଉସୀମାନଙ୍କଠାରୁ ଜାଣିବାକୁ ପାଇଲି ଯେ ଏଇ ଗଛଗୁଡ଼ିକ ମଧ୍ୟରୁ ଅଧିକାଂଶ ଫକୀରମୋହନ ସେନାପତି ନିଜେ ଲଗେଇଥିଲେ । ସେ ଜାମୁରୋଳ ଗଛଟି ମଧ୍ୟ ଯାହା ଉପରକୁ ଆମେ ପିଲାବେଳେ ଚଢ଼ି ଯାଉଥିଲୁ । ମୋ ପାଖରେ ଏବେ ବି ସେ ଗଛଚଢ଼ା ବେଳର ଗୋଟେ ଫଟୋ ଥିବ । ସେ ଫଟୋଟି ମୋର ସବୁଠାରୁ ବଡ଼ ମାଉସୀ ପୁଅ ଭାଇ ଶ୍ରୀ ଅଞ୍ଜନ ଶୁକ୍ଳା (ପପୁ ଦାଦା) ଉଠେଇଥିଲେ । ସେ ଭାରି ସ୍ନେହୀ ଲୋକ ଥିଲେ । ମୁଁ ତାଙ୍କୁ ବିସ୍ମୟରେ ଅନାଉଥିଲି । ତାଙ୍କର ଉଦାସୀ ଚେହେରାକୁ ତାଙ୍କ ଜ୍ଞାନ ଖାପ ଖାଉଥିଲା । ସେ କେତେ କଥା ଜାଣିଥିଲେ । ତାଙ୍କ ପାଖରେ ଗୋଟେ କ୍ୟାମେରା ଥିଲା । ଯେଉଁଥିରେ ସେ ଆମ ଫଟୋ ଉଠାଉଥିଲେ । ସେ ସମୟରେ କ୍ୟାମେରା ବ୍ୟବହାର କରିବା ଏକ ବିରଳ ଦୃଷ୍ଟାନ୍ତ ଥିଲା । କ୍ୟାମେରା ସହିତ ପୁପୁ ଦାଦାଙ୍କୁ ଦେଖି ଆମ ଛୋଟ ମନରେ ତାଙ୍କ ପ୍ରତି ସମ୍ମାନ ଆହୁରି ବଢ଼ି ଯାଉଥିଲା । ପୁପୁ ଦାଦାଙ୍କୁ ଦେଖିଲେ ଦିଦିମାଙ୍କ ମୁହଁ ଉଜ୍ଜ୍ୱଳ ଦିଶୁଥିଲା । ଆଖି ଚିକ୍ ଚିକ୍ କରୁଥିଲା । ଏସବୁ ସ୍ମୃତି ମନରେ ଚିର ଅମଳିନ ହୋଇ ରହିଛି ।

ଅଞ୍ଜନ ଶୁକ୍ଳା, ଯାହାଙ୍କୁ ଆମେ ପିଲାମାନେ ପୁପୁ ଦାଦା ବୋଲି ଡ଼ାକୁଥିଲୁ, ସେ ହେଉଛନ୍ତି ମାଉସୀ ମୈତ୍ରୀ ଶୁକ୍ଳାଙ୍କ ପୁଅ । ଏ ମାଉସୀ ବାଚୁଭାଇ ଶୁକ୍ଳା ନାମକ ଜଣେ ଗୁଜୁରାଟି ବ୍ରାହ୍ମଣଙ୍କୁ ବିବାହ କରିଥିଲେ । ଏ ମାଉସୀଙ୍କୁ ଆମେ ମୋନା ମାସୀ ବୋଲି ଡାକୁଥିଲୁ । ସେ ଜଣେ ଗୁଣବତୀ ମହିଳା ଥିଲେ । ତାଙ୍କ ସ୍ୱାମୀ ତ ଆହୁରି ପ୍ରତିଭାବାନ

ଥିଲେ । ସେ ଦିଲ୍ଲୀସ୍ଥିତ ଆକାଶବାଣୀ କେନ୍ଦ୍ରର ପ୍ରଥମ ନିର୍ଦ୍ଦେଶକ ଥିଲେ । ସେତେବେଳେ ଆକାଶବାଣୀ ଦରିଆଗଞ୍ଜ ଠାରେ ଥିଲା । ଶାନ୍ତିନିକେତନ ସ୍ଥିତ ବିଶ୍ୱଭାରତୀରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କିଛି ଦିନ ପାଇଁ ବିଦ୍ୟାଧ୍ୟୟନ କରିଥିବା ବେଳେ ବାଚ୍ଚୁ ଭାଇ ତାଙ୍କୁ ପାଠ ପଢ଼ାଇଥିଲେ । ତାଙ୍କ ପୁଅ ଅଞ୍ଜନ ଶୁକ୍ଳା ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଗଣିତଜ୍ଞ ଥିଲେ । ସେ ଯୁକ୍ତରାଜ୍ୟ ଆମେରିକାର ହାଓ୍ୱାଇ ବିଶ୍ୱବିଦ୍ୟାଳୟରେ ଗାଣିତିକ ଦର୍ଶନ (Mathematical Philosophy) ର ପ୍ରଫେସର ଥିଲେ । ପରବର୍ତ୍ତୀ କାଳରେ ସେ ନିଜ ଇଚ୍ଛାରେ ହିଁ ବିଶ୍ୱଭାରତୀରେ ଅଧାପନା କରିବାକୁ ଚାଲିଆସିଲେ ଓ ସେଠାରେ ହିଁ କିଛି ବର୍ଷ ପରେ ତାଙ୍କର ମୃତ୍ୟୁ ହେଲା ତାଙ୍କ ଭଉଣୀ ଗୋପା ଶୁକ୍ଳା ମଧ ପ୍ରତିଭାସମ୍ପନ୍ନା ଥିଲେ । ସେ ବମ୍ବେରେ ଜେ.ଜେ ସ୍କୁଲ ଅଫ ଆର୍ଟସରେ ପ୍ରଶିକ୍ଷିତ ଜଣେ କଳାକାର ଥିଲେ । ସେ ଏବେ ପୁନେରେ ରହୁଛନ୍ତି ।

ପ୍ରସିଦ୍ଧ ଲେଖକ **ପବିତ୍ର କୁମାର ରାୟ** କହନ୍ତି :

"ଅଞ୍ଜନ ଶୁକ୍ଳାଙ୍କର ଜନ୍ମ ହୁଏ ୧୯୩୮ ମସିହା ନଭେମ୍ବର ୩୦ ତାରିଖରେ । ସେ ଥିଲେ ତାଙ୍କ ବାପାମାଆଙ୍କର ଗୋଟିଏ ବୋଲି ପୁଅ । ତାଙ୍କ ବାପାମାଆଙ୍କ ପଥ ଅନୁସରଣ କରି ଅଞ୍ଜନ ଶାନ୍ତିନିକେତନ ଗଲେ ବିଦ୍ୟାଳୟ ଶିକ୍ଷା ପାଇଁ । ସେଠାରେ ସାହିତ୍ୟ ପ୍ରତି ତାଙ୍କ ରୁଚି ଓ ଆଗ୍ରହ ଜାତ ହେଲା । ଏଥିପାଇଁ କେତେକାଂଶରେ ତାଙ୍କର ବଂଶ ପରମ୍ପରା ମଧ ଦାୟୀ । ଅଞ୍ଜନଙ୍କ ବାପା ଗୁଜୁରାଟୀ ସାହିତ୍ୟ ଜଗତରେ ଜଣେ ପରିଚିତ ଲୋକ ଥିଲେ । ତାଙ୍କ ଅଜା ମୋହିନୀମୋହନ ସେନାପତି ନିଜର ନାସ୍ତିକତାବାଦୀ ଲେଖାପାଇଁ ଓଡ଼ିଶାରେ ସୁପରିଚିତ ଥିଲେ । ମୋହିନୀମୋହନଙ୍କ ବାପା ଫକୀରମୋହନ ସେନାପତି ତାଙ୍କ ସମୟର ଜଣେ ପ୍ରସିଦ୍ଧ ସାହିତ୍ୟିକ ଥିଲେ । ରବୀନ୍ଦ୍ରନାଥଙ୍କର 'ବିସର୍ଜନ' ନାଟକରେ ଅଞ୍ଜନ ରଘୁପତି ଭୂମିକାରେ ଯେପରି ଅଭିନୟ କରିଥିଲେ ଶାନ୍ତିନିକେତନର ଅନେକ ଲୋକ ସଶ୍ରଦ୍ଧ ସ୍ମରଣ କରିପାରିବେ । ଅନେକାଂଶରେ ରଘୁପତି ଚରିତ୍ରଟି ଅଞ୍ଜନଙ୍କର ନିଜସ୍ୱ ବ୍ୟକ୍ତିତ୍ୱର ଏକ ଝଲକ ଥିଲା ।"

"ବିଶ୍ୱଭାରତୀରେ କିଛି ଦିନ ଗଣିତ ଅଧାପନା କଲା ପରେ ଅଞ୍ଜନ ୧୯୬୪ରେ ସେଣ୍ଟର ଫର୍ ଆଡ୍‌ଭାନ୍‌ସଡ୍ ଷ୍ଟଡୀ ଇନ୍ ପିଲୋସଫିରେ ଯୋଗ ଦେଲେ ଜଣେ ଜୁନିଅର ରିସର୍ଚ୍ଚ ଫେଲୋ ହିସାବରେ । ସେହି ବର୍ଷ ସେ ଦୁଇଟି ଗବେଷଣାତ୍ମକ ପ୍ରବନ୍ଧ ଲେଖିଥିଲେ । ଯେଉଁଗୁଡ଼ିକ ପରେ Notre Dame Journal of Formal Logic ରେ ପ୍ରକାଶିତ ହୋଇଥିଲା (ଭାଗ - ୬, ୧୯୬୫ ଓ ଭାଗ-୭, ୧୯୬୬) । ଫେଲୋସିପ୍‌ର ଅବଧି ପୂର୍ବରୁ ଅଞ୍ଜନ ବିଶ୍ୱଭାରତୀ ଛାଡ଼ି University of Notre Dame du Lac ର ଗଣିତ

ବିଭାଗରେ ଜଣେ ଟିଚିଙ୍ଗ ଆସିଷ୍ଟାଣ୍ଟଭାବେ ଯୋଗ ଦେଲେ । ସେଠାରେ ୧୯୬୬ ରେ ସେ ସ୍ନାତକୋତ୍ତର ଉପାଧି ପାଇଲେ ଓ ୧୯୬୭ ରେ ପିଏଚ୍.ଡି. ଲାଭ କଲେ । ୧୯୬୮ରୁ ୧୯୭୨ ଯାଏଁ ସେ ହାୱାଇ ବିଶ୍ୱବିଦ୍ୟାଳୟରେ ଗଣିତ ଅଧ୍ୟାପନା କଲେ । ଇତି ମଧ୍ୟରେ ସେ ଦର୍ଶନଶାସ୍ତ୍ରରେ ମଧ୍ୟ ସ୍ନାତକୋତ୍ତର ଅଧ୍ୟୟନ କରି ସାରିଥାଆନ୍ତି । ୧୯୬୯ ରେ Graduate Faculty ରେ ପଢ଼ାଇବା ଆରମ୍ଭ କଲେ । ସେହି ବର୍ଷ ସେ ଜାପାନର National Science Foundtion ରେ ମଧ୍ୟ ଅଧ୍ୟାପନା କରିଥିଲେ ।"

"୧୯୭୩ରେ ସେ ଭାରତ ଫେରି ଆସିଲେ ଓ University of North Bengal ରେ ଦର୍ଶନ ବିଭାଗରେ Visiting Fellow ରୂପେ ଯୋଗ ଦେଲେ । ସେଠାରେ କିଛି ମାସ ବିତାଇ ସେ ଫେରିଗଲେ ବିଶ୍ୱଭାରତୀକୁ । ସେଠାରେ ୧୯୭୩ରୁ ୧୯୭୫ ଯାଏଁ Senior Research Fellow ଭାବେ କାମ କଲେ । ୧୯୮୦ରେ ଅଞ୍ଜନ ଯାଦବପୁର ବିଶ୍ୱବିଦ୍ୟାଳୟରେ visiting fellow ହେଲେ । ୧୯୮୪ ରେ ତାଙ୍କୁ University of Calcutta ରେ Visiting Professorship ପାଇଁ ସୁଯୋଗ ମିଳିଲା ।"

ଦଶ ବର୍ଷରୁ ଊର୍ଦ୍ଧ୍ୱ କାଳ ମୁଁ ଅଞ୍ଜନଙ୍କ ସହ ବିତେଇଛି । ସେ ଯେପରି ନମ୍ର ଓ ଅହଂହୀନ ମଣିଷ ଥିଲେ ମୁଁ କେବେ ଭୁଲିପାରିବି ନାହିଁ । ସେ ତର୍କଶାସ୍ତ୍ରରେ ଧୁରନ୍ଧର ଥିଲେ ମଧ୍ୟ କେବେହେଲେ ନିଜକୁ ଅନ୍ୟମାନଙ୍କ ଠାରୁ ବଡ଼ ବୋଲି ଭାବୁନଥିଲେ । ଅନ୍ୟମାନଙ୍କ ସହ ଅଧ୍ୟାପନା କାମ ସେ ସବୁବେଳେ ସହୃଦୟେ ବାଣ୍ଟି ଦେଉଥିଲେ । ଯଦିଓ ତାଙ୍କର ସହକର୍ମୀମାନେ ତର୍କଶାସ୍ତ୍ରରେ ନା ତାଙ୍କର ସମକକ୍ଷ ଥିଲେ ନା ପରିପୂରକ । ମୋ ମତରେ ଶିକ୍ଷଣ ଜଗତରେ ଏହି ଗୁଣଟି ବିରଳ । ତାଙ୍କର ଅନେକ ସହକର୍ମୀ ତାଙ୍କର ସଫଳତାଗୁଡ଼ିକ ବିଷୟରେ ଜାଣିନଥିଲେ ଅଥବା ନିଜ ବଡ଼ିମା କଳନାରେ ମଜ୍ଜି ରହି ଅନ୍ୟର ଯୋଗ୍ୟତା ବାବଦରେ ଅଚେତନ ରହୁଥିଲେ । ତଥାପି ପିଲାମାନଙ୍କ ହୃଦୟରେ ଅଞ୍ଜନଙ୍କ ସ୍ଥାନ ଥିଲା ସ୍ୱତନ୍ତ୍ର । ଅଞ୍ଜନଙ୍କ ଛାତ୍ରଛାତ୍ରୀମାନଙ୍କ ପରି ମୁଁ ମଧ୍ୟ ମନେରଖିଛି ସେ କେମିତି ତର୍କଶାସ୍ତ୍ର ଓ ଅନ୍ୟାନ୍ୟ ପାଠ ପଢ଼ାଉଥିଲେ । ସୋପାନ ପରେ ସୋପାନ ସେ ଆଗେଇ ଚାଲିବେ, କିଛି ଅବୁଝା ରଖିବେ ନାହିଁ, କଠିନ ବିଷୟକୁ ଆକର୍ଷଣୀୟ ଭାବେ ପରିବେଷଣ କରିବେ ଯେମିତି ସବୁକିଛି ସହଜ ଓ ସ୍ପଷ୍ଟ ହୋଇଯିବ ।"

"ଅଞ୍ଜନଙ୍କର ଦଶଟି ପ୍ରବନ୍ଧ ପ୍ରକାଶନ ଅପେକ୍ଷାରେ ରହିଗଲା । ତାଙ୍କର ପ୍ରକାଶିତ ଲେଖାମାନ ବହୁଚର୍ଚ୍ଚିତ ଥିଲା । Prior, Cresswell, Pledger, Leberberg, Wronski, Zeman, Thomason ଙ୍କ ପରି ଗବେଷକମାନେ ତାଙ୍କ ଲେଖାକୁ ସହାୟକ ଉତ୍ସ ଭାବରେ ବ୍ୟବହାର କରିଛନ୍ତି ।"

"ଅନେକଙ୍କୁ ଜଣାନଥିବ ଯେ ଅଞ୍ଜନ ହାଇଡଗେରଙ୍କର ଜଣେ ଉଚ୍ଚ ପ୍ରଶଂସକ ଥିଲେ ଓ ଜେନ୍ (Zen) ପରମ୍ପରାରେ ଆଗ୍ରହ ରଖୁଥିଲେ । ମୋର ମନେଅଛି, ଥରେ ସେ ତାଙ୍କର ଗୋଟିଏ ଛାତ୍ର ଉପରେ ପାଟିକଲେ କାରଣ ପିଲାଟି ସାହିତ୍ୟ ଉପରେ ସାର୍ତ୍ରେଙ୍କର ଲେଖାମାନ ଭଲଭାବରେ ପଢିନଥିଲା ।"

"ବିଶ୍ୱଭାରତୀ ପରିସର ଠାରୁ ଦୂରେଇ ଗୋଟିଏ ଗାଁରେ ସେ ଘରଟିଏ କିଣି ସେଠାରେ ଏକା ରହୁଥିଲେ ଓ ସାଇକେଲ ଚଳାଇ ଯିବା ଆସିବା କରୁଥିଲେ । ତାଙ୍କର ଜନୈକ ଛାତ୍ର ଯିଏ ତାଙ୍କର ସବୁଠୁ ବେଶୀ ଘନିଷ୍ଠ ଥିଲା, ଦିନେ ପଚାରିଲା ଯେ ସେ କାହିଁକି ଏପରି ଏକାନ୍ତରେ ରହୁଛନ୍ତି ବୋଲି । ଅଞ୍ଜନ ଦିଗନ୍ତରେ ଅସ୍ତଗାମୀ ସୂର୍ଯ୍ୟ ଆଡକୁ ଇସାରା କଲେ ଓ ଈଷତ୍ ହସି କହିଲେ, ଏମିତି କମନୀୟ ଶୋଭା କେବଳ ଏକାନ୍ତରେ ହିଁ ଉପଭୋଗ କରିହୁଏ । ଏହା କେବଳ ଏକ ପ୍ରଶ୍ନର ଉତ୍ତର ନଥିଲା, ଇଏ ଥିଲା ତାଙ୍କ ପ୍ରକୃତ ଜୀବନ ।"

"ଯେତେବେଳେ ଅଞ୍ଜନଙ୍କ ମୃତ୍ୟୁର ଖବର ପାଇଲି ଧାଡ଼ିଟିଏ ମନେ ପଡ଼ିଗଲା - 'This man decided not to live but to know' । ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିବା ଜଣେ ବିଶିଷ୍ଟ ତର୍କଶାସ୍ତ୍ରୀ ଚାଲିଗଲେ, ସେଇଠାକୁ ଯେଉଁଠାକୁ ସର୍ଜନଶୀଳ ତର୍କଶାସ୍ତ୍ରୀମାନେ ଯାଆନ୍ତି ନିଜ ନିଜ ମୃତ୍ୟୁ ପରେ, ଆଉ ପଛରେ ଛାଡ଼ି ଯାଆନ୍ତି ତାଙ୍କର ପ୍ରଶଂସକ ଓ ସମାଲୋଚକମାନଙ୍କୁ ଶୋକ କରିବା ପାଇଁ । ବ୍ରାଉନିଂଙ୍କ କବିତାର ଉପରୋକ୍ତ ଉଦ୍ଧୃତିଟି ଉପଯୁକ୍ତ ମନେହେବ ଯଦି ଜଣେ ଅଞ୍ଜନଙ୍କ ଜୀବନର ତୀର୍ଥଯାତ୍ରାକୁ ବୁଝିଥିବ । ତାଙ୍କ ଚାରିପାଖରେ ଥିବା ଭଣ୍ଡାମି, କପଟତା, ନୀଚତା ଭରା ଦୁନିଆର ସେ ଥିଲେ ଜଣେ ଜୀବନ୍ତ ସମାଲୋଚକ । ତାଙ୍କ ଜୀବନରେ ଥିଲା ନିଷ୍କପଟ ଓ ବିଶୁଦ୍ଧ ଆବେଗ ପାଇଁ ଏକ ତୀବ୍ର ଅଭିଳାଷ ।"

**ବି.ଦ୍ର: ପ୍ରସିଦ୍ଧ ଲେଖକ ପବିତ୍ର କୁମାର ରାୟଙ୍କ ଲେଖା [Anjan Shukla (1938 - 1985), A Logician's Funeral" (Indian Philosophical Quartely, Vol. X111, No. 1, Jan.-March 1986)] କୁ ଅବଲମ୍ବନ କରି ମୁଁ ଏହି ଅଧ୍ୟାୟଟି ଲେଖିଛି । ଶ୍ରୀଯୁକ୍ତ ରାୟ ଦାର୍ଜିଲିଂସ୍ଥିତ University of North Bengal ଦର୍ଶନ ବିଭାଗରେ ଅଧ୍ୟାପନା ଓ ଗବେଷଣା କରନ୍ତି ।**

ଡ. ଅଞ୍ଜନ ଶୁକ୍ଳାଙ୍କର ଜୀବନ ବିଷୟରେ ତଥ୍ୟ ମୋତେ ଯୋଗାଇ ଦେଇଥିଲେ ତାଙ୍କର ଦୁଇ ବିଦ୍ୟାର୍ଥୀ - ବିଜୟ ମୁଖାର୍ଜୀ ଓ ରତ୍ନାବଳୀ ରାୟ । ସେମାନଙ୍କୁ ଧନ୍ୟବାଦ ଜଣାଉଛି ।

# ମୋନା ମାସୀ

ମୈତ୍ରୀ ଶୁକ୍ଳା, ଯାହାଙ୍କୁ ମୁଁ ସ୍ନେହରେ ମୋନା ମାସୀ ବୋଲି ଡ଼ାକୁଥିଲି, ମୋ ମାଆଙ୍କର ଅତି ଅନ୍ତରଙ୍ଗ ଥିଲେ । ତାଙ୍କ ସହ ମୋର ଅନେକ ଅନ୍ତରଙ୍ଗ ବାର୍ତ୍ତାଳାପ ହୋଇଛି । ମୁଁ ତାଙ୍କୁ ବହୁତ ଭଲ ପାଉଥିଲି । ସେ ବି ମୋତେ ଭାରି ଶ୍ରଦ୍ଧା କରୁଥିଲେ । ସେ ଥିଲେ ଜଣେ ବିଦୁଷୀ ମହିଳା । ସେ ଥିଲେ ଜଣେ ସାହିତ୍ୟିକା । ସେ ଏକାଧାରରେ ଥିଲେ ଜଣେ ଲେଖିକା, କଳାକାର, ହୋମିଓପାଥି ଚିକିତ୍ସକ, ପ୍ରକାଶକ, ଖଣି ମାଲିକ, ଧୁରୀଣ ରାନ୍ଧୁଣିଆ, ବିଶେଷ କରି ଆଚାର ବନେଇବାରେ ସିଦ୍ଧହସ୍ତ । ଏହାଠାରୁ ବଳି ଅଧିକ ସଫଳତା କ'ଣ ହୋଇପାରେ ? ସେ ମୋତେ ଅନେକ ମାତ୍ରାରେ ପ୍ରଭାବିତ କରିଥିଲେ । ମୋ ମତରେ ଫକୀରମୋହନ ସେନାପତିଙ୍କ ପରି ବହୁମୁଖୀ ପ୍ରତିଭା ଆମ ପରିବାରରେ ତାଙ୍କର ହିଁ ଥିଲା । ସେ ଫକରୀମୋହନଙ୍କ କୃତ 'ଛ ମାଣ ଆଠଗୁଣ୍ଠ' କୁ ବଙ୍ଗଳାରେ ଅନୁବାଦ କରିଥିଲେ । ତାଙ୍କ ବହି 'ସାହିତ୍ୟ ଏକାଡ଼େମୀ' ଦ୍ୱାରା ପୁରସ୍କୃତ ହେଲା । ୧୯୭୦ ଦଶକରେ ସେ ଯେଉଁ ବର୍ଷ ଏ ପୁରସ୍କାର ପାଇବା ପାଇଁ ଦିଲ୍ଲୀ ଆସିଥିଲେ ସେ ମୋରି ପାଖରେ ରହିଥିଲେ । ଏବେ ସେ କଥା ଭାବିଲେ ଗର୍ବ ଅନୁଭବ କରେ । ଏବେ ମୁଁ ସାରା ବିଶ୍ୱ ବୁଲିସାରିଲିଣି କିନ୍ତୁ ମୁଁ ଏବେ ବି କହିବି, ମୋନା ମାସୀ ପରି ଆଉ ଏକ ଚିତ୍ତାକର୍ଷକ ବ୍ୟକ୍ତିତ୍ୱ ମୋତେ ଏ ଯାଏଁ ମିଳି ନାହାନ୍ତି । ଯେମିତି ଆଗରୁ କହିଛି, ତାଙ୍କଠାରେ ଅନେକ ଗୁଣର ସମାବେଶ ଘଟିଥିଲା । ବୋଧହୁଏ ଆହୁରି ଅନେକ କଥା ଥିବ ଯାହା ପ୍ରକାଶିତ ହୋଇ ପାରିଲା ନାହିଁ ।

ଏବେ ଭାବିବସିଲେ ମନେ ହେଉଛି ସେ କେତେ ଭଲ ଗପ କହି ପାରୁଥିଲେ । ସେ ବାଖରାବାଦ ଘରକୁ ଅନେକ ସମୟରେ ଆସୁଥିଲେ । ତେଣୁ ତାଙ୍କ ସହ ସମୟ ବିତେଇବା ପାଇଁ ମୋତେ ସୁଯୋଗ ମିଳୁଥିଲା । ବିଶେଷ କରି ଶୋଇବା ବେଳେ ମଶାରି ଭିତରେ ସେ ଖୋଲିବେ ତାଙ୍କ କଥା ପେଡ଼ି । ସେ କହିବେ ତାଙ୍କ ବଡ଼ବିଲ ଖଣି ଅଞ୍ଚଳକୁ ଯିବା ବେଳର କଥା । ପ୍ରଚଳିତ ପରମ୍ପରାଠାରୁ ତାଙ୍କର ବେଶଭୂଷା, ଆଚାରବ୍ୟବହାର ଭିନ୍ନ ଥିବାରୁ ଦେଖି ସେଠାକାର ଲୋକେ ତାଙ୍କୁ ଡାହାଣୀ ବୋଲି ଭାବିନେଇ ଥିଲେ । ତାଙ୍କ କଥାର ବିଷୟ ସବୁ ଭାରି ରୋଚକ ଥିଲା । ଆହୁରି ସୁନ୍ଦର ଥିଲା ତାଙ୍କର କହିବାର

ଶୈଳୀ । ଆଖି ମିଟି ମିଟି କରି ମୁଁ ତାଙ୍କ ଗପ ଶୁଣିଯାଉଥିଲି । ଚକିତ ହୋଇଯାଉଥିଲି । ଭୁଲିଥାଆନ୍ତି କେମିତ ଯେ । ଏବେ ମୁଁ ନିଜେ ଜେଜେମାଆ ହେଲିଣି । ଆମେରିକାରେ ରହୁଥିବା ମୋର ନାତିନାତୁଣୀଙ୍କୁ ସେ ଗପ ପୁଣି ଶୁଣେଇବାର ସୁଯୋଗ ମୁଁ କେବେ ହାତଛଡ଼ା କରେ ନାହିଁ ।

ମୋ ବଡ଼ ନାତିକୁ ଦଶ ବର୍ଷ ହେଲାଣି । କାଲିଫର୍ଣ୍ଣିଆର ବେ ଏରିଆରେ ସେ ବଢୁଛି କମ୍ପ୍ୟୁଟର ଓ ରୋବୋଟ ମାନଙ୍କ ଗହଣରେ (ଏବେ ଯୋଗ ଦେଇଛି ଆଲେକ୍ସା) । ତା'ର ଚଞ୍ଚଳ ଶିଶୁ ମନରେ ଆର ୨ଡି୨, ଷ୍ଟାର୍ ୱାର୍ ଓ ଡିଜନୀ ଲ୍ୟାଣ୍ଡର ଆଧିପତ୍ୟ । ଏସବୁ ସତ୍ତ୍ୱେ ସେ ତା' ଜେଜେମାଆ ଠୁଁ ପୁରୁଣା କଥା ସବୁ ଶୁଣି ମୁଗ୍ଧ ହେଉଛି । ମୋତେ ଲାଗିଲା ଯେମିତି ଏକ ନୂତନ ସତ୍ୟ ମୋ ଆଗରେ ପ୍ରକଟିତ ହେଲା । ବୋଧହୁଏ ଏମିତି ସମୟରେ ହିଁ ମଣିଷର ପ୍ରକୃତ ସ୍ୱଭାବ ସାମ୍ନାକୁ ଆସେ । ଭାଗ୍ୟର କଥା ଯେ ଯେଉଁ ମାନବୀୟ ସତ୍ତାଟି ବିଭିନ୍ନ ପ୍ରକାର ମୌଳିକ ଭାବାବେଗ ଉଦ୍ରେକ କରେ ତାହା ଏବେ ମଧ୍ୟ ଅକ୍ଷୁଣ୍ଣ ରହିଛି ।

ଫେରିବା ମୋନା ମାସୀଙ୍କ ଖଣି ଅଞ୍ଚଳର କାହାଣୀକୁ । ଓଡ଼ିଶାର ଏକ ଖଣି ମାଲିକ ହିସାବରେ, ସେ ହେଉଛନ୍ତି ବଡ଼ବିଲ ଅଞ୍ଚଳର । ଲୋକେ ଭାବୁଥିଲେ ତାଙ୍କର ଅଲୌକିକ ଶକ୍ତି ରହିଛି । କାରଣ ସେ ତାଙ୍କର ହୋମିଓପାଥି ବିଦ୍ୟା ବଳରେ ମାତ୍ର ଗୋଟିଏ ପାନ ମିଠା ଔଷଧ ଦେଇ ରୋଗୀଙ୍କୁ ସମ୍ପୂର୍ଣ୍ଣ ଭଲ କରିଦେଉଥିଲେ । ଅନେକଙ୍କୁ ବୋଧ ହୁଏ ଜଣା ନଥିବ ଯେ ଗୋଟିଏ ପାନ ଦମଦାର ଔଷଧ ଖାଇଲେ ଦୀର୍ଘ ଦିନ ଧରି ଲାଗିରହିଥିବା ବେମାରୀରେ ଆଶ୍ୱସ୍ତି ମିଳିଯାଏ ।

ଖାଲି ମୁଁ କାହିଁକି, କଟକରେ ଅନ୍ୟ ଲୋକେ ଆଜି ମଧ୍ୟ ମୋନା ମାସୀଙ୍କର ଏହି ଗୁଣର ପ୍ରଶଂସା କରିବେ । ଅନେକ ଦିନ ଧରି ତାଙ୍କୁ ଲୋକେ 'ପାନିକିଆ ଡାକ୍ତର' କହୁଥିଲେ କାରଣ ସେ ମାତ୍ର ଗୋଟିଏ ପାନ ଔଷଧ ଦେଉଥିଲେ । ମୋନା ମାସୀ ଖୁବ ଆଗରୁ ହିଁ ବିଧବା ହୋଇଗଲେ । ତାଙ୍କ ବେଶଭୂଷା ଅଜବ ଥିଲା । ପ୍ରଚଳିତ ପରମ୍ପରାରୁ ହଟି ସେ ଗୋଟେ ଲୁଙ୍ଗି ଓ ଟପ୍ ପିନ୍ଧୁଥିଲେ । ଆଜିର ଦିନରେ ଏଭଳି ପୋଷାକ ପରିଧାନ କରିବାର ଏକ ଉତ୍ତର ଆଧୁନିକ ଫେସନରେ ପରିଗଣିତ ହେଉଛି । ଦେଖିବାକୁ ଗଲେ ସେ ହେଉଛନ୍ତି ଏଭଳି ଅଣପାରମ୍ପରିକ ଫେସନଯୁକ୍ତ ପୋଷାକ ବ୍ୟବସ୍ଥାର ଟ୍ରେଣ୍ଡସେଟର୍ ବା ଆଦ୍ୟ ପ୍ରବର୍ତ୍ତକ । ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ପୂର୍ବରୁ ଜଣେ ଓଡ଼ିଆ ମହିଳା ଓଡ଼ିଶାରେ ଏଭଳି ପୋଷାକ ପିନ୍ଧିବା ଏକ ଦୁଃସାହସିକତାମୂଳକ ଦୃଷ୍ଟାନ୍ତ । ୧୯୫୦ ଦଶନ୍ଧିରେ କୌଣସି ମହିଳାର ଏପରି ବେଶଭୂଷା କଳ୍ପନା କରି ହେଉନାହିଁ । ଏହା ସହିତ ଖଣି ଚଳାଇବାରେ

ସେ ପୁରୁଷଙ୍କଠାରୁ କିଛି କମ୍ ନଥିଲେ । ଏଇଟା ସ୍ଥାନୀୟ ଆଦିବାସୀ ଲୋକଙ୍କୁ ଭାରି ଆଶ୍ଚର୍ଯ୍ୟବୋଧ ହେଉଥିଲା । ଏ ମହିଳାଟି ମଣିଷ ନା କୌଣସି ଅତିମାନବୀ ଜାଣିବା ପାଇଁ ସେମାନେ ପରୀକ୍ଷା କରିବେ ବୋଲି ଭାବିଲେ । ତେଣୁ ଦିନେ ଗୋଟେ ନଦୀ କୂଳରେ ସେମାନେ ଏକ ପୂଜାର ଆୟୋଜନ କଲେ । ଗୋଟିଏ ବଡ଼ ମାଟି ହାଣ୍ଡିରେ ସିନ୍ଦୂର ବୋଳା ହୋଇଥାଏ । ନଡ଼ିଆ, ଫୁଲ ଓ ଆଉ ଯାହା ସବୁ ସରଞ୍ଜାମ ଏପରି ପୂଜାରେ ଲାଗେ ଏକାଠି କରି ସେମାନେ ଅପେକ୍ଷା କଲେ କେତେବେଳେ ମୋନା ମାସୀ ସେ ବାଟ ଦେଇଯିବେ ଓ ଦେଖେଇ ଦେବେ ସମସ୍ତଙ୍କୁ ଯେ ତାହା ତାଙ୍କର କୌଣସି କ୍ଷତି ହେଉ ନାହିଁ । ଯଦି ସେ ମଣିଷ ତେବେ ତାଙ୍କର ପ୍ରାଣ ଯିବ । ଅନ୍ୟଥା ହୋଇଥିଲେ ହିଁ ସେ ବର୍ତ୍ତିପାରିବେ । ମୋନା ମାସୀଙ୍କୁ ଏହି ଆୟୋଜନର ଖବର ମିଳିଗଲା । ତାଙ୍କର ଚିରାଚରିତ ପ୍ରଶାନ୍ତ ସ୍ୱାଭାବରେ ସେ ନିଷ୍ପତ୍ତି ନେଲେ ଯେ ସେ ସେହି ବାଟ ଦେଇ ଯିବେ ଓ ଦେଖେଇ ଦେବେ ସମସ୍ତଙ୍କୁ ଯେ ତାଙ୍କର କୌଣସି କ୍ଷତି ଘଟି ନାହିଁ । ତେଣୁ ସେ ଚାଲିଗଲେ ସେଠାକୁ ଆଉ ସେ ମାଟି ହାଣ୍ଡିକୁ ମାରିଲେ ଗୋଇଠାଟେ । ସେଠାକାର ଲୋକଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେମାନେ ମାସୀଙ୍କ ଆଗରେ ମୁଣ୍ଡ ନୁଆଁଇଲେ । କେତେ ଜଣ ଡରି ତାଙ୍କର ପାଦ ଛୁଇଁ ପ୍ରଣାମ କରିବାକୁ ଚେଷ୍ଟା କଲେ । ତା'ପରେ ଅନେକ ସମୟରେ ମୁଁ ଦେଖିଛି ମୋନା ମାସୀ ଗୋଟିଏ ସାଦା ଗେରୁଆ ରଙ୍ଗର ଶାଢ଼ୀ ପିନ୍ଧିବାର । ଦୁଇଟି ଘଟଣାକୁ ଏକାଠି କରି ଭାବିବା କଥା ମୋ ମୁଣ୍ଡକୁ କେବେ ଜୁଟୁ ନଥିଲା । ଏବେ ଭାବିଲେ ଲାଗୁଛି ଏହି ଦୁଇଟି କଥା ଭିତରେ କିଛି ସମ୍ପର୍କ ଥିବ ।

ଆହୁରି ମଧ ଅନେକ କଥା ଅଛି । କେନ୍ଦୁଝରର ବଡ଼ବିଲ ଖଣିଅଞ୍ଚଳରେ ସେ ଶୋଇଥିବା ବେଳେ ତାଙ୍କର ମଶାରି ଉପରେ ବଡ଼ ବଡ଼ ସାପ ଶୋଇଥିବାର ସେ ଦେଖୁଥିଲେ । ଖଣି ଅଞ୍ଚଳ ଅଭ୍ୟନ୍ତରରେ ଥିବା ଗାଁଗୁଡ଼ିକରେ ତାଙ୍କର ରହଣି ସମୟରେ ଏପରି ଦୃଶ୍ୟ ଦେଖି ସେ ବିଚଳିତ ହୋଇନଥିଲେ । ସେ କହୁଥିଲେ ସାପବେଙ୍ଗଙ୍କ ପରି ସାଧାରଣତଃ ନିରୀହ ପ୍ରାଣୀଙ୍କ କଥା ଚିନ୍ତା କରିବା ଅପେକ୍ଷା ତାଙ୍କ ଶୋଇବାଟା ଗୁରୁତ୍ୱପୂର୍ଣ୍ଣ ଥିଲା । ଆଠ ଦଶ ବର୍ଷ ବୟସର କୌଣସି ଶିଶୁକୁ ସ୍ତମ୍ଭୀଭୂତ କରିବା ପାଇଁ ଏସବୁ କଥା ଯଥେଷ୍ଟ ନୁହେଁ କି ? ଏତେ ବର୍ଷ ଧରି ମୋ ମନରେ ତାଙ୍କ କାହାଣୀମାନ ସାଇତା ହୋଇ ରହିଛି । ତାଙ୍କ ଗପ କହିବାର ସ୍ମୃତି ମୋ ମନର ଗଭୀରତମ ଇଲାକାରେ ଡେରା ଜମାଇ ରହିଛି ।

ମୈତ୍ରୀ ଶୁକ୍ଳା ଜଣେ ସ୍ୱତନ୍ତ ଧରଣର ମହିଳା ଥିଲେ । ବହୁମୁଖୀ କାର୍ଯ୍ୟକଳାପ ସହିତ ତାଙ୍କର ସ୍ୱଭାବଗତ ବୈଶିଷ୍ଟ୍ୟ ତାଙ୍କୁ ସ୍ୱତନ୍ତ୍ର କରିଦେଇଥିଲା । ତିନି ଭଉଣୀ - ମୋ ମାଆ ବୀଣାପାଣି, ମାୟା ଓ ମୈତ୍ରୀ ନିଜ ନିଜ ଭିତରେ ଯୁକ୍ତିତର୍କ କରି ମଜା ନେଉଥିଲେ ।

ପିଲାବେଳେ ଏମାନଙ୍କ ଝଗଡ଼ା ଦେଖିବାକୁ ମୋତେ ବି ମଜା ଲାଗୁଥିଲା । ଏମାନଙ୍କର ସବୁଠୁ ବଡ଼ ଭଉଣୀ, ମୀରା ଅଳ୍ପ ବୟସରେ ହିଁ ଏକ ଦୁର୍ଘଟଣାରେ ମୃତ୍ୟୁବରଣ କରିଥିଲେ । ତିନି ଜଣଙ୍କ ଭିତରୁ ମାୟା ଟିକେ କମ୍ କଥା କହୁଥିଲେ । ଅନ୍ୟ ଦି' ଜଣ ପୂରା ଖାମଖିଆଲୀ । ମୋନା ମାସୀ ମୋ ମାଆଙ୍କର ଅତି ଘନିଷ୍ଠ ଥିଲେ । କିନ୍ତୁ ତାଙ୍କ ଭିତରେ ପ୍ରାୟ କଳିକଜିଆ ଲାଗିଯାଉଥିଲା । ମୋନା ମାସୀ ରାଗ ତମତମ ହୋଇ ଘରୁ ବାହାରି ଯିବେ । କିନ୍ତୁ ତାଙ୍କର ଗୋଟେ ପାଦରେ ଗୋଦର ରୋଗ ଧରିଥିବାରୁ ତାଙ୍କୁ ଚପଲ ପିନ୍ଧିବାକୁ ଟିକେ କଷ୍ଟ ହେଉଥିଲା । ଅବଶ୍ୟ ସେ ତାଙ୍କ ପାଦ ମାପର ଜୋତା କଲିକତାର ଚୀନା ମୋଚିଙ୍କ ଠାରୁ ବନେଇକି ଆଣିଥିଲେ । କିନ୍ତୁ ଝଗଡ଼ାବେଳେ ସେ ଅକସ୍ମାତ ତାଙ୍କ ଚପଲ ଗଳେଇ ଘରୁ ବାହରିଯିବେ । ପୁଣି ଝଗଡ଼ାର ପର ଦିନ ମୋନା ମାସୀ ମୋ ମାଆଙ୍କୁ ପସନ୍ଦ ହେଲା ଭଳି ନିଜ ହାତତିଆରି ପରଟା ଓ ସ୍ୱାଦଯୁକ୍ତ ତରକାରୀ ଆଣି ମାଆଙ୍କୁ ପରଷି ଦେଉଥିବେ । ମାଆ ସେ ସବୁ ଖୁସିରେ ଗ୍ରହଣ କରି ପୂର୍ବ ଦିନ ଘଟଣାକୁ ପୂରାପୂରି ବିସ୍ମରି ଯାଉଥିବେ । ଏଭଳି ନାଟକୀୟ ଘଟଣା ଦେଖି ସେତେବେଳେ ମୁଁ ମନେମନେ ଖୁବ ଖୁସି ହେଉଥିଲି । ଦିହେଁ ଦିହିଁଙ୍କର ପରମ ବନ୍ଧୁ ହୋଇ ବଡ଼ ଶ୍ରଦ୍ଧାରେ ଘରତିଆରି ଖାଇବା ବାଣ୍ଟିକୁଣ୍ଟି ଖାଉଥିଲେ ।

ଏଇ କିଛି ଦିନ ପୂର୍ବେ ଡକ୍ଟର ନିର୍ମଳକାନ୍ତି ଭଟ୍ଟାଚାର୍ଯ୍ୟଙ୍କୁ ଭେଟିବାର ସୁଯୋଗ ମିଳିଥିଲା । ସେ ଏନ୍.ବି.ଟି (National Book Trust) ର ନିର୍ଦ୍ଦେଶକ ଥିଲେ । ପରବର୍ତ୍ତୀ ସମୟରେ ସାହିତ୍ୟ ଆକାଡେମୀରେ ସଚିବ ମଧ୍ୟ ହୋଇଥିଲେ । ଏପରି ଆଉ କେତୋଟି ପଦବୀରେ ରହି ସେ ଦାୟିତ୍ୱ ନିର୍ବାହ କରିଛନ୍ତି । ଆମେ କଥା ହେଉ ହେଉ ଫକୀରମୋହନ ସେନାପତିଙ୍କ ପରିବାର ବିଷୟରେ କଥା ପଡ଼ିଲା । ସେ ମୋତେ ମୋନା ମାଉସୀଙ୍କ ବିଷୟରେ କେତୋଟି କଥା କହିଲେ ଯାହା ମୋତେ ଆଗରୁ ଜଣା ନଥିଲା । ସେ କହିଲେ ଯେ ମୈତ୍ରୀ ଶୁକ୍ଳା ଦୁଇ ଦିଗ୍‌ଗଜଙ୍କର ଝିଅ ତଥା ନାତୁଣୀ ହୋଇଥିଲେ ମଧ୍ୟ ଭାରି ନମ୍ର ଥିଲେ । 'ଛମାଣ ଆଠଗୁଣ୍ଠ'ର ବଙ୍ଗଳା ଅନୁବାଦର ପାଣ୍ଡୁଲିପି ପ୍ରକାଶନ ପାଇଁ ଦାଖଲ କରି ସାରିବା ପରେ ସେ ବହିଟିର ପ୍ରକାଶନ କେବେ କେମିତି ହେବ ପଚାରିବା ପାଇଁ ତାଙ୍କ ପାଖକୁ ଆସୁଥିଲେ । ଶ୍ରୀଯୁକ୍ତ ଭଟ୍ଟାଚାର୍ଯ୍ୟ ସେତେବେଳେ ସେହି ପ୍ରକାଶନ ସଂସ୍ଥାରେ କାମ କରୁଥାଆନ୍ତି । ବିଭିନ୍ନ କାରଣରୁ ପ୍ରକାଶନରେ ଅନେକ ବିଳମ୍ବ ହେଉଥିଲା । କିନ୍ତୁ ମୈତ୍ରୀ ଶୁକ୍ଳା କେବେ ଧୈର୍ଯ୍ୟ ହରାଇ ନଥିଲେ କି ରୁକ୍ଷ ଆଚରଣ କରି ନଥିଲେ । ବହିଟିର ପ୍ରକାଶନ ଖବର ଜାଣିବା ପାଇଁ ସେ ବାରମ୍ବାର ଭୁବନେଶ୍ୱରରୁ କଲିକତା ଆସୁଥିଲେ । ଆହୁରି ମଧ୍ୟ, ଶ୍ରୀଯୁକ୍ତ ଭଟ୍ଟାଚାର୍ଯ୍ୟଙ୍କ କହିବା ଅନୁଯାୟୀ, ଫକୀରମୋହନ ସେନାପତିଙ୍କ ଉପରେ କେତୋଟି ମହତ୍ୱପୂର୍ଣ୍ଣ ବହି ଲେଖାରେ ମୈତ୍ରୀ ଶୁକ୍ଳା ସହାୟତା କରିଥିଲେ ।

ମୂଳରୁ ଶେଷ ଯାଏଁ ତାଙ୍କ କାମକୁ ସେ ନିଖୁଣ ଭାବେ କରିଥିଲେ । ମାଉସୀଙ୍କ ବିଷୟରେ ଏପରି ଭଲ କଥା ଶୁଣି ମୁଁ ସେଦିନ ଖୁସି ହୋଇଥିଲି । ମୁଁ ଦିଲ୍ଲୀରେ ରହୁଥିବା ବେଳେ ମୋନା ମାସୀ ମୋ ସହ ରହିବାକୁ ଆସିଥିଲେ । ଫକୀରମୋହନ ସେନାପତିଙ୍କ 'ଛମାଣ ଆଠଗୁଣ୍ଠ' ବହିର ବଙ୍ଗଳା ଅନୁବାଦ ପାଇଁ ସେ ସାହିତ୍ୟ ଆକାଡେମୀ ପୁରସ୍କାର ଗ୍ରହଣ କରିବା ପାଇଁ ଦିଲ୍ଲୀସ୍ଥିତ ଆମ ବାସଗୃହକୁ ଆସିଥିଲେ ।

କେତେ ବିଚିତ୍ର କଥା ଯେ, ଅନେକ ବର୍ଷ ପରେ ମୋର ପୁଣି ଥରେ ସଂଯୋଗବଶତଃ ଦେଖା ହେଲା ନିର୍ମଳକାନ୍ତି ଭଟ୍ଟାଚାର୍ଯ୍ୟଙ୍କ ସହ । ଫକୀରମୋହନ ସେନାପତିଙ୍କ ସମ୍ବନ୍ଧିତ ଲେଖା ସବୁ ସଙ୍କଳନ କରିବା ପାଇଁ ଯେଉଁ ସମ୍ପାଦକୀୟ ମଣ୍ଡଳୀ ଗଠନ କରିଥିଲି । ତାହାର ଅଧ୍ୟକ୍ଷତା କରିବା ନିମନ୍ତେ ମୁଁ ଶ୍ରୀଯୁକ୍ତ ଭଟ୍ଟାଚାର୍ଯ୍ୟଙ୍କୁ ଅନୁରୋଧ କଲି । ସେ ମୋ ପ୍ରସ୍ତାବରେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ ଏବଂ ଏବେ କାମଟି ସୁରୁଖୁରୁରେ ଚାଲିଛି । ଅନେକ ସାହିତ୍ୟିକ ସେ କାମରେ ସାହାଯ୍ୟର ହାତ ବଢାଇଛନ୍ତି । ସେମାନଙ୍କ ମଧ୍ୟରୁ କେତେ ଜଣ ହେଲେ - ପ୍ରଫେସର ଯତୀନ୍ଦ୍ର କୁମାର ନାୟକ, ପ୍ରଫେସର ଦେବେନ୍ଦ୍ର ଦାଶ, ଦାଶ ବେନହୁର, ଅସିତ ମହାନ୍ତି ତଥା ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ଡ. ରବୀନ୍ଦ୍ର କୁମାର ଦାସ । ଶ୍ରୀଯୁକ୍ତ ଭଟ୍ଟାଚାର୍ଯ୍ୟଙ୍କ ସହ ବିଗତ ଦିନଗୁଡ଼ିକ ବିଷୟରେ ବାର୍ତ୍ତାଳାପ ବେଳେ ସେ ମୋନା ମାସୀଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାସୂଚକ ମନ୍ତବ୍ୟ ଦେଇଥିଲେ । କହିଲେ, 'ସେ ଥିଲେ ଜଣେ ପରଫେକ୍ସନିଷ୍ଟ୍' । ମାଉସୀଙ୍କ ବିଷୟରେ ଏପରି କଥା ଶୁଣି ସେଦିନ ମୁଁ ଭାରି ଖୁସି ହୋଇଥିଲି ।

ତାଙ୍କର ବହୁମୁଖୀ କାର୍ଯ୍ୟକ୍ରମ ସର୍ବଦା ଚାଲୁ ରହିଥିବାରୁ ମୋନା ମାସୀ ସବୁବେଳେ ହିଁ ଏଠୁ ସେଠିକି ଯାତ୍ରା କରୁଥାଆନ୍ତି । ତାଙ୍କ ପୁଅ, ପ୍ରାଧ୍ୟାପକ ଅଞ୍ଜନ ଶୁକ୍ଳା ଜଣେ ବିଦ୍ୱାନ ବ୍ୟକ୍ତି ଥିଲେ । ଅଧ୍ୟାପନା କରୁକରୁ ସେ ପରବର୍ତ୍ତୀ ସମୟରେ ଶାନ୍ତିନିକେତନ ଚାଲିଆସିଥିଲେ ଓ ସେଠାରେ କିଛି ବର୍ଷ ଅଧ୍ୟାପନା କଲା ପରେ ଭାରି ରହସ୍ୟଜନକ ଭାବେ ତାଙ୍କର ମୃତ୍ୟୁ ହେଲା । ଗୋଟିଏ ଆଲମାରିରେ ତାଙ୍କ ଶବ ବନ୍ଦ ହୋଇ ରହିଥିଲା । ସେ ସ୍କିଜୋଫ୍ରେନିଆ ରୋଗରେ ପୀଡିତ ଥିଲେ । ବହୁ ସମୟ ପରେ ଅନ୍ୟ ଲୋକ ଓ ମୋନା ମାସୀ ଜାଣିବାକୁ ପାଇଲେ ଯେ ସେ ଗୋଟିଏ ଝିଅର ଗୋଟେ ସ୍କୁଲରେ ନାମ ଲେଖାଇ ଥିଲେ । ନାମ ଲେଖାଇବା ବେଳେ ବାପାଙ୍କ ନାମ ଲେଖିବା ଜାଗାରେ ସେ ନିଜ ନାମ ଲେଖିଦେଇଥିଲେ । ଅଞ୍ଜନ ଶୁକ୍ଳା (ଯାହାଙ୍କୁ ଆମେ ପୁପୁ ଦାଦା ବୋଲି ଡାକୁଥିଲୁ) ମରିବା ପରେ ତାଙ୍କ ମାଆ ମୈତ୍ରୀ ଶୁକ୍ଳା ବାରମ୍ବାର ଶାନ୍ତିନିକେତନ ଯାଇ ଝିଅଟିର ଦେଖାଶୁଣା କରୁଥିଲେ ଓ ଆର୍ଥିକ ସାହାଯ୍ୟ ଯୋଗାଉଥିଲେ । ଅଞ୍ଜନ ଶୁକ୍ଳା ଜୀବିତ ଥିଲା ବେଳେ ମୁଁ ତାଙ୍କୁ ଭେଟିବାକୁ

ଅନେକ ଇଚ୍ଛା କରିଥିଲି । ଦୁର୍ଭାଗ୍ୟବଶତଃ କେବେ ଦେଖା ହୋଇପାରିଲାନି । ମୋନା ମାସୀ ଅନେକ ଦିନ ଯାଏଁ ଦୁଃଖୀ ହୋଇ ରହିଲେ । ବେଳେବେଳେ ଆମେ ତାଙ୍କ ଖବର ପାଉଥାଉ । କିନ୍ତୁ ଶେଷରେ ଶୁଣିବାକୁ ପାଇଲୁ ଯେ କିଛି ଦୁର୍ବୃତ୍ତ ତାଙ୍କର ବଡ଼ବିଲରେ ଥିବା ମାଙ୍ଗାନିଜ ଖଣିଗୁଡ଼ିକ ହାତେଇବା ପାଇଁ ତାଙ୍କୁ ଅପହରଣ କରି ନେଇଛନ୍ତି । ସେମାନେ କିନ୍ତୁ ତାଙ୍କର ଭଲ ଯତ୍ନ ନେଲେ । ସେ ରୋଗରେ ପଡ଼ିଥିଲା ବେଳେ ତାଙ୍କୁ ସେବା କରି ସୁସ୍ଥ କଲେ । ଆମେ ଜାଣିବାକୁ ପାଇଲୁ ଯେ ସେ ସେଠାରେ ଭାରି ଖୁସିରେ ଅଛନ୍ତି । ପ୍ରକୃତରେ ତାଙ୍କୁ ସେଠାରେ ରହିବାକୁ ଭଲ ଲାଗୁଥିଲା କାରଣ ସେ କାହାଠାରୁ ଆଗରୁ ଏତେ ସେବା ଯତ୍ନ ପାଇନଥିଲେ । କିନ୍ତୁ ଗୁଣ୍ଡାମାନଙ୍କର ଏମିତିକା ଭଲ ବ୍ୟବହାରର କାରଣଟା ସ୍ପଷ୍ଟ ଥିଲା । ମାସୀଙ୍କ ବୟସ ଏତେ ହୋଇଯାଇଥିଲା ଯେ ସେ ଏସବୁ ଗୂଢ଼ ଉଦ୍ଦେଶ୍ୟ ବୁଝିପାରୁ ନଥିଲେ । ତାଙ୍କର ଆନନ୍ଦ କିନ୍ତୁ ଅଳ୍ପ ଦିନ ପାଇଁ ହିଁ ରହିଲା । ଅପହରଣକାରୀମାନେ ମାଙ୍ଗାନିଜ୍ ଖଣିଗୁଡ଼ିକର ମାଲିକାନା ମାସୀଙ୍କ ଦସ୍ତଖତ ନେଇ ନିଜ ନାଁରେ କରିନେଲେ । କିଛି ଦିନ ପରେ ଆମେ ଖବର ପାଇଲୁ ଯେ ତାଙ୍କର ଦେହାନ୍ତ ଘଟିଛି । ଏ ଖବର ଶୁଣି ମୋତେ ଭାରି କଷ୍ଟ ହେଲା । ମୋତେ ଲାଗିଲା ଯେମିତି ମୋ ଦୁନିଆରୁ ଫାଳେ ଉଜୁଡ଼ି ଗଲା କାରଣ ସେ ମୋର ଜଣେ ଆଦର୍ଶସ୍ଥାନୀୟ ବ୍ୟକ୍ତି ଥିଲେ । ତାଙ୍କର ବୌଦ୍ଧିକ ପ୍ରଭାବରେ ମୋର ଅନେକ ଚିନ୍ତାଧାରା ସ୍ଥୂଳ ରୂପ ନେଇଥିଲା । କହିବାକୁ ଗଲେ ମୋ ଜୀବନର ଗୋଟିଏ ଅଧ୍ୟାୟର ପରିସମାପ୍ତି ଘଟିଲା । କିନ୍ତୁ ତାଙ୍କ ସ୍ମୃତି ଆଜି ବି ମୋ ମଧ୍ୟରେ ତାଜା ଅଛି । ଏବେ ୨୦୧୬ ରେ ତାଙ୍କ ଝିଅ ଗୋପା ହଠାତ୍ ଦିଲ୍ଲୀ ଆସି ମୋ ପାଖରେ ପହଞ୍ଚିଲେ । ପଚିଶ ବର୍ଷ ପରେ ଆମର ଏହି ଦେଖା ସାକ୍ଷାତ । ମୋନା ମାସୀଙ୍କ ଶେଷ ଦିନଗୁଡ଼ିକ ବିଷୟରେ ମୁଁ ତାଙ୍କୁ ପଚାରିଲି । ଜାଣିକି ଆଶ୍ଚର୍ଯ୍ୟ ଲାଗିଲା ଯେ ସେ ବି ତାଙ୍କ ମାଆଙ୍କୁ ଦେଖା କରିବାକୁ ଯାଇପାରିନଥିଲେ । କାରଣଟି ସ୍ପଷ୍ଟ । ଦେଖା କରିବାକୁ ତାଙ୍କୁ ସମ୍ପୂର୍ଣ୍ଣ ଭାବେ ବାରଣ କରାଯାଇଥିଲା । ଭୁବନେଶ୍ୱରରେ ରେଳ ଷ୍ଟେସନ ପାଖାପାଖି ମୋନା ମାସୀଙ୍କର ଯେଉଁ ଜମିବାଡ଼ି ଥିଲା ତାହାକୁ ଆଉ ଦଳେ ଗୁଣ୍ଡା ହାତେଇ ନେଲେ । ଗୋପା ଆଜି ଯାଏଁ ଜାଣନ୍ତି ନାହିଁ ତାଙ୍କ ମାଆଙ୍କ ଜିନିଷପତ୍ର କୁଆଡ଼େ ଗଲା । ମାସୀଙ୍କ ଝିଅର ଦୁଃଖ କଥା ଛାଡ଼ନ୍ତୁ, ମୁଁ ମଧ୍ୟ ଏକଥା ଜାଣି ଭାରି ଦୁଃଖିତ ହେଲି କାରଣ ମୁଁ ତ ମାସୀଙ୍କର ଅତି ଘନିଷ୍ଠ ଥିଲି । ଆଉ ତାଙ୍କ କାମ, ତାଙ୍କ ପେଣ୍ଟିଙ୍ଗ୍ ଇତ୍ୟାଦି ବିଷୟରେ ମଧ୍ୟ ସବୁ କିଛି ଜାଣିଥିଲି । ମୋର ଯଦି ଠିକ୍‌ରେ ମନେପଡୁଥାଏ ତେବେ ତାଙ୍କର ଚିତ୍ରଗୁଡ଼ିକ ଭିତରେ ଗୋଟିଏ ଥିଲା ତାଙ୍କ ମାଆ ତଥା ମୋ ଆଈଙ୍କ ଚିତ୍ର ଯେଉଁଟିକୁ ସେ ନିଜେ ଆଙ୍କିଥିଲେ । ହାୟ, ଯଦି ସେ ଗୁଣ୍ଡାମାନେ ତାଙ୍କ ଘର ଉପରେ କବଜା କରିବା ଆଗରୁ

ମାସୀଙ୍କ ନିଜ ଜିନିଷତକ ଫେରାଇ ଦେଇଥାଆନ୍ତେ ! ସେତକ ବି ସେମାନଙ୍କ ଠାରୁ ମିଳିଲା ନାହିଁ । ଏଇ ଦୁନିଆଟା ଏମିତି ହିଁ । ମୋନା ମାସୀଙ୍କର ପଢ଼ିବାରେ ଉତ୍ସାହ ଥିଲା । ବିଶେଷ କରି ହୋମିଓପାଥି ଉପରେ । ତାଙ୍କଠାରୁ ମୁଁ ହୋମିଓପାଥିର ଜନକ, ଜର୍ମାନୀ ଦେଶର ଲୋକ, ଡାକ୍ତର ହାନିମ୍ୟାନଙ୍କ ବିଷୟରେ ଜାଣିବାକୁ ପାଇଥିଲି । ସେ ସମ୍ବନ୍ଧିତ ବହିରେ ତାଙ୍କର ଗୋଟିଏ ଆଲମାରୀ ଭର୍ତ୍ତି ହୋଇ ରହିଥିଲା । ସେ ମୋତେ କହୁଥିଲେ "ତୋତା ! ମେଟେରିଆ ମେଡିକା ସହିତ ସମସ୍ତ କିଛି ମୁଁ ତୋ ନାଁ ରେ ଲେଖିଦେବି ।" ସେ ମୋତେ ଭାରି ଆଦର କରୁଥିଲେ । ମୋ ନାଁ ଦେଇଥିଲେ 'ତୋତା ପକ୍ଷୀ' । ଡାକୁଥିଲେ କିନ୍ତୁ 'ତୋତା' ବୋଲି । ବାଖରାବାଦ ଘରେ ସମସ୍ତେ ମୋତେ 'ପାଖି' ଡାକୁଥିଲେ । ଆଜି ବି କଟକରେ ରହୁଥିବା ମୋର ନିକଟତର ଲୋକେ ମୋତେ ପକ୍ଷୀ ବୋଲି ଜାଣନ୍ତି, ମନିକା ବୋଲି ନୁହେଁ । ମୋନା ମାସୀ ଆଉ ଗୋଟିଏ ନାଁ ବି ଦେଇଥିଲେ ମୋତେ - ରଜନୀଗନ୍ଧା ପୁଷ୍ପଦଣ୍ଡ । ମୋନା ମାସୀ ମୋତେ ଟିକେ ବେଶୀ ପସନ୍ଦ କରୁଥିବାରୁ ମୋର ଅନ୍ୟ ଭାଇ ଭଉଣୀମାନେ ଟିକେ ଈର୍ଷାନ୍ୱିତ ହେଉଥିଲେ । ଏବେ ଅବଶ୍ୟ ଆମେ ସବୁ ପରିଣତ ବୟସରେ ଉପନୀତ । ଗଙ୍ଗା ନଦୀର ବକ୍ଷରେ ଅନେକ ପାଣି ବହିସାରିଲାଣି । ସେସବୁ ଛୋଟମୋଟ କଥାକୁ ଆମେ ବି ପଛରେ ଛାଡ଼ି ଆସିଛୁ । କିନ୍ତୁ ମୁଁ ଆଜି ଯାହା ବି ହୋଇଛି ସେଇଟା କେତେକାଂଶରେ ମୋନା ମାସୀ ମୋ ଉପରେ ଅଧିକ ଧ୍ୟାନ ଦେବା ଯୋଗୁଁ । ମୋ ଉପରେ ତାଙ୍କର ଉତ୍ତମ ପ୍ରଭାବ ପଡ଼ିବା ଯୋଗୁଁ ହିଁ ସମ୍ଭବ ହୋଇପାରିଛି । କୁହାଯାଏ ଯେ ମଣିଷ ଜୀବନର ପ୍ରଥମ ଦଶ ବର୍ଷ ଭାରି ଗୁରୁତ୍ୱପୂର୍ଣ୍ଣ କାରଣ ସେଇ ସମୟରେ ପିଲା ଉପରେ ଯାହା ସବୁ ପ୍ରଭାବ ପଡ଼ିଥାଏ ତାହା ପିଲାର ଉତ୍ତର ଜୀବନକୁ ସମୃଦ୍ଧ କରିଥାଏ । ଏହା ମୋ ପାଇଁ ଅକ୍ଷରେ ଅକ୍ଷରେ ସତ ।

# ମୋ ବିଷୟରେ....

ମୁଁ ଗୋଟେ ଛୋଟିଆ ସହରର ଝିଅ । ଓଡ଼ିଶାର ଭୁବନେଶ୍ୱରରେ ବଢ଼ିଛି । ମୋ ପାଠପଢ଼ା ଆରମ୍ଭ ହୁଏ କଟକର ସେଣ୍ଟ ଜୋସେଫ କନଭେଣ୍ଟରେ । ତା'ପରେ ଭୁବନେଶ୍ୱରରେ । ମାଧ୍ୟମିକ ଶିକ୍ଷା ପାଇଁ ମୁଁ ଯାଏ ବାଲେଶ୍ୱର ବାରବାଟି ବାଳିକା ବିଦ୍ୟାଳୟକୁ, ଯେଉଁଠାରେ ମୋ ମାଆ ପ୍ରଧାନ ଶିକ୍ଷୟିତ୍ରୀ ଥିଲେ । ବାରବାଟିରୁ ହିଁ ମୁଁ ମାଟ୍ରିକ ପାଶ୍ କଲି । ସ୍କୁଲଟି ଯେଉଁ କୋଠାରେ ଥିଲା ସେଠାରେ ବାଘା ଯତୀନଙ୍କ ସ୍ମୃତିଚିହ୍ନ ମଧ୍ୟ ଥିଲା । ସ୍କୁଲ ପରିସରରେ ଅନେକ ପର୍ତ୍ତୁଗୀଜ ସ୍ମାରକୀ ଥିଲା । ସେଗୁଡ଼ିକୁ ସେଠାରେ ଅନ୍ୟ କେଉଁଠାରୁ ଆଣି ରଖା ଯାଇଥିଲା । ପ୍ରଧାନ ଶିକ୍ଷୟିତ୍ରୀ ଥିବା ମୋ ମାଆଙ୍କୁ ମିଳିଥିବା ବଙ୍ଗଳାରେ ମୁଁ ମୋ ବାପାମାଆଙ୍କ ସହ ରହୁଥିଲି । ଦୀର୍ଘ ଦଶ ବର୍ଷ ମୁଁ ସେଠାରେ କାଟିଛି । ସ୍କୁଲ ହତାକୁ ଘେରି ରହିଥିଲା ବିଶାଳ ପ୍ରାଚୀର । ସେଠାରେ ପିଲାଙ୍କ ପାଇଁ ଛାତ୍ରାବାସଟିଏ ମଧ୍ୟ ଥିଲା । ସନ୍ଧ୍ୟା ହେଲେ ନୋଟ୍ ଦିଆନିଆ କରୁଥିଲୁ । ବହୁତ କମ ଝିଅ ଥିଲେ ଯେଉଁମାନେ ମୋ ପରି ପଡ଼ୋଶୀ ପୁଅ ପିଲାଙ୍କ ସହ ସାଇକେଲ ଚଳାଉଥିଲେ, ଗଛ ଚଢୁଥିଲେ, ଘର ଛାତ ଉପରେ ଚଢୁଥିଲେ ଓ ଘର ପାଖ ଗଳିକନ୍ଦି ସବୁରେ କ'ଣ ଅଛି କ'ଣ ନାହିଁ ବୁଲି ଦେଖୁଥିଲେ । ଏହା ମୋର ଶୈଶବ କାଳର ଶିଶୁ ସୁଲଭ ଉତ୍ସୁକତାର ଗୋଟିଏ ନମୁନା । ମୁଁ ପିଲାଙ୍କ ସହ ମନ ଭରି ବ୍ୟାଡମିଣ୍ଟନ ଖେଳିଛି । ଏନ୍.ସି.ସି. ରେ ଯୋଗ ଦେଇ କଟକର ଚାରବାଟିଆ ଅଞ୍ଚଳରେ କ୍ୟାମ୍ପରେ ମଧ୍ୟ ରହିଛି । ମୋ ମାଆ ବୀଣାପାଣି ତାଙ୍କ ସମୟର ଜଣେ ଭାରି ପ୍ରଗତିଶୀଳା ମହିଳା ଥିଲେ । ତାଙ୍କ ଉଦ୍ଦେଶ୍ୟ ଥିଲା ମୋତେ କେମିତି ଜୀବନର ଭିନ୍ନ ଭିନ୍ନ ଦିଗ ସହ ପରିଚିତ କରାଇବେ ।

ସେତେବେଳେ ଏ କଥା ମୋ ମୁଣ୍ଡକୁ ପଶୁନଥିଲା । ହେଲେ ଏବେ ଅତୀତକୁ ଚାହିଁଲେ ସବୁ ସ୍ପଷ୍ଟ ବୁଝିହେଉଛି । ମୋ ପିଲାଦିନର ଅନୁଭୂତିଗୁଡ଼ିକର ବିବିଧତା ହିଁ ବୋଧହୁଏ ମୋ ମନରେ ମୁକ୍ତ ଚିନ୍ତାର ମଞ୍ଜି ବୁଣି ଦେଇଥିଲା । ମୋର ଧୀରେ ଧୀରେ ଉପଲବ୍ଧି ହେଲା ଯେ ମୋତେ ସୀମବଦ୍ଧତାର ଖୋଷାରୁ ବାହାରି ମନଭରି ଦୁନିଆକୁ ଅନ୍ୱେଷଣ କରିବାକୁ ହେବ । ସମୟ କ୍ରମେ ମୁଁ ଆଗ ଅପେକ୍ଷା ଟିକେ ବେଶୀ ମେଳାପୀ ହୋଇଗଲି । ପିଲାବେଳେ ମୁଁ ଲାଜକୁଳୀ ଥିଲି । କିଛିଟା ଭୟାଳୁ ମଧ୍ୟ । ପୁଅଙ୍କଠାରୁ

ଦୂରେଇ ରହୁଥିଲି । ଲୋକଙ୍କ ମେଳରେ ଅବାକ୍ ହୋଇଯାଉଥିଲି । ଧିରେ ଧିରେ ମୁଁ ଏସବୁ ପଛରେ ଛାଡ଼ି ଆଗକୁ ବଢ଼ିବା ଆରମ୍ଭ କଲି । କାର୍ଯ୍ୟକ୍ଷେତ୍ରରେ ମୋତେ ପୁରୁଷମାନଙ୍କ ସହ ମିଳାମିଶା କରିବାକୁ ହେଲା । କିନ୍ତୁ ମୁଁ କାହା ସହ କଥା ହେବି ବା ହେବିନି ସେଥି ପ୍ରତି ଭାରି ସତର୍କ ରହୁଥିଲି । ଯେଉଁମାନେ ବୁଦ୍ଧିବିଦ୍ୟାରେ ବିକଶିତ, ସାଧାରଣ ଲୋକଙ୍କଠାରୁ କିଛିଟା ଅଲଗା, ସେପରି ସାମର୍ଥ୍ୟବାନ ପୁରୁଷମାନଙ୍କ ସହ ହିଁ ମିଳାମିଶା କରିବାକୁ ମୁଁ ପସନ୍ଦ କରୁଥିଲି । ଏ ପ୍ରକାର ରୁଚି ଯୋଗୁଁ ମନେ ହୋଇପାରେ ଯେ ମୁଁ ଗର୍ବୀ ତଥା ଅପ୍ରିୟ ଥିଲି । କିନ୍ତୁ ତାହା ମୋତେ ଜୀବନ ପ୍ରତି ଏକ ସନ୍ତୁଳିତ ଦୃଷ୍ଟିକୋଣ ଖୋଜିବାରେ ସାହାଯ୍ୟ କଲା । ସମାଜରେ ଲିଙ୍ଗଗତ ସମାନତା କେତେ ଆବଶ୍ୟକ ସେ ବିଷୟରେ ଗଭୀର ଭାବେ ଚିନ୍ତା କରିବା ଆରମ୍ଭ କଲି । ମହିଳାମାନଙ୍କର ସମସ୍ୟା ସମ୍ବନ୍ଧୀୟ ଅନେକ ପ୍ରବନ୍ଧ ଲେଖିଲି । । ଏବେ ମୁଁ International Association for Feminist Economics (IAFFE)ର ଜଣେ ସଦସ୍ୟ । ମୁଁ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା Developing Countries Research Centre (DCRC)ର ମଧ୍ୟ ଫେଲୋ ଥିଲି । ଅନେକ ସଭା ସମ୍ମିଳନୀ ଓ କମିଟିରେ ମୁଁ ଯୋଗ ଦେଲି । ଫଳସ୍ୱରୂପ ମୋର ଅନେକଗୁଡ଼ିଏ ଦ୍ୱନ୍ଦ୍ୱ ଧିରେ ଧିରେ ଦୂର ହୋଇଗଲା । କିନ୍ତୁ ଏବେ ମଧ୍ୟ ସମ୍ପୂର୍ଣ୍ଣ ଭାବେ ମୁଁ ନିଜକୁ ମୁକୁଳାଇ ପାରିନାହିଁ । କାରଣ ମୁଁ ଯେଉଁ ପରିବେଶରେ ବଡ଼ ହୋଇଛି ସେଠାରେ ନାରୀସୁଲଭ ସୌନ୍ଦର୍ଯ୍ୟ ଓ ମର୍ଯ୍ୟାଦା, ଶିଷ୍ଟାଚାର ଇତ୍ୟାଦିର ଏକ ବିଶେଷ ମହତ୍ତ୍ୱ ଥିଲା । ମୁଁ ଜଣେ ନାରୀ ବୋଲି ନିଜକୁ ଗୌରବାନ୍ୱିତ ମନେ କରୁଥିଲି ଓ ମୋର ସମ୍ମାନକୁ ଅକ୍ଷୁଣ୍ଣ ରଖିବା ପାଇଁ ସଦା ଉତ୍ସାହୀ ଥିଲି ।

ପରେ ପରେ ମୁଁ ଫକୀରମୋହନ ସେନାପତିଙ୍କୁ ତାଙ୍କ ଲେଖା ମାଧ୍ୟମରେ ଜାଣିବାକୁ ଚେଷ୍ଟା କରିବି ବୋଲି ଭାବିଲି । ବିଶେଷ କରି ମୁଁ ଦିଲ୍ଲୀ ଆସିବା ପରେ । ମୋତେ ସେତେବେଳକୁ ବାଇଶ ବର୍ଷ ହୋଇଥାଏ । ମୁଁ କମଳା ନେହେରୁ କଲେଜରେ ଅଧ୍ୟାପିକା ଚାକିରୀ ପାଇଥାଏ । ସେ କଲେଜଟି ସେତେବେଳକୁ ଡିଫେନ୍ସ କଲୋନୀର ଗୋଟିଏ କୋଠାରେ ଚାଲିଥାଏ । ଦିନ ବିତିଲା । ମୁଁ ବିବାହ କଲି । ପିଲାପିଲି ହେଲେ । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଅର୍ଥନୀତି ଅଧ୍ୟାପିକା ଭାବେ ମୋ କାମରେ ମୁଁ ବ୍ୟସ୍ତ ରହିଗଲି । ମୋ ବୃତ୍ତିରେ ସଫଳ ହେବା ପାଇଁ ମୁଁ ଉଦ୍ୟମ କଲି । ପାଠ୍ୟକ୍ରମର ବାହାରେ ମୋର ଅନେକ ରୁଚି ରହିଥିଲା । ନୃତ୍ୟ, ନାଟକ, ସଙ୍ଗୀତ, ଲେଖାଲେଖି ଆଦିରେ ମୁଁ ମନୋନିବେଶ କଲି । କିନ୍ତୁ ବିଶେଷ ଆଗକୁ ବଢ଼ିପାରିଲି ନାହିଁ କାରଣ ମୁଁ ସବୁବେଳେ ଏକ ପ୍ରକାର ସନ୍ତୁଳନ ରକ୍ଷା କରିବାକୁ ଚାହୁଁଥିଲି-ଯେମିତିକି ମୋ ପରିବାର, ମୋ ସ୍ୱାମୀ, ମୋ ପିଲାମାନଙ୍କୁ ଅବହେଳା ନକରେ । ଏଇଟା କିଛି ସହଜ କଥା ନଥିଲା । କିନ୍ତୁ ପିଲାମାନେ

ଯେତେବେଳେ ଆଇ.ଆଇ.ଟି ହ୍ୱାର୍ଟନ ବିଜନେସ ସ୍କୁଲ ପରି ସମ୍ମାନାସ୍ପଦ ଅନୁଷ୍ଠାନଗୁଡ଼ିକରେ ପାଠ ପଢ଼ି ତାଙ୍କ ଜୀବନରେ ନିଜେ ନିଜେ ଆଗକୁ ବଢ଼ି ଚାଲିଲେ, ମୁଁ ନୂଆ କାମ କ'ଣ କରାଯାଇ ପାରିବ ଭାବିବା ଆରମ୍ଭ କଲି ।

ଦିଲ୍ଲୀ ବିଶ୍ୱବିଦ୍ୟାଳୟ ସହ ଅନୁବନ୍ଧିତ ଏକ କଲେଜରେ ଶିକ୍ଷକତା କରି ମୁଁ ଅନେକ କିଛି ଶିଖିଲି । ବୋଧେ ଶିକ୍ଷକତା ହିଁ ମୋତେ ନିଜର ସେତେବେଳର ଜୀବନର ସୀମା ସରହଦ ଡେଇଁ ଯିବାକୁ ପ୍ରେରଣା ଯୋଗାଉଥିଲା । ୩୦ ବର୍ଷ କାଳ ଅଧ୍ୟାପନା କଲା ପରେ ମୋତେ ଟିକିଏ ଅଧୀର ଲାଗିଲା । ଶୃଙ୍ଖଳରୁ ନିଜକୁ ମୁକ୍ତ କରିବାର ଇଚ୍ଛା ପ୍ରବଳତର ହେଲା । ମୋର କେତେଜଣ ଘନିଷ୍ଠ ବନ୍ଧୁ ମୋତେ ସ୍ୱାଧୀନ ଭାବରେ ବଞ୍ଚିବାପାଇଁ ଉତ୍ସାହ ଦେଲେ । ଜଣେ କହିପକାଇଲେ, "ତୁମକୁ ତୁମ ଶୃଙ୍ଖଳ ବ୍ୟତୀତ ଆଉ କିଛି ହରାଇବାର ନାହିଁ ।" ଶୃଙ୍ଖଳ ଶବ୍ଦଟି ହୁଏତ ଟିକେ ବେଶୀ ନକାରାତ୍ମକ ମନେ ହୋଇପାରେ କାରଣ ଅଧ୍ୟାପନା ବୃତ୍ତି ମୋତେ ଜଣେ ଅନୁଭବୀ ଓ ଅଭିଜ୍ଞ ବ୍ୟକ୍ତିରେ ପରିଣତ ହେବା ପାଇଁ ସୁଯୋଗ ଦେଇଛି । ମୋର କେତେକ ଦୋଷଦୁର୍ବଳତା ଦୂର କରିଦେଇଛି । ଏ ସବୁକିଛି ପାଇଁ ମୁଁ ମୋ ଅଧ୍ୟାପନା ବୃତ୍ତି ନିକଟରେ କୃତଜ୍ଞ । କିନ୍ତୁ କିଛି ଗୋଟାଏ ଯେମିତି ମୋତେ କିଛି ଦିନ ହେବ ଅସ୍ତବ୍ୟସ୍ତ କରିଦେଉଥିଲା । ଫକୀରମୋହନ ସେନାପତିଙ୍କ ନାମରେ ଏକ ଅନୁଷ୍ଠାନ ସ୍ଥାପନ କରିବା କଥା ମୁଁ ଚିନ୍ତା କରୁଥିଲି । ମୁଁ ତାଙ୍କର ସାହିତ୍ୟ, ଆଦର୍ଶ ଓ ଦର୍ଶନକୁ ପ୍ରସାରିତ କରି ସମାଜ ଉଦ୍ଦେଶ୍ୟରେ ମୋ କର୍ତ୍ତବ୍ୟ ନିର୍ବାହ କରିବାକୁ ଚାହିଁଲି । କିଛି ନହେଲେ ବି ତାଙ୍କ ପରି ମହାନ ବ୍ୟକ୍ତିତ୍ୱଙ୍କୁ ମୁଁ ଅନୁଷ୍ଠାନଟିଏ ଗଢି ଏକ ଶ୍ରଦ୍ଧାଞ୍ଜଳି ଦେବି ବୋଲି ଭାବିଲି ।

ମୁଁ ଜାଣିପାରିଥିଲି ଯେ ମୋ ସମୟ ଆସିଯାଇଛି । ମୋତେ କାମ ଆଗକୁ ନେବାକୁ ହେବ । ବୋଧେ ଏହା ବିଧି ନିର୍ଦ୍ଧାରିତ ଥିଲା ଯେ ମୁଁ ଫକୀରମୋହନ ସେନାପତିଙ୍କ ପାଖକୁ ଫେରିବି । ମୁଁ ଫକୀରମୋହନ ଗ୍ରନ୍ଥାବଳୀ ପଢିବା ଆରମ୍ଭ କଲି । ସେ ବହିଟି ମୋତେ ମୋ ମାଆ ଉପହାର ଦେଇଥିଲେ । ସେ ବୋଧେ ବହିଟିକୁ ବାଖରାବାଦ ଘରୁ ଆଇଙ୍କ ଠାରୁ ଆଣିଥିଲେ । ଏବେ ପଛ କଥା ଭାବିଲେ ଲାଗୁଛି ସେତେବେଳେ ବହିଟି ଯଦି ମୋ ପାଖରେ, ଠିକ ମୋ ସାମ୍ନାରେ ଉପଲବ୍ଧ ନଥାନ୍ତା ମୁଁ ବୋଧେ କେବେ ପଢ଼ିବା ପାଇଁ ଚେଷ୍ଟା ହିଁ କରିନଥାନ୍ତି । ହୁଏତ ଏହା ହିଁ ଥିଲା ଭଗବାନଙ୍କ କୃପା ଓ ମୋ ମାଆଙ୍କ ଆଶୀର୍ବାଦ । ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରସ୍ତାବ ମୋତେ ଜୁଟିଲା ଆଉ ମୁଁ ଫକୀରମୋହନଙ୍କ ଉପରେ ଗବେଷଣା ଆରମ୍ଭ କରିଦେଲି । ଭାଗ୍ୟକୁ ପ୍ରଫେସର ଶିଶିର ଦାସଙ୍କ ଦ୍ୱାରା ଲିଖିତ "ହିଷ୍ଟ୍ରି ଅଫ୍ ଇଣ୍ଡିଆନ ଲିଟରେଚର" ବହିଟି ମୋତେ ମିଳିଗଲା । ତିନି ଭାଗରେ ଏହି

ବହିଟିକୁ କେନ୍ଦ୍ର ସାହିତ୍ୟ ଆକାଡେମୀ ପ୍ରକାଶ କରିଛନ୍ତି । ଏ ବହିଟି ମୋତେ ଅନେକ ଚମକୃତ କଲା । ମାସ ମାସ ଧରି ମଣ୍ଡି ହାଉସ ଲାଇବ୍ରେରୀ (ରବୀନ୍ଦ୍ର ଭବନ)ରେ ମୁଁ ଏହାକୁ ପଢ଼ିଚାଲିଲି । ବହିଟିରେ "ବ୍ୟାସକବି ଫକୀରମୋହନ ସେନାପତି" ଶୀର୍ଷକରେ ଶିଶିର ଦାସ ଯାହା ଲେଖିଛନ୍ତି ସେଥିରୁ କିଛି ଏଠାରେ ଉଦ୍ଧାର କରୁଛି ।

"ଏକ ସମୟରେ ତିନି ଜଣ ଲେଖକଙ୍କ ଆବିର୍ଭାବ ହେବା ସହ ଓଡ଼ିଆ ସାହିତ୍ୟରେ ଏକ ନୂଆ ଉତ୍ସାହ ଦେଖାଦେଲା । ସେମାନେ ହେଲେ : ଫକୀରମୋହନ ସେନାପତି (୧୮୪୩-୧୯୧୮), ରାଧାନାଥ ରାୟ (୧୮୪୮-୧୯୦୮), ଓ ମଧୁସୂଦନ ରାଓ (୧୮୫୩-୧୯୮୧) । କିନ୍ତୁ ଔପନ୍ୟାସିକ ଫକୀରମୋହନ, ଯାହାଙ୍କୁ ଓଡ଼ିଆ ସାହିତ୍ୟର ଜନକ ବୋଲି ମାନ୍ୟତା ଦିଆଯାଏ, ତାଙ୍କର ମୃତ୍ୟୁ ଯାଏଁ ସେ ଓଡ଼ିଆ ସାହିତ୍ୟ ଜଗତରେ ନିଜ ଆଧିପତ୍ୟ ବିସ୍ତାର କରିଥିଲେ । ସେ ସମୟରେ ଫକୀରମୋହନ ପରି ବିଶାଳ ବ୍ୟକ୍ତିତ୍ୱ କାହାରି ନଥିଲା, ନା ହରିନାରାୟଣ ଆପଟେଙ୍କର ନା ଗୋବର୍ଦ୍ଧନରାମଙ୍କର-ଯେଉଁମାନେ କି ତାମିଲ ଓ କନ୍ନଡ଼ ସାହିତ୍ୟିକ ଥିଲେ । ଫକୀରମୋହନଙ୍କର ସବୁଠାରୁ ବଳିଷ୍ଠ କୃତି 'ଛମାଣ ଆଠଗୁଣ୍ଠ' (୧୯୦୨) ରେ ବଙ୍କିମଚନ୍ଦ୍ରଙ୍କ ପରମ୍ପରାର ଛାପ ମିଳେନାହିଁ । ବରଂ ଏହା ଦ୍ୱାରା କଥା ସାହିତ୍ୟ ରଚନାର ଏକ ନୂଆ ଦୁନିଆ ସୃଷ୍ଟି ହେଲା ଯାହାକୁ ପରବର୍ତ୍ତୀ ସମୟରେ ଅନ୍ୟାନ୍ୟ ଲେଖକମାନେ ପ୍ରସାରିତ କଲେ ଓ ସମୃଦ୍ଧ କଲେ । ସେମାନଙ୍କ ଭିତରୁ ପ୍ରମୁଖ ହେଲେ: ପ୍ରେମଚାନ୍ଦ, ତାରାଶଙ୍କର ବନ୍ଦୋପାଧ୍ୟାୟ, ତକାଜ୍ଜି ଶିବଶଙ୍କର ପିଲ୍ଲେ, ପନ୍ନାଲା ପଟେଲ ତଥା ଗୋପୀନାଥ ମହାନ୍ତି । ଏମାନଙ୍କ ଲେଖାରେ ଥିଲା ସାମାଜିକ ପରିବର୍ତ୍ତନର ଇତିହାସ ।"

"ଫକୀରମୋହନଙ୍କ ଲେଖାର ବିଶେଷତ୍ୱ ହେଉଛି ଏହାର ବାସ୍ତବଧର୍ମୀତା, ଗମ୍ଭୀର ହାସ୍ୟରସ ସହ ଗରୀବ, ତଳିଆ ବର୍ଗର ଲୋକଙ୍କ ପାଇଁ ପର୍ଯ୍ୟାପ୍ତ ସମବେଦନା । କାହାଣୀଟି ହେଉଛି ଜଣେ ଅବିବେକୀ ଜମିଦାରକୁ ନେଇ ଯାହା ମନରେ ଅଧିକରୁ ଅଧିକ ଜମି ଅକ୍ତିଆର କରିବାର ଲୋଭ । କାହାଣୀଟି ଲେଖାଯାଇଛି ସାଧାରଣ ମଣିଷଙ୍କ ଭାଷାରେ । କାହାଣୀର କେନ୍ଦ୍ରବିନ୍ଦୁରେ ଅଛନ୍ତି ସନ୍ତାନହୀନ ଦରିଦ୍ର ତନ୍ତୀ ଦମ୍ପତି ଭଗିଆ ଓ ସାରିଆ । ସେମାନଙ୍କ ଛଅ ମାଣ ଆଠ ଗୁଣ୍ଠ ପରିମିତ ଏକ ଜମିକୁ ହଡ଼ପ କରିବା ପାଇଁ ଜମିଦାର ଚକ୍ରାନ୍ତ କରିଛନ୍ତି ।"

"କିଛି ବର୍ଷ ପୂର୍ବରୁ ରବୀନ୍ଦ୍ରନାଥ ଠାକୁର ଯିଏ ନିଜେ ଜଣେ ଜମିଦାର ଥିଲେ, ଏକା ଭଳି ବିଷୟକୁ ନେଇ ଏକ କବିତା ଲେଖିଥିଲେ : 'Two Bighas of Land' (1895-96) ବା 'ଦୁଇ ବିଘା ଜୋମି' । କବିତାଟି ନିଶ୍ଚିତ ଭାବେ ହୃଦୟସ୍ପର୍ଶୀ ଥିଲା

କିନ୍ତୁ ଫକୀରମୋହନଙ୍କ ଲେଖାରେ ଗରୀବଙ୍କ ଦୁଃଖ ଯନ୍ତ୍ରଣାର ଚିତ୍ରଣ ଆହୁରି ବାସ୍ତବ ଥିଲା । ତାଙ୍କ ଲେଖାରେ ଫୁଟି ଉଠିଥିଲା ଏକ ଯନ୍ତ୍ରଣାଦାୟକ ସାମାଜିକ ଓ ଆର୍ଥିକ ବ୍ୟବସ୍ଥାର ଚିତ୍ର ଯେଉଁଥିରେ ଜମିଦାରଙ୍କ ଦେଖା ମିଳେନି ଓ ଖଜଣା ଆଦାୟ କରିବା ଲୋକ ଜମି ମାଲିକ ହେବା ପାଇଁ ଚକ୍ରାନ୍ତ କରେ । ପୋଲିସ ବେଈମାନୀ କରେ, ବିଚାରାଳୟ ହୃଦୟହୀନ ହୁଏ । ଗାଁ ଲୋକେ ତାଙ୍କ ନିତିଦିନିଆ ଜୀବନରେ ବୁଡ଼ି ରହନ୍ତି । ଉପନ୍ୟାସ ପ୍ରକୃତରେ ଗ୍ରାମୀଣ ଭାରତର ଏକ ଅସାଧାରଣ ମାନବୀୟ ଦସ୍ତାବିଜ । ଆଧୁନିକ କ୍ଷୁଦ୍ରଗଳ୍ପ କହିଲେ ଯାହା ବୁଝାଯାଏ ସେହି ପ୍ରକାର ଲେଖା ଲେଖିବା କ୍ଷେତ୍ରରେ ଫକୀରମୋହନ ହେଉଛନ୍ତି ସମ୍ଭବତଃ ପ୍ରଥମ ଭାରତୀୟ । ତାଙ୍କ 'ଲଛମା' ପ୍ରକାଶିତ ହୁଏ ୧୯୦୧ ରେ । ଓଡ଼ିଶା ଉପରେ ମରହଟାମାନଙ୍କ ଆକ୍ରମଣକୁ ନେଇ ଏହି ଉପନ୍ୟାସଟି ଲେଖାହୋଇଛି । ବଙ୍କିମଚନ୍ଦ୍ରଙ୍କ ଶୈଳୀ ସହ ସମ୍ୟକ ସାଦୃଶ୍ୟ ମିଳେ ଏହି ରଚନାରେ । ଏହାର ମର୍ମଭେଦୀ ବିଷୟବସ୍ତୁ ତଥା ବୀରତାପୂର୍ଣ୍ଣ ନାରୀ ଚରିତ୍ର ପାଇଁ 'ଲଛମା'" ଅତି ଅଳ୍ପ ସମୟ ଭିତରେ ପାଠକମହଲରେ ଚହଳ ପକାଇ ଦେଇଥିଲା । (ମୂଳ ଇଂରାଜୀ: ଶିଶିର କୁମାର ଦାସ । ଏ ହିଷ୍ଟ୍ରି ଅଫ ଇଣ୍ଡିଆନ ଲିଟରେଚର । ଭାଗ: ୭ । ୧୮୦୦-୧୯୧୦: ୱେଷ୍ଟର୍ନ ଇମ୍ପାକ୍ଟ: ଇଣ୍ଡିଆନ୍ ରେସ୍ପନସ୍ । ନୂଆ ଦିଲ୍ଲୀ, ସାହିତ୍ୟ ଆକାଡେମୀ । ୧୯୯୧ ।)

ଅବଶ୍ୟ ଅନ୍ୟ ସାହିତ୍ୟିକ ଦିଗ୍‌ଗଜଙ୍କ ତୁଳନାରେ ଫକୀରମୋହନ ଯଥୋଚିତ ସ୍ୱୀକୃତି ପାଇପାରି ନାହାନ୍ତି । ପ୍ରଫେସର ଶିଶିର ଦାସ ତାଙ୍କର "ହିଷ୍ଟ୍ରି ଅଫ୍ ଇଣ୍ଡିଆନ୍ ଲିଟରେଚର" ବହିରେ ଫକୀରମୋହନଙ୍କୁ ଏକ ଉଜ୍ଜ୍ୱଳ ଆଲୋକରେ ଆଲୋକିତ କରାଇବାକୁ ଚେଷ୍ଟା କରିଛନ୍ତି । ସେ ନିର୍ଦ୍ଦିଷ୍ଟ ଭାବରେ ନିର୍ଦ୍ଧାରଣ କରିଛନ୍ତି ଯେ ଫକୀରମୋହନ ଜଣେ ଅଗ୍ରଣୀ ଔପନ୍ୟାସିକ ଥିଲେ । ଭାରତୀୟ ସାହିତ୍ୟର ଏହି ଉଜ୍ଜ୍ୱଳ ତାରକା ମୁନସୀ ପ୍ରେମଚାନ୍ଦ ଓ ରବୀନ୍ଦ୍ରନାଥ ଠାକୁରଙ୍କ ଠାରୁ ମଧ୍ୟ ପୁରୁଣା । ମୋର ମନେଅଛି, ମୋ ଚଳଚ୍ଚିତ୍ର 'ଅନ୍ୱେଷଣ' ତିଆରି କଲାବେଳେ ମୁଁ ତାଙ୍କର ଏକ ସାକ୍ଷାତକାର ନେଇଥିଲି । ଫକୀରମୋହନ ସେନାପତିଙ୍କ ଜୀବନ ଓ ସାହିତ୍ୟ ବିଷୟରେ ଆମେ ଆଲୋଚନା କରିଥିଲୁ । (ଚଳଚ୍ଚିତ୍ରଟି ବର୍ତ୍ତମାନ ପ୍ରସାର ଭାରତୀୟ ନୂଆ ଦିଲ୍ଲୀସ୍ଥିତ ଆର୍କାଇଭରେ ଉପଲବ୍ଧ ।)

# ନ'ଅଙ୍କ ଦୁର୍ଭିକ୍ଷ

ନ'ଅଙ୍କ ଦୁର୍ଭିକ୍ଷ ବିଷୟରେ ମୁଁ ପଢ଼ିଥିଲି । ପରେ ସେ ବିଷୟରେ ଅନେକ ଚିନ୍ତା କରିଛି । ସମାଜ ବିଜ୍ଞାନର ଜଣେ ବିଦ୍ୟାର୍ଥୀ ହିସାବରେ ଏଭଳି ଏକ ଭୟଙ୍କର ବିପତ୍ତି ଉପରେ ମୋ ଧ୍ୟାନ କେନ୍ଦ୍ରିତ ହେବା ସ୍ୱାଭାବିକ । ତା'ଛଡା ଏହି ଦୁର୍ଭିକ୍ଷ ଉପରେ ଫକୀରମୋହନ ସେନାପତି ଯେପରି ପ୍ରାଞ୍ଜଳ ଭାବେ ଲେଖିଛନ୍ତି ପଢ଼ିବା ଲୋକ ମଧ୍ୟ ଦୁର୍ଭିକ୍ଷ ଦୁଃଖ ଯନ୍ତ୍ରଣାକୁ ଅନୁଭବ କରିପାରିବେ । ଏଠାରେ ମୁଁ ସେହି ଲେଖାଟି ଉଦ୍ଧାର କରୁଛି ଓ ତା'ସହିତ, ଏହି ଦୁଃଖଦ ଘଟଣାଟି ଉପରେ ମୋ ନିଜର ଭାବନା ବ୍ୟକ୍ତ କରୁଛି । ମୋ ବିଚାରରେ ସବୁ ଜିନିଷ ଠିକ୍ ରୂପେ ବ୍ୟବସ୍ଥା କରାଯାଇଥିଲେ ଏହି ବିପତ୍ତିକୁ ଟାଳିଦିଆଯାଇ ପାରିଥାଆନ୍ତା । ଏଇଥିପାଇଁ ହିଁ ମୁଁ ଅଧିକ ଚିନ୍ତା କରିଛି । ମଣିଷମାନଙ୍କ ପାଇଁ ଖାଦ୍ୟାଭାବଠାରୁ ବଳି ବଡ଼ ସମସ୍ୟା ଆଉ କ'ଣ ହୋଇପାରେ ? ହଠାତ କରି ଯେ ଖାଦ୍ୟ ସରିଯିବ ଓ ତାହା ପୁଣି ଦୀର୍ଘଦିନ ଧରି, ଏକଥା କଳ୍ପନା କରିବାକୁ ମଧ୍ୟ କଷ୍ଟ ଲାଗୁଛି । ଏହାକୁ ହିଁ କୁହାଯାଏ ଦୁର୍ଭିକ୍ଷ । ଦୁର୍ଭିକ୍ଷ ଶବ୍ଦଟି ଆମ ମନରେ ଦୁର୍ଗତି ଓ ଧ୍ୱଂସର ଆତଙ୍କ ଖେଳାଇ ଦିଏ । ଯେତେବେଳେ ଏହା ଏକ ବିକଟ ରୂପ ଧାରଣ କରି ବ୍ୟାପିଯାଏ ସମସ୍ୟା ଆହୁରି ଜଟିଳ ହୁଏ ।

ବିଶ୍ୱ ଇତିହାସରୁ ଜଣାଯାଏ ଯେ ଏହି ବିପତ୍ତି ଲକ୍ଷ ଲକ୍ଷ ଲୋକଙ୍କ ଜୀବନ ନେଇଛି । ବିଶ୍ୱାସ ହେଉନାହିଁ ଯେ ଏଇ ନିକଟ ଅତୀତରେ, ବିଂଶ ଶତାବ୍ଦୀରେ ଦୁର୍ଭିକ୍ଷର ସମ୍ମୁଖୀନ ହୋଇ କେତେ କେତେ ମଣିଷ ପ୍ରାଣ ହରାଇଛନ୍ତି । ଦୁର୍ଭିକ୍ଷ ସୃଜିଛି ମୃତ୍ୟୁର ତାଣ୍ଡବ ଲୀଳା ।

ଆଶ୍ଚର୍ଯ୍ୟ କଥା ହେଲା ଦୁର୍ଭିକ୍ଷ କେବଳ ପ୍ରାକୃତିକ ବିପର୍ଯ୍ୟୟ ଯୋଗୁଁ ହୁଏ ନାହିଁ, ବରଂ ସରକାର ଓ ତଥାକଥିତ ଜନମଙ୍ଗଳକାରୀ ଶାସକମାନଙ୍କର ଭୁଲ ନୀତି ଏବଂ ପରିଚାଳନାଗତ ଦୋଷତ୍ରୁଟି ମଧ୍ୟ ଅନେକ ସମୟରେ ଦୁର୍ଭିକ୍ଷର କାରଣ ହୁଏ । ଏହାଠାରୁ ବଳି ଦୁର୍ଭାଗ୍ୟ ଆଉ କ'ଣ ହୋଇପାରେ ? ଦୁର୍ଭିକ୍ଷ ଯୋଗୁଁ ସବୁଠାରୁ ବେଶୀ କ୍ଷତିଗ୍ରସ୍ତ ହୁଅନ୍ତି ସମାଜରେ ବହୁସଂଖ୍ୟାରେ ଥିବା ସାଧାରଣ ଓ ତଳ ବର୍ଗର ଲୋକେ । ଏହି ତଥ୍ୟମାନ ଲିଖିତ ଇତିହାସ ଦ୍ୱାରା ସମର୍ଥିତ ।

ଚୀନରେ ୧୯୮୫-୬୨ରେ ଦେଖାଦେଇଥିବା ଦୁର୍ଭିକ୍ଷ ମାଓ ସେ ତୁଙ୍ଗଙ୍କର ନୀତି Great Leap Forward ର ଏକ ସିଧା ପରିଣାମ ଥିଲା । ଚୀନର ନେତୃବୃନ୍ଦ ଜାଣିପାରିନଥିଲେ ଯେ ଦୁର୍ଭିକ୍ଷ କେତେ ଭୟଙ୍କର ରୂପ ଧାରଣ କଲାଣି । ୧୯୫୮-୬୧ ଭିତରେ ସେମାନେ ଶସ୍ୟ ରପ୍ତାନି ଦ୍ୱିଗୁଣିତ କରିଦେଲେ ଓ ଆମଦାନୀ କମାଇଦେଲେ । ପ୍ରାୟ ଏକରୁ ତିନି କୋଟି ଭିତରେ ଲୋକ ଖାଦ୍ୟାଭାବରୁ ପ୍ରାଣ ହରାଇଲେ । ତା'ପୂର୍ବରୁ ୧୯୪୩ ଚୀନରେ ହେନାନ ରାଜ୍ୟରେ ଦୁର୍ଭିକ୍ଷ ହୋଇଥିଲା । ସେତେବେଳେ ଜାପାନ ଚୀନ ଉପରେ ଆକ୍ରମଣ କରିଥିଲା । ଚୀନରୁ ସେନାନୀଙ୍କୁ ଖାଦ୍ୟ ଯୋଗାଇବା ପାଇଁ ଓ ଯୁଦ୍ଧ ଖର୍ଚ୍ଚ ମେଣ୍ଟାଇବା ପାଇଁ ଚୀନ ସେନା ବଳପୂର୍ବକ ଖାଦ୍ୟଶସ୍ୟ ଲୁଟିନେଇଥିଲେ । ୧୯୨୧-୨୨ ରେ ସୋଭିଏତ ଋଷରେ ପ୍ରାୟ ନବେ ଲକ୍ଷ ଲୋକ ମରିଗଲେ । ସେତେବେଳର ନେତା ଭ୍ଲାଡ଼ିମିର ଲେନିନ ମରୁଡି ଜନିତ ଫସଲହାନିକୁ ଗୁରୁତ୍ୱ ଦେଲେ ନାହିଁ । ଦୁର୍ଭିକ୍ଷ ତାହାର ଧ୍ୱଂସଲୀଳା ରଚିବା ପରେ ହିଁ ଶାସକଙ୍କର ଚେତା ପଶିଲା । ସମାନ ଘଟଣା ପୁଣି ଘଟିଲା ୧୯୩୨-୩୪ ରେ । ସେତେବେଳେ ଜୋସେଫ ଷ୍ଟାଲିନଙ୍କ ନେତୃତ୍ୱରେ ଋଷରେ ଶିଳ୍ପାୟନ ଚାଲିଥାଏ । ସେ ଦେଶର ଏକଚ୍ଛତ୍ର ଶାସକ ଘାଆରେ ଲୁଣ ଦେବା ପରି ଦୁର୍ଭିକ୍ଷ ହୋଇଛି ବୋଲି କହୁଥିବା ଲୋକଙ୍କୁ ଦଣ୍ଡ ଦେବା ଆରମ୍ଭ କଲେ ।

୧୯୯୫-୯୯ ଉତ୍ତର କୋରିଆରେ ୨୦ ରୁ ୩୦ ଲକ୍ଷ ଲୋକଙ୍କ ଜୀବନ ଦୁର୍ଭିକ୍ଷରେ ଗଲା । ଦୁର୍ଭିକ୍ଷର କାରଣ ଥିଲା ବନ୍ୟା ଓ ତ୍ରୁଟିପୂର୍ଣ୍ଣ ସରକାରୀ ନୀତି । ଉଭୟର ମିଳିତ ପରିଣାମ ଥିଲା ଦୁର୍ଭିକ୍ଷର କ୍ଷୟକ୍ଷତି । ୧୯୭୯ ରେ କାମ୍ବୋଡିଆରେ ଅନାହାରରେ ପାଖାପାଖି ୨୦ ଲକ୍ଷ ଲୋକ ମରିଗଲେ । ବିଂଶ ଶତାବ୍ଦୀରେ ଏମିତି ଘଟଣା ବହୁବାର ଘଟିଛି ।

ଆଉ ଟିକିଏ ପଛକୁ ଫେରିଗଲେ ଊନବିଂଶ ଶତାବ୍ଦୀରେ ମଧ୍ୟ ଇଂଲଣ୍ଡ, ଆୟରଲାଣ୍ଡ, ଫ୍ରାନ୍ସ, ଭାରତ ତଥା ପୃଥିବୀର ବିଭିନ୍ନ ଅଞ୍ଚଳରେ ଏପରି ଦୁର୍ଭିକ୍ଷର ଉଦାହରଣ ମିଳିବ । ଭାରତରେ ହିଁ ବିଗତ ତିନି ଶତାବ୍ଦୀରେ - ଅଷ୍ଟାଦଶ, ଊନବିଂଶ ଓ ବିଂଶ ଶତାବ୍ଦୀରେ ପ୍ରାୟ ଛଅ କୋଟି ଲୋକ ଦୁର୍ଭିକ୍ଷରେ ଜୀବନ ହରାଇଛନ୍ତି ବୋଲି ଇତିହାସ କହେ ।

ଭାରତରେ ବ୍ରିଟିଶ ଶାସନ ଅମଳରେ, ୧୭୬୫ ରୁ ୧୯୪୭ ଭିତରେ, କେତେକ ଅଞ୍ଚଳରେ ଏତେ ଭୟଙ୍କର ଦୁର୍ଭିକ୍ଷ ହୋଇଥିଲା ଯେ ସେସବୁର ବର୍ଣ୍ଣନା ଶୁଣି ହିଁ ଜଣେ ଆତଙ୍କିତ ହୋଇଯିବ । ଲୋକେ ସେମିତି ବିପତ୍ତି ବେଳେ କେମିତି ଜୀଇଁଥିଲେ ବା ମରୁଥିଲେ ଭାବି ଦେଖନ୍ତୁ ।

ପ୍ରେମେନ୍ଦ୍ର ମିତ୍ର ଦୁର୍ଭିକ୍ଷର କରାଳତାକୁ କବିତାର ଭାଷାରେ ଦେଖାଇଛନ୍ତି । ଏହି କବିତାଟି ମୋତେ ଭାରି ଆଲୋଡ଼ିତ କରେ । କବିତାଟି ହେଲା :

On the city streets
Roam Strange creatures
Human like, yet not quite human
Cruel caricatures of humanity !
Yet they move and speak,
Like debris that pile up on the road
Sit foraging food, on piles of garbage weary
Crying out for 'Phyan' (water that is drained out from cooked rice)
(Premendra Mitra on the Bengl famine 1943-44)

ଭାରତରେ ଘଟିଥିବା କେତୋଟି ବଡ଼ ଦୁର୍ଭିକ୍ଷ କଥା ପ୍ରଥମେ କହି ରଖୁଛି । ୧୭୬୯-୭୦ ରେ ହୋଇଥିଲା ବଙ୍ଗ ଦୁର୍ଭିକ୍ଷ । ପ୍ରାୟ ୧୦ ଲକ୍ଷ ଲୋକ ପ୍ରାଣ ହରାଇଲେ, ଯାହାକି ସେତେବେଳର ଜନସଂଖ୍ୟାର ଏକ-ତୃତୀୟାଂଶ ଥିଲା । ୧୯୪୩ ରେ ଆଉ ଏକ ଭୟଙ୍କର ଦୁର୍ଭିକ୍ଷ ହୋଇଛି । ବିରାଟ ଅଞ୍ଚଳ ସବୁ ଦୁର୍ଭିକ୍ଷ ପରେ ଜନଶୂନ୍ୟ ହୋଇଯାଇଛି ।

ଏବେ ଆସିବା ଆମ ଓଡ଼ିଶା କଥାକୁ । ୧୮୬୫-୬୭ ରେ ଏକ ଭୟଙ୍କର ଦୁର୍ଭିକ୍ଷ ଓଡ଼ିଶାକୁ ଉଜାଡ଼ି ଦେଲା । ଦଶ ଲକ୍ଷ ଲୋକ ମରିଗଲେ । ଏହି ଦୁର୍ଭିକ୍ଷଟି ୧୮୬୬ ରେ ପୂର୍ବତଟରେ ମାଡ୍ରାସ ଠାରୁ ଆରମ୍ଭ କରି ୧୮୦୦୦୦ ମାଇଲ ଯାଏଁ ବ୍ୟାପିଥିଲା । ଏହି ଅଞ୍ଚଳରେ ପ୍ରାୟ ୪୭,୫୦୦,୦୦୦ ଲୋକ ରହୁଥିଲେ । କିନ୍ତୁ ଦୁର୍ଭିକ୍ଷ ସବୁଠାରୁ ଭୟଙ୍କର ରୂପ ନେଇଥିଲା ଓଡ଼ିଶାରେ । ସେତେବେଳେ ଓଡ଼ିଶା ବାକି ଭାରତ ଠାରୁ ଅନେକାଂଶରେ ଅଲଗା ହୋଇ ରହିଥିଲା । ଦୁର୍ଭିକ୍ଷରେ ଓଡ଼ିଶାର ଏକ ତୃତୀୟାଂଶ ଲୋକ ମରିଗଲେ । ଏହି ଦୁର୍ଭିକ୍ଷଟି 'ନ'ଅଙ୍କ ଦୁର୍ଭିକ୍ଷ' ନାମରେ ପରିଚିତ । ଏହି ଦୁର୍ଭିକ୍ଷରେ ଲୋକଙ୍କ ଅକଥନୀୟ ଦୁର୍ଦ୍ଦଶା ଭୋଗିବାକୁ ପଡିଥିଲା । ଏହାର ଏକ ସରଳ ବର୍ଣ୍ଣନା ଫକୀରମୋହନ ସେନାପତି ଦେଇଛନ୍ତି ଯାହା ପାଠକଙ୍କୁ ଚକିତ କରେ, ଅବାକ୍ କରିଦିଏ । ଯାହା ଆମକୁ ଏବେ ବି ଅଦ୍ଭୁତ ଲାଗୁଛି ତଥା ନିରାଶ କରୁଛି ସେ କଥାଟି ହେଲା ଓଡ଼ିଶାର କେତେକେ ଅଞ୍ଚଳ ଏବେ ସୁଦ୍ଧା ଅସୁରକ୍ଷିତ ଓ ଅନେକ ସମୟରେ ଦୁର୍ଭିକ୍ଷ ପ୍ରପୀଡିତ ।

ବିପର୍ଯ୍ୟୟ ବେଳେ ଜୀବନ ଅସହନୀୟ ହୋଇଯାଏ । କିନ୍ତୁ ବିପର୍ଯ୍ୟୟ ଯେତେବେଳେ ମଣିଷମାନଙ୍କର ଅସାବଧାନତା ଯୋଗୁଁ ଉପୁଜେ, ତାହା ମଣିଷ ଉପରେ ମଣିଷର ଅତ୍ୟାଚାର ସ୍ୱରୂପ ହୋଇଯାଏ । ଏହି ସମସ୍ୟାକୁ ଆମେ ସମାଧାନ କରିବାକୁ

ଚେଷ୍ଟା କରିବା ଦରକାର । ଏହି ପରିପ୍ରେକ୍ଷୀର ଖାଦ୍ୟ ସୁରକ୍ଷାର କଥା ଉଠେ, ଯାହା ଏବେ ସୁଦ୍ଧା ଏକ ଜରୁରୀ ଆବଶ୍ୟକତା ହୋଇ ରହିଛି ।

ଏହି ପ୍ରସଙ୍ଗରେ, ଆଜିର ସମୟର ଏକ ବିଚିତ୍ର ଘଟଣା ଉପରେ ନଜର ଦେବା । ମୁଁ ଏହି କଥା ଲେଖିବା ସମୟରେ ବିମୁଦ୍ରିକରଣ ହେତୁ ପରିସ୍ଥିତି ଏମିତି ହୋଇଛି ଯେ, କି ଧନୀ, କି ଗରୀବ ସମସ୍ତଙ୍କ ପାଇଁ ଖାଦ୍ୟଦ୍ରବ୍ୟ କିଣିବା କଷ୍ଟକର ହୋଇପଡ଼ିଛି । ଅଚାନକ ପାଞ୍ଚ ଶହ ଓ ହଜାରେ ଟଙ୍କିଆ ନୋଟ୍‌କୁ ସରକାର ଅଚଳ ଘୋଷଣା କରିଛନ୍ତି ଓ ବ୍ୟାଙ୍କ୍ ସବୁ ବନ୍ଦ ରହିଛି । ୨୦୧୬ ନଭେମ୍ବର ୯ ତାରିଖରେ ସରକାର ବିମୁଦ୍ରିକରଣ ନୀତି ଘୋଷଣା କଲେ । ଲୋକଙ୍କ ପାଖରେ ଫଳ, ପରିବା କିଣିବା ଜିନିଷ ପାଇଁ ପଇସା ଥାଇକି ମଧ୍ୟ କିଣି ହେଲା ନାହିଁ । ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦୀ କଳା ଧନ ନିମନ୍ତ୍ରଣ କରିବା ଉଦ୍ଦେଶ୍ୟ ରଖି ଏହି ନୀତି ଘୋଷଣା କରିଥିଲେ । କିନ୍ତୁ ଏହାର ପରିଣାମ ସ୍ୱରୂପ, ଦିନେ ଦୁଇ ଦିନ ପାଇଁ ହେଉ ପଛକେ, ଏକ ଦୁର୍ଭିକ୍ଷ ପରି ପରିସ୍ଥିତି ଉପୁଜିଛି ।

ତେବେ ମୂଳ କଥାଟି ହେଲା, ଇତିହାସ ପୃଷ୍ଠାରୁ ଜଣାଯାଉଛି ଯେ ଦୁର୍ଭିକ୍ଷ ବା ସେହି ଭଳି ଖାଦ୍ୟାଭାବ ପରିସ୍ଥିତି ପ୍ରାୟତଃ ସରକାରୀ ନୀତି ନିଷ୍ପତ୍ତି ଯୋଗୁଁ ହିଁ ସୃଷ୍ଟି ହୁଏ । ନୀତିର ଉଦ୍ଦେଶ୍ୟ ଠିକ୍ ଭୁଲ ଯାହା ହେଉନା କାହିଁକି ।

ଫେରିବା 'ନ'ଅଙ୍କ ଦୁର୍ଭିକ୍ଷ' ବିଷୟକୁ । ଫକୀରମୋହନ ତାଙ୍କ ଆତ୍ମଜୀବନୀ 'ଆତ୍ମ ଜୀବନ ଚରିତ' ରେ ଏହି ଦୁର୍ଭିକ୍ଷର ଏକ ଗ୍ରାଫିକ ବିବରଣୀ ଦେଇଛନ୍ତି । ୧୮୬୬ ମସିହା - ଓଡ଼ିଶାର ତତ୍କାଳୀନ ରାଜାଙ୍କର ରାଜତ୍ୱର ନବମ ବର୍ଷ । ସେହି ଅନୁସାରେ ଦୁର୍ଭିକ୍ଷର ନାମ ରହିଲା 'ନ'ଅଙ୍କ' । ଜନ୍ ବୋଲ୍ଟନ ଫକୀରମୋହନ ସେନାପତିଙ୍କ ଆତ୍ମଜୀବନୀକୁ ଇଂରାଜୀରେ 'My life and Times' ଶୀର୍ଷକରେ ଅନୁବାଦ କରିଛନ୍ତି । ତାଙ୍କ ଭାଷାରେ, "ଲୋକଙ୍କ ମନରେ ଏବେ ବି ସେହି ଦୁର୍ଭିକ୍ଷର ଆତଙ୍କ ଛପି ରହିଛି । ୧୯୩୦ Great Depression ସହ ଏହାର ତୁଳନା କରନ୍ତୁ । ଅର୍ଥନୈତିକ ପତନରୁ ବାହାରିବା ପାଇଁ କିନସ୍ ଏକ ସରଳ ସମାଧାନ ଖୋଜି ପାରିଲେ - "ask people to dig holes and fill them up" । ଉଭୟ ପରିସ୍ଥିତିରେ ଭୋକ ମେଣ୍ଟାଇବା ପାଇଁ ଲୋକଙ୍କ ପାଖରେ ନଥିଲା । କିନ୍ତୁ ଉଭୟ ପରିସ୍ଥିତି ମଧ୍ୟରେ ଥିବା ପାର୍ଥକ୍ୟଟି ହେଲା ଗୋଟିଏ ମନୁଷ୍ୟକୃତ ହୋଇଥିବା ବେଳେ ଅନ୍ୟଟି ଏକ ପ୍ରାକୃତିକ ବିପର୍ଯ୍ୟୟ ପରି ଲାଗୁଥିଲା । ଯଦିଓ ଓଡ଼ିଶାର ଇତିହାସ ସଙ୍କେତ ଦେଉଛି ଯେ ମଣିଷମାନଙ୍କର ଅବହେଳା ଯୋଗୁଁ ଦୁର୍ଭିକ୍ଷ ପରିସ୍ଥିତି ସୃଷ୍ଟି ହୋଇଥିଲା ।"(John Boulton, SOAS London)

ଫକୀରମୋହନ ସେତେବେଳେ ଜଣେ ୨୩ ବର୍ଷୀୟ ଯୁବକ, ଏକ ସ୍କୁଲରେ ଶିକ୍ଷକ ଭାବେ ନିଯୁକ୍ତ । ସେ ଲେଖନ୍ତି "ସେହି ବର୍ଷ ମଧ୍ୟରେ ୩୦ ଲକ୍ଷ ଲୋକ ପ୍ରାଣ ତ୍ୟାଗ କରିଥିଲେ । ପ୍ରାୟ ଛପଣି ଲୋକଙ୍କ ବଂଶ ଉଚ୍ଛନ୍ନ ହୋଇ ଯାଇଅଛି । ଅନେକ ମୃତ, ଅବଶିଷ୍ଟ ଇତସ୍ତତଃ ହୋଇ" । ରେଭରେଣ୍ଡ ହାଲମଙ୍କ ସହ ତାଙ୍କର ଘନିଷ୍ଠ ସମ୍ପର୍କ କଥା ସେ ମନେ ପକାଇଛନ୍ତି । ରେଭେରେଣ୍ଡ ହାଲମ ତାଙ୍କ ପ୍ରତି ଭାରି ଦୟାଶୀଳ ଥିଲେ । ବୋଧହୁଏ ଏଥିପାଇଁ ଯେ ତାଙ୍କୁ ସାହିତ୍ୟ ଚର୍ଚ୍ଚା କରିବା ପାଇଁ ଫକୀରମୋହନ ଜଣେ ଉପଯୁକ୍ତ ଲୋକ ଭଳି ମନେହେଲେ । ଏହି ସମ୍ପର୍କ ଯୋଗୁଁ ଫକୀରମୋହନ ସେତେବେଳେ ଓଡ଼ିଶାରେ ଯାହା ଘଟୁଥିଲା ସେ ସମ୍ବନ୍ଧରେ ଓ ଇଂରେଜ ଅଫିସରଙ୍କର ଶାସନ ରଣନୀତି ବିଷୟରେ କିଛି କିଛି ଧାରଣା ପାଇପାରୁଥିଲେ ।

# ଫକୀରମୋହନଙ୍କ ଲେଖାରେ 'ଦୁର୍ଭିକ୍ଷ'

ଫକୀରମୋହନ ଲେଖିଛନ୍ତି "ଭାଦ୍ର ମାସ ଚାରି ଦିନ ଖୁବ୍ ଟାଣ ଅସ୍ରାଏ ପାଣି ବର୍ଷି ଛାଡ଼ିଗଲା । ଭାଦ୍ର ଉତ୍ତାରେ ଅଶିଣ ପ୍ରଥମରୁ ଲୋକେ ଜଳ ସକାଶେ କାତର ଭାବରେ ଆକାଶକୁ ଚାହିଁବାକୁ ଲାଗିଲେ । କାହାରି ମୁଖରୁ ଆଉ କୌଣସି କଥା ଶୁଣିବାକୁ ନାହିଁ, କେବଳ ଜଳ, ଜଳ । କାର୍ତ୍ତିକ ମାସ ଆରମ୍ଭରୁ ଲୋକେ ନିତାନ୍ତ ନିରାଶ ହୋଇପଡିଲେ । ଜଳ ହେଲେ ମଧ୍ୟ ଆଉ ରକ୍ଷା ନାହିଁ । ଧାନଗଛ ମରିବାକୁ ଲାଗିଲାଣି । x x ଧାନଗଛଗୁଡ଼ିକ ଶୁଖି କୁଟା ପରି ହୋଇଗଲାଣି । x x ଲୋକେ ଗୋରୁଗାଈ ବିଲ ମଧ୍ୟରେ ଛାଡ଼ି ଦେଇଥାନ୍ତି । ମାତ୍ର ଗୋରୁଗୁଡ଼ାକ ଧାନଗଛ ସବୁ ଥରେ ଶୁଙ୍ଘି ଚାଲିଯାନ୍ତି, ଗଛ ଖାଆନ୍ତି ନାହିଁ ।

ଦିନମଜୁରିଆ ମୂଲିଆଗୁଡ଼ାକ କଂସା ପିତ୍ତଳ ଯାହା ଖଣ୍ଡେ ଥିଲା ବିକିଦେଇ ଯେତେ ଦିନ ଚଳିଲା ଚଳିଲେ । କାର୍ତ୍ତିକ ଶେଷ ସରିକି ଯାହାକୁ ଯେଉଁ ବାଟ ଦିଶିଲା ଘରୁ ବାହରି ଚାଲିଗଲେ । ସ୍ତ୍ରୀ ପୁରୁଷ, ବାପ ପୁଅ କାହାରି ସହିତ କାହାରି ଭେଟ ନାହିଁ । ଦୁଆର ଦୁଆର ବୁଲି ବୁଲି ଭିକ ମାଗୁଥାନ୍ତି । କାହା ଘରେ ଚାଉଳ ଅଛି ଯେ ଭିକ ଦେବ । ଚାଷବନ୍ଦି ଲୋକେ ଅବସ୍ଥାନୁସାରେ ପ୍ରଥମେ କଂସାପିତ୍ତଳ, ଗୋରୁ ଗାଈ, ସୁନା, ରୂପା ଯାହା ଘରେ ଯାହା ଥିଲା ବିକିବାକି ମାଘ ଫଗୁଣ ଯାଏ ଦାନ୍ତ କାମୁଡି ଘରେ ପଡ଼ି ରହିଲେ । ସୁନା ରୂପା ଓଜନ କରିବାକୁ ନିକ୍ତି ତୌଲ କାହିଁ, ପୁଣି ନିକ୍ତ ଖୋଜିବାକୁ ତର ସହୁ ନାହିଁ । ଦରଦାମ ବୁଝୁଛି କିଏ ? ଯେତେ ଗୌଣି ଧାନ ବା ଚାଉଳ ଦେବୁ ଦେ ।... ଫଗୁଣ ସରିକି ଚାଷବନ୍ଦି ଲୋକେ ଅଧିକାଂଶ କାରିଗର ଶ୍ରେଣୀର ପ୍ରାୟ ସମସ୍ତେ କୁଆଡେ ଛିନ୍ନ ଭିନ୍ନ ହୋଇ ବୁଣି ପଡ଼ିଲେଣି । ଘାସପତ୍ର ଯେ ଯାହା ପାଇଲା ଚୋବାଉଥାଏ । ତେନ୍ତୁଳି ଗଛରେ କଅଁଳିଆ ପତ୍ର ବାହାରିବାରୁ ଗୋଟାଏ ଗୋଟାଏ ଗଛରେ ଦଶ କୋଡ଼ିଏ ଜଣ ଲେଖାଏଁ ଚଢ଼ି ମାଙ୍କଡ ପରି ପତ୍ର ସବୁ ଖୁଣ୍ଟି ଖୁଣ୍ଟି ଖାଉଥାନ୍ତି । ଯେଉଁ ଲୋକକୁ ଅନାଅ, ହାଡ଼ ଆଉ ଚମ, ଆଖି ଭିତରକୁ ପଶିଗଲାଣି । ଅନେକ ଭଲ ଭଲ ଘର ଯୁବତୀ ବୋହୂ ଝିଅ ଦୁଇ ତିନି ହାତ ଲମ୍ୱ ଶହେ ଗଣ୍ଠିଲା କନା ଖଣ୍ଡେ ଖଣ୍ଡେ ଅଣ୍ଟାରେ ଭିଡ଼ି ଦେଇ ଦାଣ୍ଡେ ଦାଣ୍ଡେ ବୁଲୁଥାନ୍ତି । ସେମାନଙ୍କର ମାତୃଚିହ୍ନ ଚର୍ମ ଦୁଇଖଣ୍ଡ ଛାତିରେ ଝୁଲୁଥାଏ । କାହାରି କାହାରି କୋଳରେ ଅସ୍ଥି ଚର୍ମମୟ ପିଲା ସେହି ଚର୍ମମୟ ସ୍ତନଟି ମୁହଁରେ ଦେଇ ଝୁଲି ପଡିଥାଏ । ଶିଶୁଟା ମୃତ

କି ଜୀବିତ ଚିହ୍ନି ହେଉନଥାଏ । ମାଆଟା ପ୍ରାଣପଣରେ ଛୁଆଟାକୁ ଜାବୁଡ଼ି ଧରିଥାଏ । ଚୈତ୍ରଠାରୁ କ୍ରମଶଃ ମୃତ୍ୟୁ ସଂଖ୍ୟା ବଢ଼ିବାକୁ ଲାଗିଲା । ଦାଣ୍ଡରେ, ଘାଟରେ, ବଣରେ, ପୋଖରୀତୁଠରେ ଯହିଁ ଦେଖିବ ମଡ଼ା ପଡ଼ି ରହିଥାନ୍ତି ।"

ଚତୁର୍ଦ୍ଦିଗରେ ଦିଶୁଥିଲା ମୃତ୍ୟୁର ତାଣ୍ଡବଲୀଳା । ଏହି ଦୃଶ୍ୟମାନ କଳ୍ପନା କଲେ ହିଁ ଦେହ ଭୟରେ କମ୍ପି ଯାଉଛି । ଏଭଳି ବିପତ୍ତି ସମ୍ମୁଖୀନ ହେବା କେତେ ଭୟଙ୍କର ଘଟଣା, କେତେ ଦୁର୍ଭାଗ୍ୟର କଥା ।

ଉତ୍କଳର ପରମବନ୍ଧୁ ପରମସହାୟ ଶ୍ରୀ ଟି.ଇ. ରେଭେନସା, ଯାହାଙ୍କ ନାମରେ ପ୍ରସିଦ୍ଧ ରେଭେନ୍‌ସା କଲେଜ ପ୍ରତିଷ୍ଠା ହୋଇଥିଲା (ଯାହା ଏବେ ରେଭେନସା ବିଶ୍ୱବିଦ୍ୟାଳୟ), ସେତେବେଳେ ନୂଆ ହୋଇ କମିଶନର ପଦରେ ନିଯୁକ୍ତି ହୋଇଥାନ୍ତି । ତାଙ୍କ ପାଖକୁ ସରକାରଙ୍କ ଠାରୁ ଚିଠି ଆସିଲା ଯେ ଓଡ଼ିଶାରେ ଦୁର୍ଭିକ୍ଷ ହେବାର ସମ୍ଭାବନା ରହିଛି ; ଯଦି ଦୁର୍ଭିକ୍ଷ ପରିସ୍ଥିତି ଉପୁଜେ, ପ୍ରଜାମାନଙ୍କର ରକ୍ଷା ପାଇଁ କ'ଣ ଉପାୟ ବିଧାନ କରାଯାଇପାରେ କମିଶନର ପ୍ରସ୍ତାବ ଦିଅନ୍ତୁ ।

କମିଶନର ସାହେବ ସିରସ୍ତାଦାରମାନଙ୍କ (ସେ ସମୟର କିରାଣୀ) ସହ ପରାମର୍ଶ କଲେ । ସିରସ୍ତାରମାନେ ଜଣାଇଲେ ଯେ ଚିନ୍ତା କରିବାର କୌଣସି କାରଣ ନାହିଁ । ରେଭେନ୍‌ସାଙ୍କ ଭୟ ଦୂର ହେଲା । ସେ ଦୃଢ଼ ଭାବେ ସରକାରଙ୍କୁ ଉତ୍ତର ଦେଲେ ଯେ, ଅଭାବ ପଡ଼ିପାରେ କିନ୍ତୁ କୌଣସି ବଡ଼ ବିପତ୍ତି ହେବ ନାହିଁ କାରଣ ଜରୁରୀକାଳୀନ ପରିସ୍ଥିତିରେ କାମ ଚଳାଇବା ପାଇଁ ଯଥେଷ୍ଟ ପରିମାଣର ଧାନ ମହଜୁଦ ଅଛି । ଏତକ ଜଣାଇ କମିଶନର ବଡ଼ ଭୁଲ କଲେ । ସରକାରଙ୍କୁ ଜଣାଇବା ପୂର୍ବରୁ ସେ ନିଜେ ଭଲ ଭାବରେ ତଦାରଖ କରିବାର ଥିଲା । ପରେ ପରେ ମାଡ଼ି ଆସିଲା ବିପର୍ଯ୍ୟୟ, ଫକୀରମୋହନଙ୍କ ଭାଷାରେ ଏହା ଥିଲା 'ବିଧିର ବିଧାନ' ।

ଚାଉଳ ଦର ହେଲା ଟଙ୍କାକୁ ଦଶ ସେର । ଲୋକେ କିଣିପାରିଲେ ନାହିଁ । ମନେପଡୁଛି ୧୯୩୦ର Great Depression କଥା । ବଜାରରେ ଅଜସ୍ରବହୁତେ ଦ୍ରବ୍ୟ ଉପଲବ୍ଧ ଥିଲେ ମଧ୍ୟ ଲୋକମାନଙ୍କ ପାଖରେ କ୍ରୟ କରିବାର ସାମର୍ଥ୍ୟ ନଥିଲା । ମାର୍ଚ୍ଚ ବା ଏପ୍ରିଲ ମାସ ବେଳକୁ କମିଶନର ସରକାରଙ୍କୁ ରାଜ୍ୟର ପ୍ରକୃତ ଅବସ୍ଥା ଜଣାଇଲେ ।

ଫକୀରମୋହନ ଲେଖିଛନ୍ତି, "ବର୍ତ୍ତମାନ କଲିକତା ଠାରୁ ପୁରୀ ପର୍ଯ୍ୟନ୍ତ ଯେଉଁ ସୁନ୍ଦର ଟ୍ରଙ୍କ ରୋଡ଼ ବା ବଡ଼ଦାଣ୍ଡ ଦେଖୁଅଛ ସେ ସମୟରେ ସେଥିରେ ଚିହ୍ନମାତ୍ର ଗୋହିରି ସ୍ୱରୂପ ଥିଲା । ତାହା ପୁଣି ଅରଣ୍ୟମୟ ଓ ଚୋର ଡକାଏତରେ ପରିପୂର୍ଣ୍ଣ । ସୁତରାଂ ଉପର ଦାଣ୍ଡରେ ଧାନ ଚାଉଳ ଆସିବାର ପ୍ରଶ୍ନ ନଥିଲା ।... ତଥାପି ଗବର୍ଣ୍ଣମେଣ୍ଟ କଲିକତାରୁ ବଡ଼

ବଡ଼ ମନୋହରି ଜାହାଜ ଭଡ଼ା କରି ରେଙ୍ଗୁନ ଓ ବଙ୍ଗଦେଶରୁ ଚାଉଳ ପଠାଇବାକୁ ଲାଗିଲେ ।” ବ୍ରିଟିଶ ସରକାର ଚାଉଳ ଆମଦାନୀ କଲେ ଓ ପରିସ୍ଥିତି କିଛିମାତ୍ରାରେ ସୁଧୁରିଲା । ଗାଁଗହଳରେ ଅନ୍ନଛତ୍ର ଖବର ପ୍ରସାରିତ ହେଲାମାତ୍ରେ ଅନକ୍ଲିଷ୍ଟ ଲୋକେ ଭାତ ଖାଇବାକୁ ସହରକୁ ଧାଇଁଲେ । ଫଳ ହେଲା ଆହୁରି ଖରାପ - ଲୋକେ ଝାଡ଼ାବାନ୍ତି ଓ ଅମାଶୟରେ ମଲେ । ମେହେନ୍ତରମାନେ ଶଗଡ଼ରେ ମଡ଼ା ସବୁ ବୋହି ନଦୀରେ ଫୋପାଡ଼ିଲେ ।। ଫକୀରମୋହନ ସେନାପତି ଲେଖିଛନ୍ତି, “ମାସେ କି ଦେଢ଼ ମାସ ପର୍ଯ୍ୟନ୍ତ ମେହେନ୍ତରମାନେ ତିନି ଚାରି ଖଣ୍ଡ ମଡ଼ା ବୋଝେଇ ଶଗଡ଼ ନଦୀ ଆଡ଼କୁ ଘେନି ଯାଉଥିବାର ଲେଖକ ପ୍ରତ୍ୟକ୍ଷ ଦେଖିଅଛି ।”

ସବୁ କଥାର ଗୋଟିଏ ଅନ୍ତ ଥାଏ । ଦୁର୍ଭିକ୍ଷ ମଧ୍ୟ ଚାଲିଗଲା । କିନ୍ତୁ କେତେ ଲୋକ, ବାଳକ ବାଳିକା ଦାଣ୍ଡରେ ବୁଲୁଥିଲେ । ଅନ୍ନଛତ୍ରରେ ଖାଇଥିବାରୁ ସେମାନଙ୍କୁ ହିନ୍ଦୁ ସମାଜ ତଡ଼ିଦେଲା । ଏହା ଠାରୁ ବଳି ଅଧିକ ଅମାନବିକତା କ'ଣ ଥାଇପାରେ ? କିନ୍ତୁ ଖ୍ରୀଷ୍ଟିଆନ ମିଶନନାରୀମାନେ ସେମାନଙ୍କୁ ଆଦରପୂର୍ବକ କୋଳାଇନେଲେ । ଏତାଦୃଶ ଦୟାଭାବ ନିଶ୍ଚିତ ଭାବେ ପ୍ରଶଂସାଯୋଗ୍ୟ । ସେମାନେ କେବଳ ଆଶ୍ରୟ ଦେଲେ ନାହିଁ, ବରଂ ଶିକ୍ଷା ଦେଇ ପିଲାଙ୍କୁ ଉପଯୁକ୍ତ କଲେ । ଏପରି କାମକୁ ଉଚ୍ଚପ୍ରଶଂସା କରିବା ଉଚିତ ।

ଆଉ ଏକ ଭଲ କଥା ଘଟିଲା । ଟି.ଇ. ରେଭେନସା ନିଜ ଅବହେଳା ଯୋଗୁଁ ଅପରାଧ ବୋଧ କଲେ । ଦୁର୍ଭିକ୍ଷ ପ୍ରତି ତାଙ୍କର ନିଷ୍କ୍ରିୟତା ତାଙ୍କୁ ଅନୁତପ୍ତ କଲା । ତେଣୁ ଓଡ଼ିଶାରେ ଶିକ୍ଷା ବ୍ୟବସ୍ଥାର ଉନ୍ନତି ସାଧନ କରିବା ପାଇଁ ସେ ଚେଷ୍ଟା କଲେ । ତାଙ୍କରି ଉଦ୍ୟମ ଯୋଗୁଁ ଓଡ଼ିଶାରେ ଏକ ସୁଚିନ୍ତିତ ଓ ସୁସଂଗଠିତ ଶିକ୍ଷା ବ୍ୟବସ୍ଥା ସୃଷ୍ଟି ହେଲା ।

ଏହା ସହିତ ଓଡ଼ିଶାରେ ଏକ ଜାତୀୟବାଦୀ ବୁଦ୍ଧିଜୀବୀ ବର୍ଗର ଆବିର୍ଭାବ ହେଲା ।। ଏହି ବର୍ଗର ଉତ୍ଥାନ ୧୮୬୦ରୁ ଆରମ୍ଭ ହୋଇଯାଇଥିଲା । ଏହି ବର୍ଗର ଲୋକେ ଭାରତରେ ଇଂରେଜ ଶାସନର ଦୁଷ୍ପରିଣାମ ସମ୍ବନ୍ଧରେ ଲୋକଙ୍କ ଭିତରେ ଜାଗରଣ ସୃଷ୍ଟି କଲେ । ସାପ୍ତାହିକ ଖବରକାଗଜ 'ଉତ୍କଳ ଦୀପିକା' ମଧ୍ୟ ଲୋକଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବାରେ ମୁଖ୍ୟ ଭୂମିକା ତୁଲାଇଥିଲା । ଏହି ପତ୍ରିକା ପ୍ରକାଶନରେ ଗୌରୀଶଙ୍କର ରାୟ ପ୍ରମୁଖ ବ୍ୟତୀତ ଫକୀରମୋହନଙ୍କର ଏକ ବଡ଼ ଭୂମିକା ଥିଲା ।

ଘଟଣା ପ୍ରବାହ କେଉଁ ଦିଗକୁ ଗତି କଲା ଲକ୍ଷ୍ୟ କରିବାର କଥା । ନ'ଅଙ୍କ ଦୁର୍ଭିକ୍ଷ ପରି ଏକ ବିପତ୍ତି କିପରି ସମାଜରେ ବହୁମୁଖୀ ପରିବର୍ତ୍ତନର ସୂତ୍ରପାତ କଲା ତାହା ମଧ୍ୟ ଜାଣିବାର କଥା । ନ'ଅଙ୍କ ଦୁର୍ଭିକ୍ଷ ଆରମ୍ଭ ହେଲା ଦାରିଦ୍ର୍ୟ ଓ ଭୋକିଲା ପେଟରୁ ।

କିନ୍ତୁ ଶେଷ ପରିଣାମ ହେଲା ଜାଗରଣ । ଖାଦ୍ୟ ସୁରକ୍ଷା ପାଇଁ ବ୍ୟବସ୍ଥା କରାଗଲା ଓ ଏକ ଭଲ ଶିକ୍ଷା ବ୍ୟସ୍ଥାର ନିର୍ମାଣ ହେଲା । ଏହାର ଶ୍ରେୟ ଦିଆଯାଏ ଟି.ଇ. ରେଭେନସାଙ୍କୁ ।

ଏହି ଦୁର୍ଭିକ୍ଷ ବିଷୟରେ ସବୁଠାରୁ ଆଶ୍ଚର୍ଯ୍ୟଜନକ କଥା ହେଲା ଯେ ଏହି ଘଟଣାଟି ମଣିଷ ଜୀବନକୁ ବିପଦରେ ପକାଇ ଦେଲା ଓ ମଣିଷର ପ୍ରାଣଶକ୍ତି ଦୁର୍ବଳ କରିଦେଲା । ଏହାପରେ ଗୋଟେ ପରେ ଗୋଟେ ଏପରି ଘଟଣାମାନ ଘଟିଲା ଯାହା ମଣିଷର ଆତ୍ମାର ଉନ୍ନତି ସାଧନ କଲା, ଶିକ୍ଷା ଓ ଜ୍ଞାନ ଦ୍ୱାରା ମଣିଷଠାରେ ଏକ ପ୍ରକାର ଜାଗରଣ ଓ ସଚେତନତା ସମ୍ଭବ ହେଲା ।

ଫକୀରମୋହନ ସେନାପତିଙ୍କ ଲେଖାରୁ ଆମକୁ ନ'ଅଙ୍କ ଦୁର୍ଭିକ୍ଷ ସମୟର ନିଷ୍ଠୁରତା, ଅନୈତିକତା ଓ ଅମାନବିକତାର ଆଭାସ ମିଳେ । ଉତ୍ତର ପିଢ଼ିର ମଙ୍ଗଳ ପାଇଁ ଏହି ଧରଣର ଏକ ଅସାଧାରଣ ଘଟଣା ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୋଇ ରହିଗଲା । ଦୁର୍ଭିକ୍ଷ ବେଳର ଓ ପରବର୍ତ୍ତୀ ଘଟଣାବଳୀକୁ ଆମେ ଏବେ ଠିକ ଦୃଷ୍ଟିକୋଣରୁ ଦେଖିବାକୁ ସକ୍ଷମ । ଏଭଳି ବିପର୍ଯ୍ୟୟର ପୁନରାବୃତ୍ତି ଯେମିତି ନହେବ ସେଥିପାଇଁ ଆମକୁ ଠିକ୍ ସମୟରେ ଠିକ୍ ଦିଗରେ ପଦକ୍ଷେପ ନେବାକୁ ହେବ । ବିପର୍ଯ୍ୟୟରେ ପ୍ରାଣ ହରାଇଥିବା ଲୋକଙ୍କୁ ମନେରଖିବାର ଏହାହିଁ ପ୍ରକୃଷ୍ଟ ପନ୍ଥା ।

# ଅନୁଷ୍ଠାନ ଗଠନ

ଏମିତି ଏକ ଦିନ ଆସିଲା ଯେଉଁଦିନ ସବୁ ବାଧା, ଅସୁବିଧା ସତ୍ତ୍ୱେ ମୁଁ ପାଦ ଆଗକୁ ବଢ଼େଇଲି । ଚାକିରୀରୁ ଇସ୍ତଫା ଦେଇଦେଲି । ମୋର ଚାକିରୀ ଆହୁରି ସାତ ବର୍ଷ ବାକି ଥିଲା, ମୁଁ ସ୍ୱେଚ୍ଛାକୃତ ଭାବେ ଇସ୍ତଫା ଦେଲି । ମୋ ବନ୍ଧୁମାନେ ବିସ୍ମିତ ଓ ମର୍ମାହତ ହେଲେ । ତାଙ୍କ କହିବା କଥା ଥିଲା, ସେମିତି କ'ଣ କିଏ କରେ ? ଏମିତି ସମ୍ମାନଜନକ ତଥା ଭଲ ଦରମା ବାଲା ଚାକିରୀଟିଏ ତୁମେ କାହିଁକି ଛାଡ଼ିବାକୁ ଚାହୁଁଚ ? ତୁମର କ'ଣ ସବୁ ହୋଇଯାଇଛି ? ଏସବୁ ପ୍ରଶ୍ନ ପାଇଁ ମୋ ଉତ୍ତର ଥିଲା ଏମିତି ଦୀର୍ଘ ୩୫ ବର୍ଷ ଧରି ମୁଁ ଚାକିରୀ କରି ନିଜ ଅଭିଳାଷକୁ ଚରିତାର୍ଥ କରିଛି । ଏବେ ମୁଁ ନିଜକୁ ମୁକ୍ତ କରିଦେବାକୁ ଚାହେଁ । ତା'ପରେ ଫାଉଣ୍ଡେସନର ଜନ୍ମ ହେଲା । ମୋର ସବୁ ପ୍ରେରଣାକୁ ଏକାଠି କରି ମୁଁ ରାତି ଦିନ କାମ କଲି ଓ ନିଷ୍ଠାର ସହ ଅନୁଷ୍ଠାନର ସ୍ଥାପନ କଲି । ମୋ ପିଲାମାନେ ବଡ଼ ହେଉଥିଲେ । ନିଜ ଗୋଡରେ ଛିଡ଼ା ହେବା ପାଇଁ ଆଉ ଅଳ୍ପ କେତୋଟି ବର୍ଷ ବାକି । ମୋ ସ୍ୱାମୀ ପ୍ରଥମେ ପ୍ରଥମେ ରାଜି ହେଉ ନଥିଲେ କିନ୍ତୁ ପରେ ମୋ କାମରେ ସହାୟକ ହେଲେ । ମୋ ବନ୍ଧୁମାନେ ମୋତେ ଅନେକ ଉତ୍ସାହ ଦେଲେ । କେହି କେହି ତ ମୋତେ ମୋ ସ୍ୱପ୍ନ ପୂରଣ ପାଇଁ ଯାହା କିଛି ବି ଦରକାର ସବୁ କିଛି ଧୈର୍ଯ୍ୟର ସହ କରି ଚାଲିବା ପାଇଁ ବାରମ୍ବାର ମନେପକାଉ ଥିଲେ । କାମ ବଡ଼ କଠିନ ଥିଲା ସତ କିନ୍ତୁ ଭଗବାନଙ୍କ କରୁଣାରୁ ଗୋଟେ ପରେ ଗୋଟେ ସବୁ କିଛି ଠିକ୍ ଠାକ୍ ହୋଇଗଲା । ଏଥିପାଇଁ ସବା ଆଗରେ ମୁଁ ଆମର ଆଇନ ପରାମର୍ଶଦାତା ଶ୍ରୀଯୁକ୍ତ ଏସ.ସି. ନନ୍ଦଙ୍କୁ ଧନ୍ୟବାଦ ଜଣାଇବା ଉଚିତ ।

କେତେଜଣ ପ୍ରସିଦ୍ଧ ବ୍ୟକ୍ତି ମଧ୍ୟ ଅନୁଷ୍ଠାନ ସହ ଜଡ଼ିତ ହେବା ପାଇଁ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ଅନୁଷ୍ଠାନ ସ୍ଥାପନ କରିବା ପାଇଁ ପ୍ରାରମ୍ଭିକ ପର୍ଯ୍ୟାୟରେ ଯେଉଁ ପ୍ରୋତ୍ସାହନ ଲୋଡ଼ା, ମୋତେ ଏହି ବ୍ୟକ୍ତିମାନଙ୍କର ସମର୍ଥନ ଓ ଉତ୍ସାହରୁ ତାହା ମିଳିଥିଲା ।

ସେହି ବରେଣ୍ୟ ବ୍ୟକ୍ତିଗଣ ହେଲେ : ଶ୍ରୀଯୁକ୍ତ ଲଳିତ ମାନସିଂହ ଯିଏ ଆମେରିକାରେ ଭାରତୀୟ ରାଷ୍ଟ୍ରଦୂତ ଥିଲେ, ଜ୍ଞାନପୀଠ ବିଜୟିନୀ ପ୍ରତିଭା ରାୟ, ଅମରେନ୍ଦ୍ର ଖଟୁଆ ଯିଏ ଆର୍ଜେଣ୍ଟିନାରେ ଭାରତୀୟ ରାଷ୍ଟ୍ରଦୂତ ଥିଲେ ଓ ICCR ର ଅଧ୍ୟକ୍ଷ ଭାବେ

ଅବସର ନେଇଛନ୍ତି । ଏମାନଙ୍କ ବ୍ୟତୀତ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଓ ଜାମିଆ ମିଲିଆ ବିଶ୍ୱବିଦ୍ୟାଳୟର ଅନେକ ପ୍ରଫେସର, ସମାଜକର୍ମୀ ଓ ବିଶିଷ୍ଟ କଳାକାରମାନେ ମୋତେ ଉତ୍ସାହିତ କରିଛନ୍ତି । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳସଚିବ ଡ. କେ.କେ. ପଣ୍ଡାଙ୍କୁ ମଧ୍ୟ ମୁଁ ଅଶେଷ କୃତଜ୍ଞତା ଜ୍ଞାପନ କରୁଛି । ମୁଁ ଅନୁଷ୍ଠାନ ଆରମ୍ଭ କରିବା କଥା ଜାଣି ସେ ମୋ କାମର ଉଚ୍ଚ ପ୍ରଶଂସା କରଥିଲେ । ପଦୁଟିଏ ଉତ୍ସାହଜନକ କଥାରେ କାମ କେମିତି ଆଗେଇ ଯାଏ ମୁଁ ଉପଲବ୍ଧି କରିଥିଲି । ଆରମ୍ଭରୁ ହିଁ ପ୍ରତିଭା ରାୟ ମୋର ଆଦର୍ଶ ଓ ମୋ ପାଇଁ ଉପଦେଷ୍ଟା ସାଜିଛନ୍ତି । ତାଙ୍କର ପରୋକ୍ଷ ସମର୍ଥନ ମଧ୍ୟ ମୋତେ ଅସୁବିଧା ବେଳେ ସାହାଯ୍ୟ କରିଛି । ଆମେ ଅନେକ ସମୟରେ ଟେଲିଫୋନରେ କଥା ହେଉ ଓ ସେଇଥିରୁ ହିଁ ମୋତେ ଯଥେଷ୍ଟ ପ୍ରେରଣା ମିଳିଯାଏ । ଯେତେବେଳେ ମୁଁ ଝିଅ ପିଲାଙ୍କ ଉପରେ ମୋ ବହିର କାମ କରୁଥିଲି ଯାହା ପରେ ପେଙ୍ଗୁଇନ୍ ଦ୍ୱାରା ପ୍ରକାଶିତ ହେଲା ପ୍ରତିଭା ରାୟ ଅକୁଣ୍ଠ ଚିତ୍ତରେ ତାଙ୍କର ଗୋଟିଏ ଗପ ବହିରେ ସ୍ଥାନିତ କରିବା ପାଇଁ ମୋତେ ଦେଇଥିଲେ । ସେ ବହିରେ ଫକୀରମୋହନଙ୍କ 'ରେବତୀ' ଗପଟି ମଧ୍ୟ ସ୍ଥାନ ପାଇଛି । ଏ ବହିରେ ଅର୍ଥନୀତି ଓ ସାହିତ୍ୟ – ଉଭୟର ସମ୍ମିଶ୍ରଣ ଘଟିଛି । ବହିଟିର ନାମ ହେଲା : Her Story So Far - Tales of the Girl Child in India, (Penguin Books) ।

ଲଳିତ ମାନସିଂହ ହେଲେ ଓଡ଼ିଶାର ଗୌରବ । ମୋର ସୌଭାଗ୍ୟ ଯେ, ଫାଉଣ୍ଡେସନ ଚଳାଇବା ସମ୍ବନ୍ଧରେ ମୁଁ ତାଙ୍କଠାରୁ ଉପଦେଶ ଓ ନୈତିକ ସମର୍ଥନ ପାଇଛି । ଅନେକ ସମୟରେ ମୁଁ ତାଙ୍କ ଭେଟିବାର ସୁଯୋଗ ପାଇଛି – ତାଙ୍କ ଅଫିସରେ ଓ ତାଙ୍କ ଘରେ । ତାଙ୍କ ସହ ବିଚାର ବିମର୍ଶ କରିଛି । ଓଡ଼ିଶାର ପ୍ରଥିତଯଶା ସାହିତ୍ୟସ୍ରଷ୍ଟା ମାୟାଧର ମାନସିଂହଙ୍କ ଯୋଗ୍ୟ ଉତ୍ତରାଧିକାରୀ ହେଉଛନ୍ତି ଲଳିତ ମାନସିଂହ । ମାୟାଧର ମାନସିଂହ ମଧ୍ୟ ଫକୀରମୋହନଙ୍କ ସାହିତ୍ୟର ଜଣେ ସଶ୍ରଦ୍ଧ ସମର୍ଥକ ଏବଂ ମୌଳିକ ସମାଲୋଚକ ଥିଲେ । ସେ ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ରେ ଫକୀମୋହନ ସମ୍ପର୍କରେ ଉଲ୍ଲେଖ କରି କହିଛନ୍ତି :

*"ଜନସାଧାରଣ ଲୌକିକ ଭାଷାକୁ ଏବଂ ମାଟି-ଓ-ପ୍ରକୃତି-ଘନିଷ୍ଠଭାବରେ ସଂପୃକ୍ତ ଥିବା ନରନାରୀଙ୍କ ସାହିତ୍ୟରେ ବ୍ୟବହାର କରିବା କେବଳ ନୁହେଁ, ସେହି ନିରକ୍ଷର ଚିରବାସ ଅଧମମାନଙ୍କ ଦେଇ ହିଁ ଆମକୁ ବିଶ୍ୱଜନତାର ସ୍ୱାଦ ଦେଇ ପାରିବାରେ, ସକଳ ବିଖ୍ୟାତ ପାଶ୍ଚାତ୍ୟ ଔପନ୍ୟାସିକମାନଙ୍କ ମଧ୍ୟରେ ସେନାପତି ଆମକୁ ଇଂରେଜ ଔପନାସିକ ଟମାସ୍ ହାର୍ଡ଼ିଙ୍କୁ ହିଁ ସ୍ମରଣ କରାଇଥାନ୍ତି । ସେନାପତି ଟମାସ୍ ହାର୍ଡ଼ିଙ୍କର ଆଂଶିକ ସମସାମୟିକ*

*ଥିଲେ । ହାର୍ଡିଙ୍କ ପରି ସେନାପତି ଥିଲେ ଉଭୟ କବି ଓ ଗାଳ୍ପିକ ଏବଂ ତାଙ୍କ ପରି ଓ ଗ୍ରାମାଞ୍ଚଳର ନିମ୍ନ ଶ୍ରେଣୀର ଚରିତ୍ରମାନଙ୍କୁ ବ୍ୟବହାର କରି ହିଁ ପରମ ସୃଷ୍ଟି ସବୁ ଛାଡ଼ିଯାଇଛନ୍ତି; କିନ୍ତୁ ସେନାପତି ଓ ହାର୍ଡି ବା ବିଶ୍ୱସାହିତ୍ୟର ଅନ୍ୟ ଯେକୌଣସି କୀର୍ତିମାନଙ୍କ ଭିତରେ ଏକ ବିରାଟ ପାର୍ଥକ୍ୟ ଏହି ଯେ, ସେନାପତି ଏକମାତ୍ର ମହାପୁରୁଷ, ଯେ କି ଗୋଟିଏ ଭାଷାକୁ ମୃତ୍ୟୁମୁଖରୁ ରକ୍ଷାକଲେ ଓ ପରମଶିଳ୍ପ ଭାବରେ ନାନା ଉତ୍କୃଷ୍ଟ ସୃଷ୍ଟି ଦେଇ ତାକୁ ଅସାଧାରଣ ଭାବରେ ଋଦ୍ଧିମନ୍ତ ମଧ୍ୟ କରିଦେଇଗଲେ; ଯଦିଓ ସେ ଲୋକଜୀବନରେ କେବେହେଲେ ଲେଖକୀୟ ଖ୍ୟାତିର କଳ୍ପନା ହିଁ କରିନଥିଲେ । ଜୀବନଯାକ ତାଙ୍କର ଏକମାତ୍ର ସ୍ୱପ୍ନ ଥିଲା, ସେ ଯେଉଁ ଜାତିର ଜନ୍ମଗ୍ରହଣ କରିଥିଲେ, ତା'ରି ସେବା କରିଯିବା ।*

*ଏକା ଏକା ଉଭୟ ରାମାୟଣ ଓ ମହାଭାରତ ଅନୁବାଦ କରିପକେଇଥିବାରୁ ଓ ସାହିତ୍ୟ-ରାଜ୍ୟରେ ତାଙ୍କର ବହୁବିଧ ଶକ୍ତିମତ୍ତା ଦେଖି, ଓଡ଼ିଶାର ପାଠକସାଧାରଣ ସେନାପତିଙ୍କୁ ଯଥାଯୋଗ୍ୟ ଭାବରେ 'ବ୍ୟାସକବି' ବୋଲି ବିଶେଷିତ କରିଥିଲେ । ପରେ ସାହିତ୍ୟ-ପୋଷାକ ବାମଣ୍ଡା ରାଜଦରବାର ତାଙ୍କୁ ସ୍ପୃହଣୀୟ 'ସରସ୍ୱତୀ' ଉପାଧି ମଧ୍ୟ ଦେଇଥିଲେ । ସେହି ଯୋଗୁଁ ହିଁ ସେ 'ସରସ୍ୱତୀ ଫକୀରମୋହନ' ନାମରେ ପରିଚିତ । ତାଙ୍କପରି କେତେଜଣ ଏପରି ଉପାଧିର ପ୍ରକୃତରେ ଯୋଗ୍ୟ ? ସେନାପତି-ପ୍ରତିଭାର ଏକମାତ୍ର ଅଭାବ ଥିଲା, ଲେଖକ ହେବାପାଇଁ ଘୋର ବ୍ୟକ୍ତିଗତ ବ୍ୟକ୍ତିଗତ ପ୍ରତିକୂଳ ଅବସ୍ଥା ଭିତରେ ଏବଂ ଏକ ଅନୁନ୍ନତ ରାଜ୍ୟରେ ଜନ୍ମହେବା ।" (ପୃ ୨୧୪-୨୧୫, ଗ୍ରନ୍ଥମନ୍ଦିର) ମୁଁ ସେଇ ସାରସ୍ୱତ ପୁରୁଷଙ୍କୁ ପ୍ରଣାମ ଜଣାଉଛି ।*

କଳାକାର ଯତୀନ ଦାସଙ୍କ ସହ ମଧ୍ୟ ସେପରି ସୁଯୋଗ ମିଳିଛି । ଓଡ଼ିଶା ଫୋରମର ଗଠନ ବେଳେ ସେ ମୋ ସାହାଯ୍ୟ ଲୋଡ଼ିଥିଲେ । ମୁଁ ଏହି ଅନୁଷ୍ଠାନର ଜଣେ ସଂସ୍ଥାପକ ସଦସ୍ୟ । ଶ୍ରୀ ଗୋକୁଳ ପଟ୍ଟନାୟକଙ୍କ ନେତୃତ୍ୱରେ ଫୋରମଟି ସୁଚାରୁ ରୂପେ କାମ କରୁଛି । ଦିଲ୍ଲୀ, ଆମେରିକା ଓ ଏପରି ଅନେକ ଜାଗାରେ ଫୋରମଟି ପରିଚିତ ହେଲାଣି । ଫୋରମର ସ୍ମରଣିକା ସମ୍ପାଦନା କରିବା ମୋ ପାଇଁ ଏକ ଆନନ୍ଦର କଥା । ଫୋରମ ଆରମ୍ଭ ହେବା ଦିନରୁ ମୁଁ ଏହି କାମ କରିଆସୁଛି ।

ଆହୁରି ମଧ୍ୟ, ମନେପଡ଼ନ୍ତି ଶ୍ରୀଯୁକ୍ତ ଅମରେନ୍ଦ୍ର ଖଟୁଆ । ଫକୀରମୋହନ ଫାଉଣ୍ଡେସନ ସ୍ଥାପନରେ ଯେ ଯେପରି ସକ୍ରିୟତା ଦେଖାଇଥିଲେ, ମୁଁ ତାଙ୍କ ପାଖରେ କୃତଜ୍ଞ ରହିବି । ଅନୁଷ୍ଠାନଟି ଯେତେବେଳେ ଅଭିଜ୍ଞତାହୀନ ଶୈଶବ ଅବସ୍ଥାରେ ଥାଏ, India Habital Centre ରେ ଏକ କାର୍ଯ୍ୟକ୍ରମ ଆୟୋଜନ କରିବା ପାଇଁ ହେ ବ୍ୟବସ୍ଥା

କରିଦେଇଥିଲେ । ଏହା ଏକ ବଡ଼ ଆୟୋଜନ ଥିଲା । ତାଙ୍କ ସାହାଯ୍ୟ ବିନା ମୁଁ ଏତେବଡ଼ ଦାୟିତ୍ୱ ଏକା ଏକା ମୁଣ୍ଡେଇ ପାରିନଥାନ୍ତି । ଅବଶ୍ୟ କେତେଜଣ ଅଣଓଡ଼ିଆ ବ୍ୟକ୍ତି ମଧ୍ୟ ଅଛନ୍ତି ଯେଉଁମାନଙ୍କ ପାଖରେ ମୁଁ ଋଣୀ । ସେମାନେ ହେଲେ ଅଞ୍ଜନ ଦେବ, ବୁଲବୁଲ ଧର, ଟି.କେ.ଉମେନ, ନିର୍ମଳକାନ୍ତି ଭଟ୍ଟାଚାର୍ଯ୍ୟ, ସାରୋନ୍ ଲୋୱେନ୍, ଟମ୍ ଅଲଟର୍ ଓ ଏହିପରି ଆଉ କେତେଜଣ ।

ସାଧାରଣତଃ ଯେ କେହି ନିଜ ସ୍ମୃତିଚାରଣ କଲାବେଳେ ନିଜ ଜୀବନର ସବୁ ପ୍ରକାରର ଅନୁଭୂତିଗୁଡ଼ିକୁ ପ୍ରକାଶ କରିଥାଆନ୍ତି । ହେଲେ ମୁଁ ନିଷ୍ପତ୍ତି ନେଇଥିଲି ଯେ ମୋ ଜୀବନରେ ଯାହା କିଛି ଫକୀରମୋହନ ସେନାପତିଙ୍କ ସହ ଜଡ଼ିତ କେବଳ ସେହି କଥାଗୁଡ଼ିକୁ ହିଁ ଲେଖିବି ବୋଲି । ତେଣୁ ମୋ ବ୍ୟକ୍ତିଗତ ଜୀବନର ଆଉ କେତୋଟି ଅଧ୍ୟାୟ ଏଠାରେ ଉଦ୍ଦେଶ୍ୟମୂଳକ ଭାବେ ଛାଡ଼ି ଯାଉଛି । ସେ ସବୁର ଫକୀରମୋହନ ସେନାପତିଙ୍କ ସହ କୌଣସି ସଂପର୍କ ନାହିଁ । କିନ୍ତୁ ସେହି ଅକୁହା କଥା ସବୁ ମୋ ଜୀବନକୁ, ଭଲରେ ହେଉ ବା ମନ୍ଦରେ, ଅନେକ ମାତ୍ରାରେ ପ୍ରଭାବିତ କରିଛି । ନାନାଦି ଅଭିଜ୍ଞତାରୁ ମୁଁ ବଞ୍ଚିବାର କଳା ଶିଖିଛି । ଅନେକ ବାଧାବିଘ୍ନ ଅତିକ୍ରମ କରି ମୁଁ ବିଜୟିନୀ ହୋଇ ଆଗେଇ ପାରିଛି । ବିପଦ ସହ ମୁକାବିଲା କରିବା ପାଇଁ ବଞ୍ଚିବାର କରିବା ପାଇଁ ଲୋଡ଼ା ଦୃଢ଼ତା ମୋ ଠାରେ ଅନ୍ତର୍ନିହିତ । ମୋ ସ୍ୱାମୀ ଓ ପୁଅମାନଙ୍କଠୁ ମୁଁ ପାଇଛି ଅକୁଣ୍ଠ ଆଶ୍ୱାସନା ଓ ନୈତିକ ସମର୍ଥନ । ଅବଶ୍ୟ ଏବେ ପଛକୁ ଫେରି ଚାହିଁଲେ ମନେହେଉଛି ଜୀବନର କେତୋଟି ସୁଖଦ ଅନୁଭୂତି ଯୋଗୁଁ ହିଁ କେତେକ ଯନ୍ତ୍ରଣାର କଷ୍ଟ ଲାଘବ ହୋଇଛି । ସେହି ସୁଖକର ଘଟଣାଗୁଡ଼ିକ ମୋ ଜୀବନକୁ ଅନେକ ବାଟରେ ଆଲୋକିତ କରିଦେଇଛନ୍ତି ।

ଯେମିତି ଏକ ଅଦୃଶ୍ୟ ହାତ ମୋତେ ଟାଣି ଆଗକୁ ନେଉଛି ଭଳି ମୋତେ ଲାଗୁଥିଲା । ମୁଁ ମୋର ବଂଶ ଇତିହାସ ଓ ଫକୀରମୋହନଙ୍କ ସାହିତ୍ୟ ଉପରେ ଅଧିକ ଜାଣିବା ପାଇଁ ଚେଷ୍ଟା କଲି । ଏଠାରେ ଫକୀରମୋହନ ରଚିତ କେତେକ ରଚନାଂଶ ସଂଯୁକ୍ତ କରୁଛି ।

**ଜନନୀ ଉତ୍କଳ-ଭାଷା**

(ରାଗ-ଭୈରବ ଝୁଲା)

ମୋ ଜୀବନ ସାର ଧନ ଜନନୀ ଉତ୍କଳ ଭାଷା ।
ଆସ ଗୋ ମା ! କରେ ପୂଜା, ପୂର୍ଣ୍ଣ ହେଉ ପ୍ରାଣ ଆଶା ।
ଭକ୍ତି, ଶ୍ରଦ୍ଧା, ସ୍ନେହ, ମାୟା, ହୃଦୟ ସ୍ୱର୍ଗୀୟ ଧନ,
ଜନନି ଗୋ ! କୃପା କରି କରୁ ତୁହି ବିତରଣ ।
ଜ୍ଞାନ, ବିଦ୍ୟା, ସୁଖ, ଭାଗ୍ୟ ଯାହା କିଛି ମନୁଷ୍ୟତ୍ୱ,
ଜନନି ! ପ୍ରସାଦେ ତବ, ଅନୁଭବେଁ ସାରତତ୍ତ୍ୱ ।
ବିଦ୍ୟାହୀନ, ଶକ୍ତିହୀନ, ଦୀନହୀନ, ଅକିଞ୍ଚନ,
ଆହା ମା, ! କି ଦେଇ ମୁହିଁ ବନ୍ଦିବି ଗୋ ତୋ ଚରଣ ?
ଆତ୍ମଶକ୍ତି ଅନୁସାରେ କରୁଛି ମା ତୋ ବନ୍ଦନା,
ନ ବୁଝିଲି ପାଷାଣ୍ଡ ମୁଁ ଏହା ଲୋକ ବିଡ଼ମ୍ବନା ।
ଦେଇ ମା ଗୋ ! ଭକ୍ତିପୁଷ୍ପ ସେବିବି ଚରଣ ତୋର
ହେଉ ପଛେ ସେ ସୁମନ ଗନ୍ଧହୀନ ଅସୁନ୍ଦର ।
ଏତିକି ପ୍ରାର୍ଥନା ମାତଃ ! କରୁଅଛି ବାରେ ବାରେ,
ଜୀବନ ଅନ୍ତିମ କାଳ ଗତ ହେଉ ତୋ ସେବାରେ ।

## ଅସିତା ଗମନ

ଅଭ୍ରଭେଦୀ ଶୁଭ୍ରଶିଖ ଗିରି ହିମାଳୟ,
ସିନ୍ଧୁ ନୀର ରତ୍ନଗର୍ଭ ଦେବତାନିଳୟ ।
ମୁକ୍ତିକାମୀ ଭକ୍ତିଭାବେ ଯାହାର କନ୍ଦରେ,
ପରଂବ୍ରହ୍ମ ଧ୍ୟାନେ ମଗ୍ନ ଯୁଗଯୁଗାନ୍ତରେ ।
ମହର୍ଷି ଅସିତ ଶିରେ ସିତ ଜଟାରାଶି,
ସ୍ଥବିର ମାନସ ସ୍ଥିର, ପୂତ ପବନାଶୀ ।
ମହାପ୍ରାଜ୍ଞ ତ୍ରିକାଳଜ୍ଞ ଜାଣିଲେ ଧ୍ୟାନରେ,
ଜନ୍ମିଲେ ଅଦ୍ଭୁତ ସୁତ କପିଳ ନଗରେ ।

କଳୁଷ କାଳିମାପୂର୍ଣ୍ଣ ଏ ବିଶ୍ୱ-ସଂସାର -

ଉଦ୍ଧାର କାରଣେ ପରଂବ୍ରହ୍ମ ଅବତାର

**(ବୌଦ୍ଧାବତାର କାବ୍ୟ, ଦ୍ୱିତୀୟ ସର୍ଗର କାୟଦଂଶ)**

ଫକୀରମୋହନ ରଚିତ ସାହିତ୍ୟ ଭିତରୁ ମୋତେ ସବୁଠୁ ବେଶୀ ଭଲ ଲାଗିଥିବା ଲେଖାଗୁଡ଼ିକ ହେଲା ତାଙ୍କ ଆତ୍ମଜୀବନୀ, ତା'ପରେ ଆସିବ ତାଙ୍କ କ୍ଷୁଦ୍ରଗଳ୍ପ ସବୁ । ତନ୍ମଧ୍ୟରୁ ମୋର ସବୁଠୁ ପ୍ରିୟ ହେଲା 'ରେବତୀ' । ତାପରେ ତାଙ୍କ କବିତା, 'ବୌଦ୍ଧାବତାର' କାବ୍ୟ ଓ 'ଉତ୍କଳ ଭ୍ରମଣ' । ଆମ ପରିବାରର କେତେ ଜଣ ଲୋକଙ୍କ ଜୀବନର କେନ୍ଦ୍ରବିନ୍ଦୁ ହେଲେ ହେଲେ ବୁଦ୍ଧ । ମୋ ଜାଣିବା ଅନୁସାରେ ମୋ ମାଆ ବୀଣାପାଣି 'ବୌଦ୍ଧାବତାର' କାବ୍ୟ ପଢ଼ିନଥିଲେ । କିନ୍ତୁ ରହସ୍ୟମୟଭାବେ ସେ ମଧ୍ୟ ବୁଦ୍ଧଙ୍କ ଭକ୍ତ ହୋଇଯାଇଥିଲେ । ସେ କେବେ ମନ୍ଦିର ଯାଉ ନଥିଲେ, ପୂଜାପାଠ କରୁନଥିଲେ କି ହିନ୍ଦୁ ପର୍ବପର୍ବାଣୀ ପାଳନ କରୁନଥିଲେ । କିନ୍ତୁ ତାଙ୍କ ପ୍ରକୃତି ଥିଲା ଆଧ୍ୟାତ୍ମିକ । ଜୀବନ ପ୍ରତି ତାଙ୍କ ଦୃଷ୍ଟିକୋଣ ଥିଲା ହେତୁବାଦୀ । ମୋତେ ଯଦି ପଚରାଯାଏ, ମୁଁ କହିବି ତାଙ୍କ ପାଇଁ ଯଦି 'ଭଗବାନ' ବୋଲି କେହି ଥିଲେ, ସେ ହେଉଛନ୍ତି ବୁଦ୍ଧ । ତାଙ୍କ କୋଠରୀରେ ଏକ ଚୀନାମାଟିର ବୁଦ୍ଧ ମୂର୍ତ୍ତି ଥିଲା । ସେ ପ୍ରତ୍ୟେକ ଦିନ ତାଙ୍କ ଚରଣରେ ତାଜା ଫୁଲଟିଏ ଅର୍ପଣ କରୁଥିଲେ । ଏଥିପାଇଁ ତାଙ୍କ ପସନ୍ଦର ଫୁଲ ଥିଲା ସୁଗନ୍ଧରାଜ, ଯେଉଁଟା ତାଙ୍କ ବଗିଚାରେ ଫୁଟୁଥିଲା ।

ଅଦ୍ଭୁତ କଥା ଯେ, ମାଆଙ୍କ ଦେହାନ୍ତ ପରେ ମୁଁ ଓ ମୋ ସ୍ୱାମୀ ବୌଦ୍ଧ ଧର୍ମ ଆଦରି ନେଲୁ । ଅଦ୍ଭୁତ ସଂଯୋଗ । ସବୁ ଯେମିତି ଆପେ ଆପେ ହୋଇଗଲା । ଜାଣେନି କାହିଁକି । ବୋଧେ ଏକଥା ମୋ ଡି.ଏନ୍.ଏ ରେ ଲେଖାଥିଲା । କିମ୍ବା ହୁଏତ ଏହା ଥିଲା ଆମର କର୍ମ ଫଳ । ଆମେ ଏବେ ପୂରାପୂରି ଭାବେ ବୌଦ୍ଧ ଧର୍ମ ଅବଲମ୍ବନ କରୁଛୁ । ମୋ ସାନ ପୁଅ ବି କିଛି ମାତ୍ରାରେ ବୌଦ୍ଧ ଦର୍ଶନ ପ୍ରତି ଆକର୍ଷିତ । ଥରେ ସେ ବିପଦସଙ୍କୁଳ ପରିସ୍ଥିତିରେ ଥିଲା । ଆମେ ତା'ର ନିରାପତ୍ତା ଆଶା ଛାଡ଼ି ଦେଇଥିଲୁ । ଅଚାନକ ଭାବେ ଦେଖାଦେଲେ ତା'ର ଜଣେ ବନ୍ଧୁ ଯିଏ ନିଜେ ବୌଦ୍ଧ ଧର୍ମ ପାଳନ କରୁଥିଲେ । ସେ ମୋ ପୁଅକୁ ଉଦ୍ଧାର କଲେ । ନବ ବୌଦ୍ଧ ପରମ୍ପରାରେ ସେପରି ଲୋକଙ୍କୁ କୁହାଯାଏ Shoten Zenjin । ଏସବୁ ତ ମୋତେ ଭାରି ରହସ୍ୟମୟ ଲାଗେ ।

# ଚଳଚ୍ଚିତ୍ର 'ଅନ୍ୱେଷଣ' ନିର୍ମାଣ

ଫକୀରମୋହନଙ୍କ ଉପରେ ଗବେଷଣା କରୁ କରୁ ମୁଁ ତାଙ୍କ ଦୁନିଆରେ ହଜିଗଲି । ଏତିକି ବେଳେ, ଦିନେ ହଠାତ୍ ମୋ ମନକୁ ଗୋଟେ କଥା ଜୁଟିଲା । ଫକୀରମୋହନ ଉପରେ ଫିଲ୍ମଟିଏ ତିଆରିଲେ କେମିତି ହୁଅନ୍ତା । ପ୍ରଖ୍ୟାତ ଲେଖକ ଜେ.ପି. ଦାସଙ୍କ କଥା ଶୁଣି ମୋ ଇଚ୍ଛା ଆହୁରି ବଢିଗଲା । ସେ କହିଲେ, "ପରିବାରରେ ଜଣେ ସଦସ୍ୟ କାମ ହାତକୁ ନ ନେଲେ କିଏ କରିବ ପରେ ପରେ ଅନେକ ଲୋକ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଲେ କିନ୍ତୁ ସେମାନଙ୍କଠାରୁ ମିଳିଲା କେବଳ ସମର୍ଥନ ଓ ଉତ୍ସାହ । ପାଞ୍ଚ ବର୍ଷ ଧରି ମୁଁ ସେଠିକି ଏଠିକୁ ଧାଉଁଥାଏ ଓଡ଼ିଶା ସରକାର ଓ ମନ୍ତ୍ରୀମାନଙ୍କୁ ମଧ୍ୟ ଆର୍ଥିକ ସହାୟତା ପାଇଁ ଅନୁରୋଧ କଲି । ଅଥଚ କିଛି ଫଳ ମିଳିଲାନି । ସମସ୍ତେ ମୋ କଥା ବୁଝିଲେ, ଯୋଜନାଟି ଭଲ ବୋଲି ସମର୍ଥନ କଲେ, କିନ୍ତୁ କୁଆଡୁ ହେଲେ ଆର୍ଥିକ ସହାୟତା ମିଳିଲା ନାହିଁ । ତା'ପରେ ମୁଁ ଭାବିଲି କେନ୍ଦ୍ର ସରକାରଙ୍କ ଠାରେ ମୋ ଭାଗ୍ୟ ପରୀକ୍ଷା କରିବି । ବିସ୍ତୃତ ଭାବରେ ପ୍ରସ୍ତାବପତ୍ର ଲେଖି ଦିଲ୍ଲୀରେ ରେସିଡେଣ୍ଟ କମିଶନରଙ୍କୁ ଦେଖା କଲି । ଅନ୍ୟ କେତେ ଜଣଙ୍କ ପାଖକୁ ମଧ୍ୟ ଗଲି ହେଲେ କିଛି ହେଲା ନାହିଁ ।

ତା'ପରେ ଦିନେ ମୋର ଦେଖା ହେଲା ଦୂରଦର୍ଶନ ଡି.ଜି. ଡକ୍ଟର ଏସ୍.ୱାଇ. କୁରେଶିଙ୍କ ସହ । ମୁଁ ତାଙ୍କ ନିକଟରେ ନିଜ ପ୍ରସ୍ତାବ ରଖିଲି - ଫକୀରମୋହନ ସେନାପତିଙ୍କ ଜୀବନ ଓ ଅବଦାନ ଉପରେ ଡକ୍ୟୁ-ଡ୍ରାମା ଫରମାଟରେ ଗୋଟିଏ ଟେଲିଫିଲ୍ମ ତିଆରିବା ପାଇଁ । ସେ ପ୍ରସ୍ତାବ ପତ୍ରଟି ପଢ଼ିଲେ ଓ ସଙ୍ଗେ ସଙ୍ଗେ ହୃଦୟଙ୍ଗମ କଲେ ଯେ କାମଟି ଗୁରୁତ୍ୱପୂର୍ଣ୍ଣ । ସମସ୍ତେ ଜାଣନ୍ତି ଯେ ସେ ଭାରି କର୍ମଠ ଓ ଉତ୍ସାହୀ ଲୋକ । ପ୍ରସ୍ତାବଟି ତତ୍କ୍ଷଣାତ୍ ଗ୍ରହଣ କରି ସେ ଦୂରଦର୍ଶନର ଭୁବନେଶ୍ୱର କାର୍ଯ୍ୟାଳୟର ନିର୍ଦ୍ଦେଶକଙ୍କୁ ମୋ କାମରେ ସାହାଯ୍ୟ କରିବା ପାଇଁ ସ୍ପଷ୍ଟ ନିର୍ଦ୍ଦେଶ ଦେଲେ ।

ମୋ ଖୁସିର ସୀମା ନଥାଏ । କିନ୍ତୁ ଆଗକୁ ଅନେକ କାମ କରିବାକୁ ଥିଲା । ସମୟ ନଷ୍ଟ ନକରି ମୁଁ ଲୋକଙ୍କ ସହ କଥାବାର୍ତ୍ତା ଆରମ୍ଭ କରିଦେଲି । ପଢ଼ାପଢ଼ି କଲି ଓ ଅନ୍ୟାନ୍ୟ କାମ ମଧ୍ୟ ଆରମ୍ଭ ହୋଇଗଲା । ଏଠାରେ ମୁଁ କହିରଖେ ଯେ, ପ୍ରସିଦ୍ଧ ମଞ୍ଚ କଳାକାର ଅନନ୍ତ ମହାପାତ୍ରଙ୍କ ଠାରୁ ମୋତେ ମାର୍ଗଦର୍ଶନ ମିଳିଥିଲା । ଅଭିନେତା ଲଲାଟେନ୍ଦୁ

ମହାପାତ୍ର ମଧ୍ୟ ଅନେକ ସାହାଯ୍ୟ କରିଥିଲେ । ତାଙ୍କୁ ଅନେକ ଜିନିଷ ଜଣା । ଫିଲ୍ମର ପୃଷ୍ଠଭୂମିକେନ୍ଦ୍ରିକ ତଥ୍ୟ ସଂଗ୍ରହ କରିବାରେ ଡ. କୈଳାଶ ପଟ୍ଟନାୟକଙ୍କ ଠାରୁ ବହୁତ ସାହାଯ୍ୟ ମିଳିଥିଲା । ତାଙ୍କ ନିକଟରେ ମୁଁ ଗଭୀର କୃତଜ୍ଞ ।

ତା'ପରେ ଆମେ ବିଭିନ୍ନ ଜାଗା ବୁଲି ଦେଖିଲୁ - ବାଲେଶ୍ୱର ଓ ଅନ୍ୟାନ୍ୟ ସ୍ଥାନ ଯେଉଁଠାରେ ଫକୀରମୋହନ ସେନାପତି ବ୍ରିଟିଶ ଅମଳରେ ଦେୱାନୀ କରିଥିଲେ । ଆମେ ଓଡ଼ିଶାର କେତୋଟି ଲାଇବ୍ରେରୀ ଓ ମ୍ୟୁଜିଅମ ମଧ୍ୟ ଯାଇଥିଲୁ । କାମ ସମ୍ବନ୍ଧୀୟ ଯାହା ଦସ୍ତାବିଜ ମିଳିଲା ପଢ଼ିଲୁ । ତା'ପରେ ଆମେ ଓଡ଼ିଶାର କେତୋଟି ଲାଇବ୍ରେରୀ ଓ ମ୍ୟୁଜିଅମକୁ ମଧ୍ୟ ଯାଇଥିଲୁ । କାମ ସମ୍ବନ୍ଧୀୟ ଯାହା ଦସ୍ତାବିଜ ମିଳିଲା ପଢ଼ିଲୁ । ତା'ପରେ ଆରମ୍ଭ ହେଲା ସୁଟିଂ । ବାଲେଶ୍ୱରରେ ଶାନ୍ତିକାନନ ହେଲା ଆମର ଏକ କେନ୍ଦ୍ରସ୍ଥଳ । ନୀଳଗିରି ରାଜପ୍ରସାଦର ଅନୁଭୂତି ମୋ ମନରେ ଅଲିଭା ହୋଇ ସ୍ମୃତି ରହିଛି । ପୋଖରୀ, ଗାଁ ହାଟ ଆଉ ପୃଷ୍ଠଭୂମିରେ ନୀଳଗିରି ପାହାଡ - ଏ ଦୃଶ୍ୟ ଭାରି ଚିତ୍ତାକର୍ଷକ ଥିଲା । ବାଲେଶ୍ୱରର 'ଭୁଜାଖିଆ ପୀର' ଠାରେ ଯେଉଁ ସୁଟିଂ ହେଲା ତାହା ମଧ୍ୟ ମୋର ଏକ ଚମତ୍କାର ଅନୁଭବ । ଶୋଭାଯାତ୍ରା, ଚାଦର ଚଢ଼େଇବା ଆଦି ସବୁ କଥା ଟିକିନିଖି କରି ଯୋଜନା କରାଯାଇଥିଲା । ହଠାତ୍ ଆରମ୍ଭ ହୋଇଗଲା ବର୍ଷା । ମୁଁ ଚିନ୍ତାରେ ପଡିଗଲି ଓ ବ୍ୟାକୁଳ ହୋଇ ପ୍ରାର୍ଥନା କରିବା ଆରମ୍ଭ କରିଦେଲି । ମୋ ପ୍ରାର୍ଥନାର ଉତ୍ତର ମିଳିଲା । ଭାଗ୍ୟକୁ ବର୍ଷା କମିଗଲା । ଚାରିଆଡେ ଫର୍ଚ୍ଚା ହୋଇଗଲା ପରେ ଆମେ ସୁଟିଂ ଆରମ୍ଭ କଲୁ । ସେଠାକାର ମୁସଲମାନ ବାସିନ୍ଦାମାନେ ଭାରି ସାହାଯ୍ୟ ପରାୟଣ ଥିଲେ । ସେ ସୁଟିଂ ଅନୁଭୂତି ମୋ ଜୀବନରେ ଅଭୁଲା ହୋଇ ରହିବ । ଆମେ ଚାନ୍ଦିପୁରରେ ମଧ୍ୟ ଫକୀର ମୋହନଙ୍କ ଗଞ୍ଜରେ ଥିବା ପାଲଟଣା ଜାହାଜ ଓ ଡଙ୍ଗାର କେତୋଟି ଦୃଶ୍ୟ ସୁଟିଂ କରିଥିଲୁ ।

ବାଲେଶ୍ୱରରେ ପାଦ ଦେଲା ପରେ ମୋ ମନରେ ପୁରୁଣା ଦିନ ଅଭୁଲା ସ୍ମୃତି ଉଙ୍କିମାରିଲା । ବାଲେଶ୍ୱରରେ ବାରବାଟି ବାଳିକା ବିଦ୍ୟାଳୟରେ ମୁଁ ପାଠ ପଢୁଥିଲି । ମୋ ମାଆ ସେଠାରେ ପ୍ରଧାନ ଶିକ୍ଷୟିତ୍ରୀ ରହିଥିଲେ । ଆମେ କିଛି ଦିନ ପାଇଁ ମଲ୍ଲିକାଶପୁର ଠାରେ ଥିବା ଫକୀରମୋହନଙ୍କ ଘରେ ରହିଥିଲୁ । ତା'ପରେ ସ୍କୁଲ ପରିସରରେ ପ୍ରଧାନ ଶିକ୍ଷୟତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ଥିବା ବଙ୍ଗଳାକୁ ଚାଲିଆସିଲୁ । କିନ୍ତୁ ଆମେ ସମୟ ସମୟରେ ଶାନ୍ତିକାନନ ବୁଲିବାକୁ ଯାଉଥିଲୁ । ଏହି ବଗିଚାଟିକୁ ଫକୀରମୋହନ ଅତି ଯତ୍ନରେ ସଜାଇ ରଖିଥିଲେ । ସେଠାରେ ଅନେକ ପ୍ରକାରର ଗଛ ଲଗାଇଥିଲେ । କେତେ ଜାତିର ଫଳ ଗଛ ମଧ୍ୟ ଥିଲା । ତା'ସହିତ କେତୋଟି ମାର୍ବଲ ମୂର୍ତ୍ତି ମଧ୍ୟ ସ୍ଥାପନ କରାଯାଇଥିଲା । ସେ ମୂର୍ତ୍ତିଗୁଡ଼ିକ ଅବଶ୍ୟ ଏବେ ମୁଁ ଆଉ ଦେଖିପାରୁ ନାହିଁ । ବଗିଚାରେ ଥିବା ବଡ଼ା ବଡ଼ା ଗଛ

ଦେଖି ଲାଗିବ ଯେମିତି ଫକୀରମୋହନ ଗୋଟେ ରକମର ଉଦ୍ଭିଦ ବିଜ୍ଞାନୀ ଓ ପରିବେଶବିତ୍ ଥିଲେ । ଫକୀରମୋହନ ସାହିତ୍ୟ ପରିଷଦର ସଦ୍ୟମାନଙ୍କଠାରୁ ଜାଣିବାକୁ ପାଇଲି ଯେ ଫକୀରମୋହନ ହିଁ କେତେଗୁଡ଼ିଏ ଗଛ ଆଣି ଓଡ଼ିଶାରେ ପରିଚିତ କରାଇଥିଲେ । ସେଥିମଧ୍ୟରେ ଚା', ଫୁଲକୋବି, ବନ୍ଧାକୋବି ଆଦି ଅନ୍ୟତମ ।

ଶାନ୍ତିକାନନକୁ ଆସି ମୋର ମାର୍ବଲ ମୂର୍ତ୍ତିଗୁଡ଼ିକ କଥା ମନେପଡିଲା । ସେଗୁଡ଼ିକ ଫକୀରମୋହନ ସ୍ଥାପନ କରିଥିଲେ । ମୋର ସ୍ପଷ୍ଟ ଭାବେ ମନେଅଛି ଗୋଟିଏ ନାରୀମୂର୍ତ୍ତି ଯାହା ହାତରେ ଥିବା କଳସୀରୁ ପାଣି ବାହାରୁ ଥିଲା । ବଗିଚାରେ ପାହାଚଯୁକ୍ତ ପୋଖରୀ ଥିଲା । ମୋ ମାଆ କହୁଥିଲେ ଯେ ସେହି ପୋଖରୀରେ ଏକଦା ରଙ୍ଗବେରଙ୍ଗୀ ମାଛ ଥିଲେ । ହୁଏତ ଗୋଲ୍ଡ ଫିସ୍ ଥିଲେ, କିନ୍ତୁ ଏବେ ସେସବୁ ଅତୀତ । ଦୁଃଖର କଥା ଯେ, ସେଠାରେ ଗୋଟିଏ ହେଲେ ମଧ୍ୟ ମାର୍ବଲ ମୂର୍ତ୍ତି ରହିଯାଇନାହିଁ । ବଗିଚାଟି ଯେପରି ମ୍ରିୟମାଣ ଅବସ୍ଥାରେ ଅଛି ବର୍ଣ୍ଣନା କରିବାକୁ କଷ୍ଟ ଲାଗୁଛି । ଏବେ ସେଠାରେ ଫକୀରମୋହନ ପାର୍କ ନାମରେ ଗୋଟିଏ ଶିଶୁଉଦ୍ୟାନ ହୋଇଛି ବୋଲି ଶୁଣୁଛି । ଭାଗ୍ୟର କଥା ଯେ ଫକୀରମୋହନ ନିଜର ମଧ୍ୟ ଏକ ମୂର୍ତ୍ତି ସ୍ଥାପନ କରିଥିଲେ ଓ ତାହା ଏବେ ଯାଏଁ ଅକ୍ଷତ ରହିଛି । ତାଙ୍କର 'ସର୍ବ ଧର୍ମ ସମନ୍ୱୟ ସ୍ତମ୍ଭ' ଟି ମଧ୍ୟ ସୁରକ୍ଷିତ ଭାବେ ଦଣ୍ଡାୟମାନ । ଏଥିପାଇଁ ଭଗବାନଙ୍କୁ ଅଶେଷ ଧନ୍ୟବାଦ । ସେହି ସ୍ତମ୍ଭଟି ଫକୀରମୋହନଙ୍କ ଧର୍ମନିରପେକ୍ଷ ବିଚାରଧାରାର ପ୍ରମାଣ । ସ୍ତମ୍ଭରେ ହିନ୍ଦୁ, ଇସଲାମ, ଖ୍ରୀଷ୍ଟିଆନ, ବୌଦ୍ଧ ଆଦି ସବୁ ଧର୍ମର ପ୍ରତୀକ ରହିଛି । ସଂପ୍ରତି ଏହି ଧର୍ମଗୁଡିକୁ ପ୍ରତି ସମାନ ଶ୍ରଦ୍ଧାଭାବ ରଖି ଯଦି ଆମେ ଚଳପ୍ରଚଳ ହୁଅନ୍ତେ ତେବେ କେତେ ଭଲହୁଅନ୍ତା । ଆଜିର ଦୁନିଆରେ ବିବାଦଭରା ଅଶାନ୍ତ ବାତାବରଣରେ ଫକୀରମୋହନ ହେଉଛନ୍ତି ସଂହତିର ବାର୍ତ୍ତାବହ । ତାଙ୍କ ଧର୍ମନିରପେକ୍ଷ ବିଚାରଧାରାରେ ମୁଁ ଏତେ ମାତ୍ରାରେ ପ୍ରଭାବିତ ହେଲି ଯେ, ମୁଁ ଫକୀରମୋହନ ଫାଉଣ୍ଡେସନର କାମରେ 'ମାନବ ଧର୍ମ' ର ଏକ ପରିକଳ୍ପନା ପ୍ରଚାର କରି ଚାଲିଲା । ମାନବ ଧର୍ମ ହେଉଛି ମାନବିକତାର ଧର୍ମ । ଫାଉଣ୍ଡେସନର ଲୋଗୋରେ ସର୍ବ ଧର୍ମ ସମନ୍ୱୟ ସ୍ତମ୍ଭର ଚିତ୍ର ରହିଛି । ଫାଉଣ୍ଡେସନର ଅଧ୍ୟକ୍ଷ ହିସାବରେ ମୁଁ ସବୁବେଳେ ସତର୍କ ରହେ ଯେମିତି ଏହି ଲୋଗୋଟି ଆମର ସବୁ କାର୍ଯ୍ୟକ୍ରମରେ ପ୍ରଦର୍ଶିତ ହୁଏ । ତା'ଛଡା ସ୍କୁଲ, କଲେଜ, ୟୁନିଭରସିଟି ପିଲାଙ୍କ ପାଇଁ ଆମର ଯେଉଁ କର୍ମଶାଳା ହୁଏ ସେଥିରେ ମଧ୍ୟ ମାନବ ଧର୍ମର ଆଲୋଚନାକୁ ସ୍ଥାନ ଦେବା ପାଇଁ ଆମେ ଚେଷ୍ଟା କରୁଛୁ । ଅବଶ୍ୟ ଅର୍ଥ ଅଭାବରୁ ଏହି କାମ ଏ ଯାଏଁ ପୂର୍ଣ୍ଣମାତ୍ରାରେ ସମ୍ଭବ ହୋଇପାରି ନାହିଁ । ପରିତାପର ବିଷୟ ଯେ, କୋଟି କୋଟି ଟଙ୍କା ଯାଉଛି ଧର୍ମାନ୍ଧ ଉଗ୍ରପନ୍ଥୀଙ୍କ ପାଖକୁ ଓ

ବାବାମାନଙ୍କପାଖକୁ, ଯେଉଁମାନଙ୍କ କାମ ହେଲା ନିରୀହ ଲୋକଙ୍କୁ ଭଣ୍ଡାଇବା । ଭଲ କଥା ହେଲା ଏବେ କେତେଜଣଙ୍କର ମୁଖା ଖୋଲିଯାଇଛି ଓ ସେମାନେ ଜେଲରେ ସଡ଼ୁଛନ୍ତି ।

ଟେଲିଫିଲ୍ମ 'ଅନ୍ୱେଷଣ' ହେଉଛି ପ୍ରକୃତରେ ଏକ docudrama ।  ଫିଚର ଫିଲ୍ମ ଠାରୁ ଏହା ଭିନ୍ନ । ସେହି ବର୍ଷ ଏହା ଶ୍ରେଷ୍ଠ ଟେଲିଫିଲ୍ମ ଭାବେ ପୁରସ୍କୃତ ହେଲା । ପରେ ଭୁବନେଶ୍ୱରରେ ରବୀନ୍ଦ୍ରମଣ୍ଡପରେ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ସମ୍ମାନନୀୟ ନବୀନ ପଟ୍ଟନାୟକ ଓ ପ୍ରସାର ଭାରତୀର CEO ମୋତେ ସମ୍ବର୍ଦ୍ଧନା ଦେଲେ । ଫିଲ୍ମର ଏକ ସଂକ୍ଷିପ୍ତ ସଂସ୍କରଣ ପ୍ରସ୍ତୁତ କରିବା ପାଇଁ ଦୂରଦର୍ଶନ ଆର୍କାଇଭ ଅନୁରୋଧ କଲେ ।

କାମ ଆରମ୍ଭରେ ମୋ ଆଗରେ ଦୁଇଟି ଆହ୍ୱାନ ଥିଲା । ପ୍ରଥମତଃ docudrama ତିଆରି କରିବା କିଛି ସହଜ କଥା ନୁହେଁ । ତା'ପରେ ସେଥିରେ ଫକୀରମୋହନଙ୍କ କୃତିତ୍ୱକୁ ସିନେମାରେ ଅଭିନୟରେ ଦେଖାଇବା ମୋ ପାଇଁ ସହଜ ନଥିଲା । ଅର୍ଥ ଯୋଗାଡ଼ କରିବା ତ ଆଗରୁ ହିଁ ଅସୁବିଧାଜନକ ଥିଲା । ତାହା ସହିତ ଫକୀରମୋହନ ତଥା ତାଙ୍କର ସମକାଳୀନ ବ୍ୟକ୍ତିଙ୍କ ସହ ଜଡିତ ଅନ୍ୟ ଲୋକଙ୍କୁ ଓ ଘଟଣାଗୁଡ଼ିକୁ ରୂପ ଦେବାରେ ଅନେକ ଅସୁବିଧା ଆସିଲା । ତାଙ୍କ ବିଚାରରେ ସାମାଜିକ ସମସ୍ୟାର ସମାଧାନ ହିଁ କେନ୍ଦ୍ରରେ ଥିଲା । ତାଙ୍କ ସାହିତ୍ୟରେ ଏହାର ପ୍ରତିଫଳନ ମିଳେ । ଆଜିର ସମାଜକର୍ମୀଙ୍କ କାମ ଠାରୁ ଏହା କୌଣସି ଗୁଣରେ ଊଣା ନଥିଲା । ଏହି କଥା ଆମକୁ ମନେ ରଖିବାର ଥିଲା । ତାହା ସହିତ ତାଙ୍କ ଧର୍ମନିରପେକ୍ଷ, ମାନବବାଦୀ ବିଚାରକୁ ମଧ୍ୟ ସ୍ପଷ୍ଟ ରୂପେ ଦେଖାଇବାରେ ଥିଲା । ସେଥିପାଇଁ ଆମେ 'ସର୍ବ ଧର୍ମ ସମନ୍ୱୟ ସ୍ତମ୍ଭ' କୁ ବ୍ୟବହାର କଲୁ ଓ ଗୁରୁ କେଳୁ ଚରଣ ମହାପାତ୍ର ଗୀତଟିଏ ଆବୃତ୍ତି କଲେ । କେଳୁ ଚରଣ ମହାପାତ୍ର ଓଡ଼ିଶୀ ନୃତ୍ୟ ଜଗତରେ ଜଣେ ପ୍ରମୁଖ ନାମ । 'ବୌଦ୍ଧାବତାର କାବ୍ୟ' କୁ ଜୀବନ୍ୟାସ ଦେବା ପାଇଁ ମୁଁ ତାଙ୍କୁ ଅନୁରୋଧ କଲି । ଫକୀରମୋହନଙ୍କ ଲେଖାର ଅନ୍ୟ ଏକ ବିଭବ ହେଲା ବ୍ୟଙ୍ଗ୍ୟ । ତାଙ୍କର 'ପେଟେଣ୍ଟ ମେଡିସିନ' କୁ ଗୋପାଳ ଛୋଟରାୟ ଗୀତିନାଟ୍ୟରେ ରୂପାନ୍ତରିତ କରିଥିଲେ । ଆମେ ସିନେମାରେ ତାହା ବ୍ୟବହାର କଲୁ । ଯୁବବର୍ଗ ଓ ପିଲାଙ୍କ ମନୋରଞ୍ଜନ ପାଇଁ କଣ୍ଢେଇନାଚ ରଖାଗଲା । ତା'ପରେ ମୁଁ ଚିନ୍ତା କଲି ଫିଲ୍ମଟି କିପରି ଅଧିକ ଲୋକଙ୍କ ପାଖରେ ପହଞ୍ଚି ପାରିବ । ସେଥିପାଇଁ ଫିଲ୍ମରେ ସଂଳାପଗୁଡ଼ିକର ଇରାଜୀ ଅନୁବାଦ ଲେଖାଗଲା । ହିନ୍ଦୀଭାଷୀ ଲୋକଙ୍କ ପାଖରେ ସିନେମାର ଆଦୃତି ବଢାଇବା ପାଇଁ, ବିଶିଷ୍ଟ ବିଦ୍ୱାନ ନାମବର ସିଂହଙ୍କୁ ସିନେମାର ପରିଚୟ ଦେବା ପାଇଁ ଅନୁରୋଧ କଲୁ । ସେ ଚମତ୍କାର ଭାବେ ସିନେମାର ପରିଚୟ ଦେଲେ । ସେ କହିଲେ, ମୁନସୀ ପ୍ରେମଚାନ୍ଦଙ୍କ

ଠାରୁ ଆରମ୍ଭ କରି ଫକୀରମୋହନ ସେନାପତି ଯାଏଁ ଅନେକ ଲେଖକଙ୍କ ସାହିତ୍ୟରେ ଗାଈ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଛି । ସେ ଫକୀରମୋହନ ଓ ଆଣ୍ଟନ ଚେକୋଭଙ୍କ ଲେଖାରେ ଥିବା ସାଦୃଶ୍ୟ ଘଟଣାଗତି ଆଲୋଚନା କଲେ ।

ଯୁବପିଢ଼ିଙ୍କୁ ଆକର୍ଷିତ କରିବା ଆମର ଅନ୍ୟତମ ଲକ୍ଷ୍ୟ ଥିଲା । ତେଣୁ ମୁଁ କାହାଣୀରେ ଜଣେ ଯୁବ ନାୟକ ସୃଷ୍ଟି କଲି । କାହାଣୀର ବିଶ୍ୱସନୀୟତା ସଂପର୍କରେ ମଧ ଆମକୁ ଭାବିବାର ଥିଲା । ତେଣୁ ମୋର ସହ-ନିର୍ଦ୍ଦେଶକ ବାଧ କଲେ ଯେ ସିନେମାରେ ଗୋଟିଏ ଅଂଶରେ ଫକୀରମୋହନଙ୍କ ବଂଶରୁ କାହାକୁ ଦେଖାଇବାକୁ ହେବ । ସେଥିପାଇଁ ମୋତେ ବଛାଗଲା । ଦିଦିମାଙ୍କୁ ଦେଖାଇବା ପାଇଁ ଫକୀରମୋହନଙ୍କ ଜୀବନର ଏକ ବହୁବିଦିତ ଘଟଣାର ନାଟକୀୟ ରୂପାନ୍ତରଣ କରାଗଲା । ସୁଟିଂ ଆରମ୍ଭରେ ଆମେ ଭାବିଥିଲୁ ଯେ ଫକୀରମୋହନଙ୍କ ଆତ୍ମଜୀବନୀକୁ ଆମେ ନିଷ୍ଠାର ସହ ଅନୁସରଣ କରିବୁ । ଦିଦିମା କେମିତି ଫକୀରମୋହନଙ୍କୁ ଶ୍ରଦ୍ଧା କରୁଥିଲେ ଓ ତାଙ୍କ ଯତ୍ନ ନେଉଥିଲେ ତାହା ସିନେମାରେ ଦେଖାଇବା ପାଇଁ ମୁଁ ଇଚ୍ଛା କରିଥିଲି । ଅନେକ ଲୋକ ଜାଣନ୍ତି ଯେ ଏକଦା ଫକୀରମୋହନ ଭୁଲରେ ବିଷାକ୍ତ ସଲଫ୍ୟୁରିକ ଅମ୍ଳ ପିଇଦେଇଥିଲେ । ସେ ବହୁତ କଷ୍ଟ ପାଇଥିଲେ ଓ ତାଙ୍କ ବୋହୂ ହିରଣପ୍ରଭା ତାଙ୍କର ସେବା କରି ତାଙ୍କୁ ଭଲ କରିଥିଲେ । ମାଆ ମଧ ଅନେକ ସମୟରେ କହୁଥିଲେ ଯେ ଫକୀରମୋହନ ଦିଦିମାଙ୍କୁ ଭାରି ଆଦର କରୁଥିଲେ । ସିନେମାରେ ଏସବୁ କଥା ପ୍ରଦର୍ଶିତ ହେଲା । ଏସବୁ ବ୍ୟତୀତ ନ'ଅଙ୍କ ଦୁର୍ଭିକ୍ଷ ସମ୍ବନ୍ଧୀୟ କଥାଗୁଡ଼ିକୁ ଚିତ୍ର, ସ୍କେଚ୍ ଇତ୍ୟାଦି ଦ୍ୱାରା ଦେଖାଇବାକୁ ଚେଷ୍ଟାକଲୁ । ଫିଲ୍ମଟିକୁ ଅଧିକ ଆକର୍ଷଣୀୟ ତଥା ବିଶ୍ୱାସଯୋଗ୍ୟ କରିବା ପାଇଁ ପାର୍ବତୀ ଘୋଷଙ୍କ ସିନେମା 'ଛମାଣ ଆଠଗୁଣ୍ଠ' ରୁ କେତେକ ଦୃଶ୍ୟ ବ୍ୟବହାର କରାଗଲା । ଫିଲ୍ମରେ ମୁଁ କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କର ସାକ୍ଷାତକାର ମଧ ନେଇଛି । ସେମାନେ ହେଲେ: ସଚ୍ଚି ରାଉତରାୟ, ସୀତାକାନ୍ତ ମହାପାତ୍ର, ଶିଶିର ଦାସ, ପ୍ରତିଭା ରାୟ, ଇନ୍ଦିରା ଗୋସ୍ୱାମୀ, ମନୋଜ ଦାସ, ଅକ୍ଷୟ ମହାନ୍ତି, ପାର୍ବତୀ ଘୋଷ ଓ ସିକାଗୋ ବିଶ୍ୱବିଦ୍ୟାଳୟର ପ୍ରଫେସର ରିକ୍ ସ୍ୱେଡ଼ର୍ ।

ଫିଲ୍ମ ନିର୍ମାଣର ସୁନ୍ଦର ଅନୁଭୂତି ମୁଁ କେବେ ଭୁଲି ପାରିବି ନାହିଁ । ଆରମ୍ଭରୁ କହିରଖୁଛି ଯେ ମୁଁ କୌଣସି ପେଶାଦାର ଚଳଚ୍ଚିତ୍ର ନିର୍ମାତା ନୁହେଁ । ଯଦିଓ ଦିଲ୍ଲୀରେ ଋଷୀୟ ଦୂତାବାସରେ ଫିଲ୍ମ ବନେଇବା ଉପରେ ମୁଁ ଗୋଟେ କୋର୍ସ କରିଥିଲି, ଫକୀରମୋହନ ସେନାପତିଙ୍କ ଉପରେ ଫିଲ୍ମ ତିଆରି କରିବା କଥା ବିଚାର କଲା ବେଳକୁ ମୋତେ କ'ଣ କେମିତି କରାଯିବ କିଛି ହିଁ ଜଣା ନଥିଲା । ବାଲେଶ୍ୱରସ୍ଥିତ ଫକୀରମୋହନ ସାହିତ୍ୟ ପରିଷଦର ଅଧକ୍ଷ ଶ୍ରୀ ବ୍ରଜନାଥ ରଥ ଏହି ଦିଗରେ ମୋତେ ମାର୍ଗଦର୍ଶନ ଦେଲେ

ଓ କେତେକ ଉପାଦେୟ ଦସ୍ତାବିଜ ଦେଲେ । ସେଥିପାଇଁ ମୁଁ ତାଙ୍କ ଠାରେ କୃତଜ୍ଞ । କୌଣସି ପୂର୍ବ ପ୍ରସ୍ତୁତି ନଥାଇ ସେ ଯେଉଁଭଳି ଭାବେ ଫକୀରମୋହନ ଜୀବନ ଓ ସାହିତ୍ୟ ଉପରେ ସୁନ୍ଦର ଆଲୋଚନା କଲେ ମୋର ଆଜି ମଧ୍ୟ ମନେଅଛି । ଏହି ବିଷୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଅଛି । ସେ କେବଳ ଜଣେ ସାହିତ୍ୟ ସାଧକ ନୁହନ୍ତି, ସେ ଜଣେ ଫକୀରମୋହନ ସାଧକ ମଧ୍ୟ । 'ଅନ୍ୱେଷଣ' ସୁଟିଂ ଚାଲିଥିବା ବେଳେ ତାଙ୍କ ଘରେ ଆମ କ୍ୟାମ୍ପ ଲାଗିଯାଉଥିଲା । ଆମ ଫିଲ୍ମରେ ଥିବା ତଥ୍ୟଗୁଡ଼ିକର ସତ୍ୟତା ପ୍ରମାଣିତ କରିବା ପାଇଁ ସେ ଅନେକ ଯତ୍ନରେ କେତୋଟି ଦସ୍ତାବିଜ ଆଣି ଆମକୁ ଦେଖାଇଥିଲେ । ସେ ଆଉ ଇହଧାମରେ ନାହାନ୍ତି କିନ୍ତୁ ତାଙ୍କ ସ୍ମୃତି ଜୀବିତ ଅଛି । ସେ ତାଙ୍କର ଲକ୍ଷ୍ୟସାଧନ ପାଇଁ ସତତ ନିଷ୍ଠାବାନ ଥିଲେ ଓ ଅନ୍ୟଙ୍କୁ ସାହାଯ୍ୟ କରିବା ପାଇଁ ସବୁବେଳେ ତତ୍ପର ଥିଲେ । ଫିଲ୍ମ ତିଆରି ବେଳେ ତାଙ୍କ ସହ ଭଲଭାବେ କଥା ହେବାର ସୁଯୋଗ ପାଇବା ମୋର ସୌଭାଗ୍ୟ ଥିଲା । ଫିଲ୍ମଟି ସହ ଜଡ଼ିତ ଅନ୍ୟ ମାନେ ମଧ୍ୟ ସେମିତି ଅନୁଭବ କରୁଥିବେ ବୋଲି ମୁଁ ନିଶ୍ଚିତ ।

ତଥାପି ମୋ ପାଇଁ ସାହସିକତାର କଥା ଯେ ଫିଲ୍ମଟିର ତିଆରିବା କଥା ମୁଁ ମନସ୍ଥ କଲି । ରବୀନ୍ଦ୍ରନାଥ ଠାକୁରଙ୍କ ଭାଷାରେ "ଚିତ୍ତୋ ଯେଥା ଭୟଶୂନ୍ୟୋ", ଉଚ୍ଚ ଯେଥା ଶିର୍"  । ମୁଁ ଭାବୁଛି ସବୁ କିଛି ସମ୍ଭବ । ମୁଁ ଟଙ୍କା ଯୋଗାଡ଼ କରିବା ଆରମ୍ଭ କଲି । ଅବଶ୍ୟ ତା' ପୂର୍ବରୁ ଫକୀରମୋହନଙ୍କ ଲେଖା ବିଷୟରେ ମୁଁ କିଛି ପଢ଼ାପଢ଼ି କରି ସାରିଥିଲି । ଫିଲ୍ମ ତିଆରି ପାଇଁ ଅର୍ଥ ଯୋଗାଡ଼ କରିବା ଚକ୍କରରେ ସବୁ ଆଡ଼େ ବୁଲିବାକୁ ହେଲା ।

ବିଦେଶରେ ରହୁଥିବା ଓଡ଼ିଆମାନେ ଫିଲ୍ମଟି ଦେଖିବା ପାଇଁ ଆଗ୍ରହ ପ୍ରକାଶ କଲେ । ସେମାନଙ୍କୁ ମୁଁ ଅନୁରୋଧ କଲି ଯେ ଫିଲ୍ମର ଡି.ଭି.ଡି. ସଂଗ୍ରହ କରିବା ପାଇଁ ସେମାନେ ଦୂରଦର୍ଶନ ସହ ଯୋଗାଯୋଗ କରନ୍ତୁ । ସେମାନଙ୍କ ଠାରୁ ଅନୁରୋଧ ଆସିଲା ଓ ଡି.ଭି.ଡି. ପ୍ରସ୍ତୁତ ହୋଇ ପଠାଗଲା ବିଦେଶକୁ । ଫିଲ୍ମଟି ଏବେ ପ୍ରସାର ଭାରତୀ ଆର୍କାଇଭରେ ରହିଛି । ଅନେକ ଚେଷ୍ଟା କରି ପ୍ରସାର ଭାରତୀ ସହାୟତାରେ ଚଳଚ୍ଚିତ୍ରର ଡି.ଭି.ଡି. ପ୍ରକାଶ କରିବାରେ ମୁଁ ସଫଳ ହେଲି । ଦୂରଦର୍ଶନ ଅଭିଲେଖାଗାରର ନିର୍ଦ୍ଦେଶକ ଶ୍ରୀମତୀ କମଳିନୀ ଓ ଅଧ୍ୟାପକ ନାମବର ସିଂ ଙ୍କ ସାହାଯ୍ୟରେ ଏହାର ସଂଳାପର ଇଂରାଜୀ ଅନୁବାଦ ମଧ୍ୟ କରାଇଲି । ଆମେରିକାର ଦର୍ଶକମାନେ (ଅନେକ ଓଡ଼ିଆ) ଦୁଇ ଶହ କପି କିଣି ପକାଇଲେ । ଲାଭାଂଶ ଦୂରଦର୍ଶନକୁ ଗଲା । ମୋ ପାଇଁ ସନ୍ତୋଷଜନକ କଥା ହେଲା ମୋ ପରିଶ୍ରମ ବୃଥା ଗଲା ନାହିଁ । ତିନି ଘଣ୍ଟାର ମୂଳ ଫିଲ୍ମଟି ଏବେ ଦୂରଦର୍ଶନର ଭୁବନେଶ୍ୱର କାର୍ଯ୍ୟାଳୟରେ ଅଛି । କାମ ସରିବା ପରେ ମୁଁ ଶାନ୍ତିରେ ନିଃଶ୍ୱାସ ନେଲି ।

ଉପରୋକ୍ତ ତଥ୍ୟର ପ୍ରମାଣ ସ୍ୱରୂପ ଗୋଟିଏ ଚିଠିର ନକଲ ଏଠାରେ ଉପସ୍ଥାପନ କରୁଛି ?

**ORISSA SOCIETY OF THE AMERICAS**
35th Annual Convention, Dallas, Texas

February [illegible], 2004

Mr. [illegible] Das
New Delhi, India

Dear Mr. Das

It would be our privilege to invite you as a guest to the 35th Annual Convention of the Orissa Society of the Americas (OSA), which will take place in Dallas, Texas during July 1-4, 2004 at the [illegible] Conference Center. We would specifically like you to present your documentary film on Fakir Mohan Senapati during a dedicated session of the convention, followed by a lecture and question-answer session related to your film making experiences. We would also like you to participate in the convention's Women's Forum. We will cover your travel expenses to Dallas and all other living expenses for the duration of your visit to the convention. In order to assist you in putting together your application for a US tourist visa, I am including the following documents with this letter:

- A letter of invitation to attend the OSA Convention by Mr. Hari Arjun Patro, the Secretary Treasurer of OSA
- Letter from Mr. Patro to the US Consulate General, New Delhi pledging financial support and requesting to grant you a visitors visa
- A completed and notarized affidavit of support (INS form I-134)
- Supporting bank statements describing OSA's financial position
- A copy of the 501 (c) certificate, which shows that OSA is registered a non profit and tax exempt organization
- INS Forms DS 156 and DS 157, which have to be completed by you

You will need two passport size photos and the necessary visa application fees to complete the application for a US tourist visa. Please save your receipts for the visa fees so that we may later reimburse you for it.

I do hope that you will have no problems in obtaining the visa. However, please do not hesitate to contact me ([illegible]) or Mr. Patro ([illegible], 972-331 6008) if you need further assistance.

Sincerely,

[illegible] Tripathy
Convener, 35th OSA Convention

2219 Carriage Hill
Denton, Texas 76207

ଫିଲ୍ମରେ ଯେତେବେଳେ ମୋ ନିଜ ଅଭିନୟର ସମୟ ଆସିଲା ମୋର ଏକ ବିଚିତ୍ର ଅନୁଭବ ହେଲା । ଯେତେବେଳେ ମୁଁ ଫକୀରମୋହନ ବାଲେଶ୍ୱରସ୍ଥିତ ଘରେ ପାଦ ଦେଲି (ଯାହା ବର୍ତ୍ତମାନ ଏକ ସଂଗ୍ରହାଳୟ) ମୋ ଲୋମ ଶିହରିତ ହୋଇ ଉଠିଲା । ମୋ ସ୍କୁଲ ସମୟରେ ଏହି ଘରେ ମୁଁ ମୋ ବାପାମାଆଙ୍କ ସହ ରହୁଥିଲି । ଫିଲ୍ମରେ ଗୋଟିଏ ଦୃଶ୍ୟରେ ମୁଁ ପାହାଚ ଚଢୁଥିବା ବେଳେ ମୋର ମନେପଡି ଯାଉଥିଲା ପୁରୁଣା ଦିନଗୁଡ଼ିକର କଥା । ଏମିତି କେତେ ଘଟଣା ଅଛି । ମୁଁ କହିବା ଆରମ୍ଭ କଲେ ସାରିପାରିବିନି ।

ଫିଲ୍ମଟି ପାଇଁ ମୁଁ ଅନେକ ପ୍ରଶଂସା ପାଇଲି । ଭୁବନେଶ୍ୱରରେ ରବୀନ୍ଦ୍ରମଣ୍ଡପରେ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ସମ୍ମାନନୀୟ ନବୀନ ପଟ୍ଟନାୟକ ଓ ପ୍ରସାର ଭାରତୀର CEO ମୋତେ ସମ୍ବର୍ଦ୍ଧନା ଦେଲେ । Odia Society of America ମୋତେ ଡାଲାସଠାରେ ଅନୁଷ୍ଠିତ ହେବାକୁ ଥିବା ଏହାର ୩୧ତମ ସମ୍ମିଳନୀକୁ ନିମନ୍ତ୍ରଣ କରିଥିଲେ । ପରେ ମୋତେ ସିଆଟେଲ ଆସିବା ପାଇଁ ମଧ୍ୟ ନିମନ୍ତ୍ରଣ ମିଳିଥିଲା । ଓଡ଼ିଆ ସୋସାଇଟି ଆମେରିକା (OSA) ରୁ ନିମନ୍ତ୍ରଣ ପାଇବା ମୋ ପାଇଁ ଗର୍ବର କଥା ଥିଲା କାରଣ ଫିଲ୍ମ ତିଆରି ବେଳେ

ମୋ ଲକ୍ଷ୍ୟ ଥିଲା କେମିତି ଫିଲ୍ମଟି ଆମେରିକା ଓ ଅନ୍ୟାନ୍ୟ ଦେଶରେ ରହୁଥିବା ସବୁ ପାଢିର ଭାରତୀୟଙ୍କୁ ପାଖରେ ପହଞ୍ଚି ପାରିବ । ଫକୀରମୋହନ ସେନାପତିଙ୍କ ମାଧ୍ୟମରେ ବିଦେଶରେ ରହୁଥିବା ଭାରତୀୟଙ୍କ ଆମ ସଂସ୍କୃତି ଓ ଐତିହ୍ୟ ସହ ପରିଚିତ କରାଇବା ମୋର ଉଦ୍ଦେଶ୍ୟ ଥିଲା । ଦିଲ୍ଲୀରେ India Habitat Centre ଓ India International Centre ରେ ଫିଲ୍ମଟି ଅନେକ ଥର ପ୍ରଦର୍ଶିତ ହୋଇଛି । ଓଡ଼ିଶାରେ ମଧ୍ୟ ଅନେକ ଥର ପ୍ରଦର୍ଶିତ ହୋଇଛି । ଅଧିକ ସୂଚନା ପାଇଁ ଖବରକାଗଜରେ ପ୍ରକାଶିତ କେତୋଟି ରିପୋର୍ଟ ତଳେ ଦିଆଗଲା ।

## ଦିଲ୍ଲୀରେ ଫକୀରମୋହନ ଜୟନ୍ତୀ

HAPPE

## A great grandaughter's tribute



ମୁଁ ଫିଲ୍ମଟିରେ ଭାରତର ତଥା ବିଦେଶର ଅନେକ ପ୍ରସିଦ୍ଧ ଲୋକଙ୍କର ସାକ୍ଷାତକାର ସ୍ଥାନିତ କରିଛି । ସାକ୍ଷାତକାର ଦେଇଥିବା ବ୍ୟକ୍ତିଗଣଙ୍କ ତାଲିକା ଦିଆଗଲା ।

୧ ) ପ୍ରଫେସର ଶିଶିର ଦାସ

୨ ) ପ୍ରଫେସର ନାମୱର ସିଂ

୩) ଶ୍ରୀମତୀ ଇନ୍ଦିରା ଗୋସ୍ୱାମୀ

୪) ଲେଖକ ମନୋଜ ଦାସ

୫) ପ୍ରତିଭା ରାୟ (ଜ୍ଞାନପୀଠ ବିଜୟିନୀ)

୬) ସଚ୍ଚି ରାଉତରାୟ (ଜ୍ଞାନପୀଠ ବିଜେତା)

୭) ଅକ୍ଷୟ ମହାନ୍ତି (ଓଡ଼ିଶାର ପ୍ରଖ୍ୟାତ କଣ୍ଠଶିଳ୍ପୀ, ଗୀତିକାର ଏବଂ ସଂଗୀତ ନିର୍ଦ୍ଦେଶକ)

୮) ସୀତାକାନ୍ତ ମହାପାତ୍ର (ଜ୍ଞାନପୀଠ)

୯) ରିକ୍ ସ୍ୱତର୍ (ପ୍ରଫେସର, ସିକାଗୋ ବିଶ୍ୱବିଦ୍ୟାଳୟ)

୧୦) ଗବେଷକ ଅରବିନ୍ଦ ଗିରି

୧୧) କବି ବ୍ରଜନାଥ ରଥ

୧୨) ଡ. ଦେବେନ୍ଦ୍ର ଦାଶ

୧୩) ଡ. କଇଳାସ ପଟ୍ଟନାୟକ

୧୪) ଶ୍ରୀ କେଳୁଚରଣ ମହାପାତ୍ର (ଓଡ଼ିଶୀ ନୃତ୍ୟଗୁରୁ)

ଫକୀରମୋହନ ସେନାପତିଙ୍କ କଥା ଉଠିଲେ ଯେଉଁ ପ୍ରମୁଖ ବ୍ୟକ୍ତିମାନଙ୍କ ମତ ମହତ୍ତ୍ୱ ରଖେ, ସେମାନେ 'ଅନ୍ୱେଷଣ' ପାଇଁ ଚିତ୍ରୋତ୍ତୋଳନ ସମୟରେ ମୋ ପାଇଁ କେତୋଟି ଚିଠି ଲେଖି ଦେଇଥିଲେ । ସେ ଚିଠିଗୁଡ଼ିକର ଶବ୍ଦମାନ ସବୁଦିନ ପାଇଁ ମୋ ମନରେ ଜୀବିତ ରହିବେ । ଉପରୋକ୍ତ ତାଲିକାର କ୍ରମ ଅନୁସାରେ ପ୍ରଥମ ପାଞ୍ଚଜଣଙ୍କର ଲିଖିତ ଟିପ୍ପଣୀଗୁଡ଼ିକର ମୂଳ ହାତଲେଖାର ଅବିକଳ ନକଲ ନିମ୍ନରେ ଦିଆଗଲା ।

## ଡ.ମନିକା ଦାସଙ୍କୁ ପ୍ରତିଭା ରାୟଙ୍କ ସ୍ୱହସ୍ତ ଲିଖିତ ଶୁଭେଚ୍ଛା ପତ୍ର

ବ୍ୟାସକବି ଫକୀରମୋହନଙ୍କ
ସ୍ମୃତିକୋଷ ପାଇଁ
ପ୍ରଫେସର ମନିକା ଦାସଙ୍କୁ

ଶୁଭେଚ୍ଛା ସହ,

ଡ.ମନିକା ଦାସଙ୍କୁ ଶିଶିର କୁମାର ଦାସଙ୍କ ସ୍ୱହସ୍ତଲିଖିତ ପତ୍ର

---

It is a pleasant surprise to meet the granddaughter of one of the greatest writers of our country. We hear the voices of our ancestors through our own voices. Meeting Monica is, therefore, to feel the presence of Fakir Mohan.

I wish her all success.

Sisir Kumar Das

15 Nov 2002

## ଡ.ମନିକା ଦାସଙ୍କୁ ନାମଓ୍ବର ସିଂଙ୍କ ସ୍ୱହସ୍ତ ଲିଖିତ ପତ୍ର

प्रिय मोनिका जी,

आपने फकीर मोहन सेनापति पर फिल्म बनाने का संकल्प लिया और इस प्रसंग में मेरे जैसे सामान्य व्यक्ति को इसमें योगदान करने के लिए चुना — यह आपका उपकार है। पुरखों की स्मृति को दृश्य-श्रव्य माध्यम से जन-जन तक पहुंचाने का प्रयास सांस्कृतिक पुण्य का कार्य है। इस सांस्कृतिक तर्पण से आप तो उऋण हुई हीं, मेरे साथ-साथ आपने हिंदी जाति को कृतार्थ कर दिया। आप जैसी विदुषी महिला से परिचित होकर मैं आज के दिन को धन्य मानता हूं। यह दिन मेरे लिए यादगार रहेगा।

शुभकामनाओं के साथ

ना. [signature]

24/10/2002

ଡ.ମନିକା ଦାସଙ୍କୁ ନାମୱର ସିଂଙ୍କ ସ୍ୱହସ୍ତ ଲିଖିତ ଶୁଭେଚ୍ଛା ପତ୍ର

शुभकामना

फकीर मोहन प्रतिष्ठान (फाउन्डेशन)
की स्थापना प्रशंसनीय है। भारत की राजधानी
दिल्ली में यह प्रतिष्ठान निश्चय ही
उड़िया के उस महान साहित्यकार की
स्मृति को सुरक्षित रखने का कार्य करता रहे
यही मेरी हार्दिक शुभकामना है।

5/12/2012

ଡ.ମନିକା ଦାସଙ୍କୁ ଇନ୍ଦିରା ଗୋସ୍ୱାମୀଙ୍କ ସ୍ୱହସ୍ତ ଲିଖିତ ପତ୍ର

To
Monika -

I am really overwhelmed to know that you are the grand daughter of late Fakir Mohan Senapati. I feel honoured by your presence.

The writings of Fakir Mohan always inspired me. I can never forget him.

Indira Goswami
23. 10. 02.

# ଆନ୍ତର୍ଜାତିକ ସ୍ତରରେ ଫକୀରମୋହନ ସେନାପତି

ଧୀରେ ଧୀରେ ମୁଁ ଜାଣିବାକୁ ପାଇଲି ଯେ ଫକୀରମୋହନଙ୍କର ଲେଖକ ହିସାବରେ ଆନ୍ତର୍ଜାତିକ ଖ୍ୟାତି ରହିଛି । ୨୦୦୭ ମସିହା ଜାନୁୟାରୀ ୩ ତାରିଖରେ ଏକ ଆନ୍ତର୍ଜାତିକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହାର ଆୟୋଜକ ଥିଲେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର Developing Countries Research Centre ଓ କର୍ଣ୍ଣେଲ ବିଶ୍ୱବିଦ୍ୟାଳୟର The Future of Minority Studies (FMS) Research Project South Asia Programme. ସମ୍ମିଳନୀର ଆଲୋଚ୍ୟ ବିଷୟ ଥିଲା 'The Literary View from Below and Fakir Mohan Senapati's 'Six Acres and a Third' and Radical Social Critique in Modern South Asian Literature'। ସେତେବେଳେ ମୁଁ Countries Research Centre ରେ ଫେଲୋ ଥିଲି । ସମ୍ମିଳନୀ ଆୟୋଜନରେ ମୁଁ ମଧ୍ୟ ସକ୍ରିୟ ଥିଲି । ସେତେବେଳେ ମୋ ଚଳଚ୍ଚିତ୍ର 'ଅନ୍ୱେଷଣ' ମଧ୍ୟ ପ୍ରଦର୍ଶିତ ହେଲା । ଏହି ସମ୍ମିଳନୀ ଡ. ମନୋରଞ୍ଜନ ମହାନ୍ତିଙ୍କର ତତ୍ତ୍ୱାବଧାନରେ ଆୟୋଜିତ ହୋଇଥିଲା । ଡ. ମହାନ୍ତି Chinese Studies ର ଜଣେ ବିଶେଷଜ୍ଞ । ସେତେବେଳେ ଭାରତର ବିଭିନ୍ନ ସ୍ଥାନରୁ ତଥା ବିଦେଶରୁ ଆସିଥିବା ଅନେକ ଗବେଷକଙ୍କ ସହିତ ମୋର ଦେଖା ହେଲା । ସେମାନଙ୍କ ମଧ୍ୟରୁ କେତେଜଣ ହେଲେ କର୍ଣ୍ଣେଲ ବିଶ୍ୱବିଦ୍ୟାଳୟର ଏସ୍.ପି.ମହାନ୍ତି, ଅଲକା ବାସୁ, Eshade University of California, Los Angeles, Syracuse Universityର ଚନ୍ଦ୍ର ତାଲପଡ଼ା, ଜବାହାରଲାଲ ବିଶ୍ୱବିଦ୍ୟାଳୟର ଜି.କେ.ଭି ପ୍ରସାଦ, ଦ' ହିନ୍ଦୁ' ର ସମ୍ପାଦକ ଏନ୍.ରାମ, ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଇନ୍ଦିରା ଗୋସ୍ୱାମୀ ଓ ହରୀଶ ତ୍ରିବେଦୀ, University of Wisconsinର ଭି. ନାରାୟଣ ରାୟ, University of Hyderabad ର ସଚ୍ଚିଦାନନ୍ଦ ମହାନ୍ତି । ସେମାନଙ୍କ ବକ୍ତବ୍ୟ ଶୁଣିବା ମୋ ପାଇଁ ଏକ ଶିକ୍ଷାପ୍ରଦ ଅନୁଭୂତି ଥିଲା । ମୋର ଆଖି ଖୋଲିଗଲା, ବିଶେଷତଃ ଏଥି ପାଇଁ ଯେ ମୋର ଅଧ୍ୟୟନର ମୁଖ୍ୟ ବିଷୟଟି ହେଲା ଅର୍ଥନୀତି ।

ଯାହା ମୋତେ ସବୁଠୁ ବେଶୀ ଆଶ୍ଚର୍ଯ୍ୟ କଥା ମନେ ହେଲା ତାହା ହେଲା ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ପତ୍ରିକା Economic and Political Weekly ର ଏକ ପୂରା

ସଂଖ୍ୟା (ଭାଗ- ୬୧, ସଂଖ୍ୟା- ୪୬, ନଭେମ୍ବର ୧୮-୨୪, ୨୦୦୬) ଫକୀରମୋହନ ସେନାପତିଙ୍କ ଉପରେ ଆଧାରିତ ଥିଲା । ସେହି ସଂଖ୍ୟାରେ ଅନେକ ବିଦେଶୀ ଲେଖକଙ୍କ ଲେଖା ସ୍ଥାନ ପାଇଥିଲା । ଯେହେତୁ ମୁଁ ୨୦୦୦ମସିହାରୁ ଲିଙ୍ଗଗତ ସମସ୍ୟା ଉପରେ କାମ କରୁଥିଲି ତେଣୁ Claire Horan ଙ୍କ ଲେଖା 'Representation of Women and Gender Relation in Six Acres and a Third ' ମୋର ଧ୍ୟାନ ଆକର୍ଷଣ କଲା ।

୨୦୦୦ ମସିହା ପରେ ପରେ ହିଁ ମୁଁ IAFFE (International Association for Feminist Economics) ର ସଦସ୍ୟ ହୋଇଯାଇଥିଲି । ସେତେବେଳେ ଏହାର ମୁଖ୍ୟ କାର୍ଯ୍ୟାଳୟ ଥିଲା ଆମେରିକାର ନେବ୍ରୋସ୍କା ଠାରେ । ଏବେ ଅବଶ୍ୟ ତାହା Rice University ଉଠିଯାଇଛି ଯାହା ଟେକ୍ସାସର ହ୍ୟୁଷ୍ଟନଠାରେ ଅବସ୍ଥିତ । ନୋବେଲ ବିଜେତା ଅମର୍ତ୍ତ୍ୟ ସେନ କିଛି ସମୟ ପାଇଁ IAFFE ର ପ୍ରେସିଡେଣ୍ଟ ଥିଲେ । IAFFE ଆନୁକୂଲ୍ୟରେ ବ୍ରିଟେନର ଅକ୍ସଫୋର୍ଡ ଠାରେ ମୁଁ ମୋର ଗବେଷଣା ଉପସ୍ଥାପନ କରିବାକୁ ଯାଇଥିବା ବେଳେ ମୋର ସୌଭାଗ୍ୟ ଯେ ମୁଁ ତାଙ୍କୁ ସେଠାରେ ଭେଟି ପାରିଲି । ମୁଁ ତାଙ୍କୁ ଉପହାର ଦେଇଥିଲି ବାଳିକାଙ୍କ ଜୀବନ ଉପରେ ପର୍ଯ୍ୟବସିତ ମୋର ବହି ଯାହା 'ପେଙ୍ଗୁଇନ' ସଂସ୍ଥା ପ୍ରକାଶ କରିଥିଲେ । IAFFE ଆନୁକୂଲ୍ୟରେ ମୁଁ ପୃଥିବୀର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ମହିଳାମାନଙ୍କ ସମସ୍ୟାକୁ ନେଇ ପ୍ରାୟ ୧୨ଟି ଗବେଷଣାତ୍ମକ ପ୍ରବନ୍ଧ ଉପସ୍ଥାପନ କରିଛି । ମୋର ପ୍ରବନ୍ଧ 'Impact of Child Marriage on the Human Development Index of India' କୁ ଭିତ୍ତି କରି ହାର୍ପର କଲିନସ୍ ସଂସ୍ଥା ମୋର ଆଉ ଏକ ବହି ପ୍ରକାଶ କରିଛନ୍ତି । ଓଡ଼ିଶାରେ ବାଲ୍ୟବିବାହ ଓ ମହିଳାଙ୍କ ବିକାଶକୁ ନେଇ ମୋର ଆଉ ଏକ ଲେଖାର କାମ ଚାଲିଛି । ଏହାର ପ୍ରକାଶ ଦାୟିତ୍ୱ ନେଇଛନ୍ତି ସେଜ୍ ପବ୍ଲିକେଶନସ୍ । ଲିଙ୍ଗଗତ ସମସ୍ୟାକୁ ନେଇ ମୁଁ ଯେମିତି ସମ୍ବେଦନଶୀଳ ତାହାର ଶ୍ରେୟ ଦେବି ମୋର ପ୍ରଗତିଶୀଳ ବାପାମାଆ ଓ ଅଜାଆଈଙ୍କୁ । ମୁଁ ଯେଭଳି ଶିକ୍ଷା ଲାଭ ଓ ଯେମିତି ପରିବେଶରେ ବଡ଼ ହେଲି ତାହାହିଁ ବୋଧେ ମହିଳା, ସମାଜ ଓ ଲିଙ୍ଗଗତ ସମାନତାକୁ ନେଇ ମୋର ଚିନ୍ତାଭାବନାକୁ ଆକାର ଦେଇଛି । ଏଥିଲାଗି ମୋର ଅବଚେତନରେ କେଉଁଠି ନା କେଉଁଠି ଫକୀରମୋହନ ହିଁ ରହିଛନ୍ତି ।

ପରବର୍ତ୍ତୀ ସମୟରେ ମୁଁ ବିଖ୍ୟାତ କବି ତଥା ସାହିତ୍ୟ ବିଶେଷଜ୍ଞ ଏ.କେ.ରାମାନୁଜନଙ୍କର ଏକ ପ୍ରବନ୍ଧ ପଢ଼ିଲି । ସେଇଟି ପ୍ରଥମେ ପ୍ରକାଶିତ ହୋଇଥିଲା ୧୯୯୦ରେ । ସେଥିରେ ସେ ପ୍ରଶ୍ନ କରୁଛନ୍ତି ଯେ, ଚିନ୍ତା କରିବାର ଭାରତୀୟ ଶୈଳୀ

ବୋଲି କିଛି ଅଛି କି ? ଏସ୍.ପି.ମହାନ୍ତି ଏହି କଥା ମନେ ପକାଇ କହିଲେ ଯେ, "ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଆ ଲେଖକ ଫକୀରମୋହନ ସେନାପତି ନିଜକୁ ପଚାରୁଛନ୍ତି, ଉପନ୍ୟାସ ଲେଖିବାର ଭାରତୀୟ ପଦ୍ଧତି ବୋଲି କିଛି ଅଛି କି ?" ତେଲୁଗୁ ସାହିତ୍ୟର ଜଣେ ଗବେଷକ ତଥା ଅନୁବାଦକ ହେଲେ ଭେଲ ଚେରୁ ନାରାୟଣ ରାଓ । ସେ 'ଛଅମାଣ ଆଠଗୁଣ୍ଠ' ସହ ବିଂଶ ଶତାବ୍ଦୀରେ ଶେଷ ଭାଗରେ ଲିଖିତ Geurajada Appa Rao ଙ୍କ ବହି 'Play Girls for Sale' କୁ ତୁଳନା କଲେ । ସେ ମନ୍ତବ୍ୟ ଦେଲେ ଯେ ଉଭୟ ଲେଖକଙ୍କୁ ଦେଶୀୟ ଆଧୁନିକତାର (ଔପନିବେଶିକ ଆଧୁନିକତା ଠାରୁ ଭିନ୍ନ) ସ୍ରଷ୍ଟା କୁହାଯାଇପାରେ । ଆହୁରି ରୋଚକ କଥା ହେଲା, ସମାଲୋଚକ ଜେନିଫର ହାରଫୋର୍ଡ ଭାର୍ଗାସ, ଗାବ୍ରିଏଲ ଗ୍ରାସିଆ ମାର୍କ୍ୱେଜଙ୍କ ଲେଖାର Magical realism ବା ଯାଦୁକରୀ ବାସ୍ତବତାକୁ ଫକୀରମୋହନ ଲେଖାରେ ଖୋଜି ପାଇଲେ । ମାର୍କ୍ୱେଜଙ୍କ ଲେଖାର ତୁଳନା ସାଧାରଣତଃ ଭାରତୀୟ ଲେଖକ ସଲମାନ ରସଦିଙ୍କ ଲେଖା ସହ କରାଯାଏ । କାରଣ ରସଦିଙ୍କ ଲେଖା ଶୈଳୀ ମାର୍କ୍ୱେଜଙ୍କ ସହ ସହଜରେ ତୁଳନୀୟ । ଭାର୍ଗାସଙ୍କ ମତରେ ମାର୍କ୍ୱେଜଙ୍କ 'One Hundred Years of Solitude' ଓ ଫକୀରମୋହନଙ୍କ 'ଛଅମାଣ ଆଠଗୁଣ୍ଠ' - ଉଭୟ ଲେଖାରେ ଔପନିବେଶିକ ଦୃଷ୍ଟି ବଳୟରୁ ମୁକୁଳିବାକୁ ଚେଷ୍ଟା ହୋଇଛି । ଏସବୁ ଆଲୋଚନା ଉପରେ ମୁଁ ଟିକିନିଖି କରି ବୁଝିପାରି ନଥିଲି । କିନ୍ତୁ ମୋତେ ଏସବୁ ଶୁଣି ଆଚମ୍ବିତ ଲାଗିଥିଲା ନିଶ୍ଚୟ । ଏହାର ଏକ ଗଭୀର ଛାପ ଏବେ ବି ମୋଠାରେ ରହିଯାଇଛି । ସବୁ ପ୍ରକାରର ମତ ମନ୍ତବ୍ୟ ମୋତେ ପ୍ରେରଣା ଯୋଗାଇଛି । କହିବା ଅନାବଶ୍ୟକ ଯେ, ଏହି ଆଲୋଚନା ଦେଖି ମୁଁ ଗୌରବାନ୍ୱିତ ବୋଧ କରିଥିଲି ।

ୟୁ.ଆର. ଅନନ୍ତମୂର୍ତ୍ତି ଫକୀରମୋହନଙ୍କ 'ଛଅମାଣ ଆଠଗୁଣ୍ଠ' କୁ 'ଭାରତୀୟ ସାହିତ୍ୟ ଇତିହାସରେ ଏକ ମୂଳଦୁଆ' ବୋଲି କହିଲେ । ସୀତାକାନ୍ତ ମହାପାତ୍ର ଫକୀରମୋହନ ସେନାପତିଙ୍କ ଆତ୍ମଜୀବନୀର ଉପରେ କହନ୍ତି ଯେ, 'ଫକୀରମୋହନ ସେନାପତିଙ୍କ ଆତ୍ମଜୀବନୀକୁ ଏକ ସମ୍ପୂର୍ଣ୍ଣ ଉପନ୍ୟାସ ଭାବେ ଗ୍ରହଣ କରାଯାଇପାରେ ।' SOAS, London ର John Boulton ଫକୀରମୋହନଙ୍କ ଉପରେ ପିଏଚ.ଡି. କରିଥିବା ଜାଣି ଆହୁରି ଚକିତ ହେଲି । ଏସବୁ ଶୁଣି ପ୍ରଥମେ ପ୍ରଥମେ ମୋ ପାଟିରୁ ଭାଷା ବାହାରିଲା ନାହିଁ । ପରେ ପରେ ଭାରି ଖୁସି ଓ ଗର୍ବ ଲାଗିଲା । ସତ କହିବାକୁ ଗଲେ, ଏହି ମହାନ ବ୍ୟକ୍ତିଙ୍କ ଆଗରେ ମୋତେ ନିଜକୁ ଏତେ ଛୋଟ ଲାଗୁଥିଲା ଯେ ପାଖାପାଖି ୩୦ ବର୍ଷ

ଧରି ମୋର ଫକୀରମୋହନଙ୍କ ସହ ସମ୍ପର୍କକୁ ମୁଁ କାହା ଆଗରେ ପ୍ରକାଶ କରୁନଥିଲି । ପରବର୍ତ୍ତୀ ସମୟରେ, ମୋର ଶୁଭେଚ୍ଛୁମାନେ ତଥା ସାହସୀ ବନ୍ଧୁମାନେ ମୋତେ ଉତ୍ସାହିତ କରିବାରୁ ମୁଁ ପାଦ ଆଗକୁ ବଢ଼ାଇଲି । ନିର୍ଣ୍ଣୟ କଲି ଯେ ଏହି ମହାନ ବ୍ୟକ୍ତିଙ୍କୁ ମୁଁ ଶ୍ରଦ୍ଧାଞ୍ଜଳି ଦେବି । ମୋତେ ଆଗକୁ ବଢିବା ପାଇଁ ଯେଉଁମାନେ ଉତ୍ସାହ ଦେଇଥିଲେ ସେମାନଙ୍କ ମଧ୍ୟରୁ ଜଣେ ହେଲେ ଶ୍ରୀ ଜେ.ପି.ଦାସ । ଧୀରେ ଧୀରେ ଲୋକେ ମୋତେ ଜାଣିବା ଆରମ୍ଭ କଲେ । ମୋ ଅନୁଷ୍ଠାନର କାମ ଆଗେଇଲାବେଳେ ମଧ୍ୟ ଖବର ପ୍ରଚାରିତ ହେଲା । ଏବେ ମୁଁ ସେନାପତି ବଂଶର ଜଣେ ଅଭିଜ୍ଞ ସଦସ୍ୟ ।

ଫକୀରମୋହନ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ପ୍ରଫେସର ଏସ୍.ପି. ଅଧିକାରୀଙ୍କ ଠାରୁ ମୁଁ ଯେଉଁ ସାହାଯ୍ୟ ସମର୍ଥନ ପାଇଛି ତାହା ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରୁଛି । ସେ ଜଣେ ବିଦ୍ୱାନ ବ୍ୟକ୍ତି । ବିଶ୍ୱବିଦ୍ୟାଳୟର ଉନ୍ନତି ପାଇଁ ସେ ଅନେକ ଉଦ୍ୟମ କରିଛନ୍ତି । ଫକୀରମୋହନଙ୍କ ମହାନତାକୁ ଲୋକଲୋଚନକୁ ଆଣିବା ପାଇଁ ମଧ୍ୟ ସେ ଅନେକ ପଦକ୍ଷେପ ନେଇଛନ୍ତି । ତାଙ୍କର କାମ ନିଶ୍ଚିତ ଭାବେ ଅଭିନନ୍ଦନୀୟ । ଏହି ସବୁ ପ୍ରେରଣା ପାଇ ମୁଁ ନୂଆ ଦିଲ୍ଲୀଠାରେ ଫକୀରମୋହନ ଫାଉଣ୍ଡେସନ ନାମକ ଏକ ଅନୁଷ୍ଠାନ ସ୍ଥାପନ କଲି (website: www.fakirmohanfoundation) । ଫକୀରମୋହନ ସେନାପତି ବୋଲି ପରିଚିତ ସେହି ମହାନ ବ୍ୟକ୍ତିଙ୍କ ଦ୍ୱାରା ମୋର ଚିନ୍ତାଭାବନା ଅନେକ ମାତ୍ରାରେ ପ୍ରଭାବିତ ହୋଇଛି ।

## ଫକୀରମୋହନ ଫାଉଣ୍ଡେସନ, ନୂଆ ଦିଲ୍ଲୀ

(Fakir Mohan Foundation was registered in Delhi, Jan-2011, Reg. No - 21 / Book No. 4, Vol No. 1, 438 / Page 77 to 97, Dt. 13.01.2011 / Sub-Registrar VII, New Delhi)

ଫକୀରମୋହନ ଫାଉଣ୍ଡେନର ପଞ୍ଜୀକରଣ ଜାନୁଆରୀ ୨୦୧୧ ରେ ନୂଆ ଦିଲ୍ଲୀରେ ହୋଇଥିଲା । (Regn, No. 21/Book No. 4, Vol No. 1,438/ Page 77 to 87, Dt. 13.01.2011 / Sub-Registrar VII, New Delhi.) ଆମ ଅନୁଷ୍ଠାନର ଲକ୍ଷ୍ୟ ହେଲା ମାତୃଭାଷା ମାଧ୍ୟମରେ ନିଜ ଐତିହ୍ୟକୁ ଚିହ୍ନିବା ଓ ନିଜ ସଂସ୍କୃତିକୁ ବୁଝିବା । ବର୍ତ୍ତମାନର ଯୁବପିଢ଼ି ମାତୃଭାଷାଗୁଡ଼ିକର ବ୍ୟବହାର କରିବା ପାଇଁ କୁଣ୍ଠିତ । ଏଣୁ ସେମାନଙ୍କ ଠାରେ ମାତୃଭାଷା ପ୍ରତି ଆଦର ସୃଷ୍ଟି କରିବାର ଆବଶ୍ୟକତା ରହିଛି । ସେମାନଙ୍କ ଜନ୍ମଭୂମିର ସାଂସ୍କୃତିକ ସମ୍ପଦ ସହ ସେମାନଙ୍କୁ ଭଲ ଭାବେ ପରିଚିତ କରାଇବାର ଆବଶ୍ୟକତା ରହିଛି ।

ଆମ ଅନୁଷ୍ଠାନର କାର୍ଯ୍ୟକ୍ରମ ଓ କାର୍ଯ୍ୟଶୈଳୀ 'ମାନବ ଧର୍ମ' ଦ୍ୱାରା ଅନୁପ୍ରାଣିତ । ଆମେ ସବୁ କାମରେ ମାନବିକତାର ନୀତିମାନ ଅନ୍ତର୍ଭୁକ୍ତ କରିବା ପାଇଁ ଚେଷ୍ଟା କରୁ । ଭାଷାଗତ ବିବିଧତା କ୍ଷେତ୍ରରେ ଆମ ଯେଉଁ କାମ କରୁ ସେସବୁ 'ମାନବ ଧର୍ମ' ଦୃଷ୍ଟିକୋଣରୁ ଚିନ୍ତାକରିଥାଉ । ଲକ୍ଷ୍ୟ ରହିଥାଏ କେମିତି ଆମେ ଆମ ମୂଳଗୁଡ଼ିକୁ ଖୋଜି ପାଇବା ।

ଜାତୀୟ ଓ ଅର୍ନ୍ତଜାତୀୟ ସ୍ତରରେ ଓଡ଼ିଶାର ସମୃଦ୍ଧ ସଂସ୍କୃତି, ସାହିତ୍ୟ ଓ ବିଶେଷ କରି ଫକୀରମୋହନ ସେନାପତିଙ୍କୁ ପରିଚିତ କରାଇବା ପାଇଁ ଆମ ଅନୁଷ୍ଠାନ ପ୍ରୟାସ କରେ । ଯେହେତୁ ଆମେ ଭାରତର ସାଂସ୍କୃତିକ ରାଜଧାନୀ ଦିଲ୍ଲୀ ସହରରେ ରହି କାମ କରୁଛୁ, ଏହି ଦିଗରେ ଆମକୁ ଟିକେ ସୁବିଧା ହୁଏ । ମୁଁ ଏଠାରେ ଗର୍ବର ସହ କହିପାରିବି ଯେ, କାଶ୍ମୀରରୁ କନ୍ୟାକୁମାରୀ ଯାଏଁ, ଭାରତର କୋଣ ଅନୁକୋଣରୁ, ବିଭିନ୍ନ ଲୋକଙ୍କୁ ଠାରୁ ମୁଁ ସହାୟତା ପାଇଛି ।

ମାନବ ଧର୍ମ ପ୍ରସାର ଦିଗରେ ଆମେ କ'ଣ ସବୁ ପ୍ରାରମ୍ଭିକ ପଦକ୍ଷେପ ନେଇଛୁ ଏବେ ସେହି ବିଷୟରେ ପାଠକମାନଙ୍କ ଧ୍ୟାନ ଆକର୍ଷଣ କରାଇବା ପାଇଁ ଚାହିଁବି । ଆମ ଅନୁଷ୍ଠାନ, ଜାମିଆ ମିଲିଆ ବିଶ୍ୱବିଦ୍ୟାଳୟର ସରୋଜିନୀ ନାଇଡୁ ସେଣ୍ଟର ଫର୍ ଓମେନସ୍ ଷ୍ଟଡିଜ୍ ସହ ମିଶି, ନୂଆ ଦିଲ୍ଲୀ ଠାରେ, ଏପ୍ରିଲ ୨୦୧୩ରେ, ଏକ ଆଲୋଚନା ଚକ୍ର

ଆୟୋଜନ କରିଥିଲା । ସେଥିରେ ଡ. କରନ ସିଂହ, ଓ ଡ. ଏସ୍.ୱାଇ. କୁରେଶି ମୁଖ୍ୟ ବକ୍ତା ଥିଲେ । ଡ. କରନ ସିଂହ ଏହା ଜାଣି ଖୁସି ହେଲେ ଯେ, ଫକୀରମୋହନ ସେନାପତିଙ୍କୁ ସରୋଜିନୀ ନାଇଡୁଙ୍କ ନାମରେ ନାମିତ ଏକ ଶିକ୍ଷାକେନ୍ଦ୍ରରେ ସମ୍ମାନ ଦିଆଯାଉଛି । କାରଣ ଉଭୟେ ନିଜ ସମୟରେ, ମୁକ୍ତ ଓ ସ୍ୱତନ୍ତ୍ର ବିଚାର ପୋଷଣ କରୁଥିବା ବିଶିଷ୍ଟ ବ୍ୟକ୍ତିତ୍ୱ ଥିଲେ । ଆଜିର ଦୁନିଆର ମାନବତାର କେତେ ଆବଶ୍ୟକତା ରହିଛି ତାହା ଉପରେ ସେ ତାଙ୍କ ବକ୍ତବ୍ୟରେ ଗୁରୁତ୍ୱ ଦେଲେ । ସେ ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଉଦ୍ଧାର କରି କହିଲେ ଯେ, ମଣିଷ କେବଳ ନିଜ ପାଇଁ ନୁହେଁ, ବରଂ ଜଗତର ମଙ୍ଗଳ ସାଧନ ଉଦ୍ଦେଶ୍ୟରେ କର୍ମ କରିବା ଉଚିତ । ଏହି ପ୍ରକାର ବିଚାରଧାରାର ପ୍ରଚାରପ୍ରସାର ପାଇଁ ଆଧୁନିକ ଯନ୍ତ୍ରବିଦ୍ୟା କିପରି ସାହାଯ୍ୟ କରିପାରିବ ସେ ସମ୍ବନ୍ଧରେ ମଧ୍ୟ ସେ ଆଲୋଚନା କରିଥିଲେ । ମାନବତାର ପୁନଃପ୍ରତିଷ୍ଠା ପାଇଁ ଭାରତ ଏକ ମୁଖ୍ୟ ଭୂମିକା ତୁଲାଇ ପାରିବ ବୋଲି ମନ୍ତବ୍ୟ ଦେଇ ସେ ତାଙ୍କ ବକ୍ତବ୍ୟ ଶେଷ କଲେ । ଡ. ଏସ୍.ୱାଇ. କୁରେଶି, ଯିଏ ପୂର୍ବେ ମୁଖ୍ୟ ନିର୍ବାଚନ କମିଶନର ଥିଲେ, ନିଜ ଭାଷଣରେ ମାନବତାର କଥା କହିବା ଓ କାମରେ ଦେଖାଇବା ଭିତରେ କିପରି ବିରୋଧାଭାସ ରହିଛି ତାହା ଉପରେ ଆଲୋକପାତ କଲେ ।

ଏହି ସମ୍ମିଳନୀରେ କେତେଜଣ ପ୍ରମୁଖ ଧର୍ମଗୁରୁ ଆମ ସହ ଯୋଗ ଦେଇଥିବାରୁ ଆମେ ସମ୍ମାନିତ ବୋଧ କରିଥିଲୁ । ଗୋଟିଏ ମଞ୍ଚରେ ପାଞ୍ଚଟି ଧର୍ମ ପରମ୍ପରାର ପାଞ୍ଚ ଜଣ ଧର୍ମଗୁରୁଙ୍କ ଆଣି ମାନବ ଧର୍ମ ବିଷୟରେ କହିବା ପାଇଁ ମୁଁ ଏକାଠି କରିପାରିଲି ବୋଲି ନିଜ ପିଠି ଥାପୁଡାଇ ନିଜକୁ ସାବାସି ଦେଲି । ଅବଶ୍ୟ ପୂରା ଆୟୋଜନରେ ମୋର ବନ୍ଧୁମାନଙ୍କଠାରୁ ମୁଁ ଅନେକ ସାହାଯ୍ୟ ସହଯୋଗ ପାଇଲି । ସେମାନଙ୍କ ମଧ୍ୟରୁ ଉଲ୍ଲେଖନୀୟ ନାମଟିଏ ହେଲା : ଡ. ବୁଲବୁଲ ଧର ଜେମ୍ସ । ସେ ସେତେବେଳେ ଜାମିଆ ମିଲିଆ ଇସଲାମିଆର ଓମେନ୍‌ସ ଷ୍ଟଡିଜ୍ ବିଭାଗର ନିର୍ଦ୍ଦେଶକ ଥିଲେ । ଆଲୋଚନାରେ ଭାଗ ନେଇଥିବା ଧର୍ମଗୁରୁମାନେ ହେଲେ :

୧. ଭିକ୍ଷୁ ସଙ୍ଘସେନା (ଲଦାଖ,ବୌଦ୍ଧ)

୨. ଫାଦର ଏମାନୁଏଲ୍ ଡୋମିନିକ (ଦିଲ୍ଲୀ କ୍ୟାଥଲିକ୍ ଚର୍ଚ୍ଚର ନିର୍ଦ୍ଦେଶକ ଓ ମୁଖପାତ୍ର, ଖ୍ରୀଷ୍ଟିଆନ)

୩. ପ୍ରବ୍ରଜିକା ଶୁଭ୍ରବ୍ରତପ୍ରାଣା (ରାମକୃଷ୍ଣ ଶାରଦା ମିଶନ, ରାମକୃଷ୍ଣ ମିଶନର ମହିଳା ଶାଖା, ହିନ୍ଦୁ)

୪. ଇମାମ ଉମର ଅହମଦ ଇଲ୍ୟାସି (ମୁଖ୍ୟ ଇମାମ ଓ ସର୍ବଭାରତୀୟ ଇମାମ ପରିଷଦର ଅଧ୍ୟକ୍ଷ, ଇସଲାମ)

୫. ଡ. ଏ.କେ. ବସରା (ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟରତ ପ୍ରାଧ୍ୟାପକ, ଶିଖ) ଏ ସମସ୍ତେ ଖୁବ ପ୍ରାଞ୍ଜଳ ଭାବେ ନିଜ ନିଜର ବକ୍ତବ୍ୟ ରଖିଲେ । ଆମ କାର୍ଯ୍ୟକ୍ରମ ଗଣମାଧ୍ୟମ ଦ୍ୱାରା ପ୍ରଚାରିତ ହେଲ । ଲୋକେ ମଧ୍ୟ ଏହାର ଭୂୟସୀ ପ୍ରଶଂସା କଲେ । ଏକ ଖବର କାଗଜ ରିପୋର୍ଟର ଅନୁବାଦ ଏଠାରେ ଦେଉଛି :

"ଡ. ମନିକା ଦାସ, ଫକୀରମୋହନ ଫାଉଣ୍ଡେସନର ମ୍ୟାନେଜିଂ ଟ୍ରଷ୍ଟି ଶ୍ରୋତାମାନଙ୍କୁ ସ୍ୱାଗତ ଜଣାଇ 'ମାନବ ଧର୍ମ' ବିଷୟଟିକୁ ଉପସ୍ଥାପନ କଲେ । ସେ କହିଲେ ଯେ, ମାନବିକତା, କେତେ ଜଣ ବିଶିଷ୍ଟ ଲୋକଙ୍କ କାର୍ଯ୍ୟକ୍ରମ ହେବା ପରିବର୍ତ୍ତେ, ଆମର ବ୍ୟାପକ ସଂସ୍କୃତିର ଏକ ଅଂଶ ହେବା ଉଚିତ । ସେ ଓଡ଼ିଆ ଭାଷାର ସମୃଦ୍ଧ ସାହିତ୍ୟ ଓ ସେଥିରେ ଫକୀରମୋହନ ସେନାପିତଙ୍କ ଅବଦାନ ବିଷୟରେ ମଧ୍ୟ ସେ ଆଲୋକପାତ କଲେ ।"

ପ୍ରଣବ ପଟ୍ଟନାୟକ ମୋର ବଡ଼ଭାଇ ପରି । ତାଙ୍କ ସ୍ତ୍ରୀ କସ୍ତୁରୀ ଅପା ମୋତେ ଭାରି ସ୍ନେହ କରନ୍ତ । ୨୦୧୬ ମସିହାରେ ଅଚାନକ ମୋର ସେମାନଙ୍କ ସହ ଦେଖାଦେଲା । ଆମେ ପୁରୁଣା ଦିନଗୁଡ଼ିକ ବିଷୟରେ କଥା ହେଲୁ । ମୋର ସଙ୍ଗୀତ ସାଧନା କଥା ଉଠିଲା । ଏମିତି କଥାବାର୍ତ୍ତା ଭିତରେ ମୋର ବର୍ତ୍ତମାନ କାମ କଥା ମଧ୍ୟ ଉଠିଲା । ପ୍ରଣବ ଭାଇ ପ୍ରସ୍ତାବ ଦେଲେ ଯେ ମୁଁ ପୁଣି ଗୀତ ରେକର୍ଡିଂ କରିବା ଉଚିତ । ସଙ୍ଗେ ସଙ୍ଗେ ମୋତେ ଗୋଟିଏ କାମ ଦେଖାଗଲା । ଫକୀରମୋହନ ସେନାପତିଙ୍କ କବିତାଗୁଡ଼ିକୁ ଗୀତ କରି ଗାଇଲେ କେମିତ ହୁଅନ୍ତା । ପ୍ରଣବ ଭାଇ ମୋ ପ୍ରସ୍ତାବକୁ ଆଗ୍ରହ ସହକାରେ ସ୍ୱାଗତ କଲେ । ଆମେ ସେହି ଦିଗରେ କାମ ଆରମ୍ଭ କରିଦେଲୁ । ମୁଁ ସେହି ସି.ଡି.ର ନାଁ ଦେଲି "ମୋହନ ମୂର୍ଚ୍ଛନା" । ଫକୀରମୋହନ କେତେକ ବଛା ବଛା କବିତାକୁ ସଙ୍ଗୀତରେ ସଜାଇଦେଲେ ଅଗ୍ରଣୀ ସଙ୍ଗୀତ ନିର୍ଦ୍ଦେଶକ ଶ୍ରୀ ଓମ୍ ପ୍ରକାଶ ମହାନ୍ତି । ସେଥିରେ କଣ୍ଠଦାନ କଲେ ପ୍ରଣବ ପଟ୍ଟନାୟକ, ସଙ୍ଗୀତ ଗୋସ୍ୱାମୀ, ଆଦ୍ୟାଶା ଦାସ, ନମ୍ରତା ମହାନ୍ତି ଓ ମନିକା ଦାସ । ଗଣମାଧ୍ୟମରେ ଏହି ଧ୍ୱନିମୁଦ୍ରିକାଟି ବେଶ ଖ୍ୟାତି ଅର୍ଜନ କରିଛି । ହୁଏତ ଏଥିପାଇଁ ଯେ ଏଭଳି ସଙ୍କଳନ ଓଡ଼ିଶାରେ ବିରଳ ଓ ଏଥିରେ ଉନ୍ନତ ମାନର କାମ ହୋଇଛି । ମୋର ସବୁ କାମ ଫକୀରମୋହନ ସେନାପତିଙ୍କ ସହ ଜଡ଼ିତ ହୋଇଯାଉଛି । ଏହା ଦେଖି ଜଣେ କହିଲେ, "ମନିକା, ଏଇଟା ହେଉଛି ତୁମର 'ତର୍ପଣ' ।" ଏହାକୁ ହୁଏତ କହିପାରିବା ବିଧିର ବିଧାନ । କିନ୍ତୁ ଏସବୁ ଭିତରେ, ଅର୍ଥନୀତି ଓ ଲିଙ୍ଗଗତ ସମସ୍ୟା ଉପରେ ମୋର ଯେଉଁ କାମ କରିବାର ଅଛି, ସେ ସବୁ ପଛରେ ପଡିଯାଇଛି ।

# ଅନୁଷ୍ଠାନର ଲକ୍ଷ୍ୟ

ସାମ୍ପ୍ରତିକ ଦୁନିଆରେ ସଂସ୍କୃତି ଓ ଭାଷାଗତ ବିବିଧତାର ସଂରକ୍ଷଣ ଅନେକ ସମାଜ ବିଜ୍ଞାନୀ, କଳାକାର, ଲେଖକ, ରାଜନେତା, ଭାଷାଗତ ସମ୍ପ୍ରଦାୟଗୁଡ଼ିକର ନେତା ତଥା ଭାଷାଗତ ମାନବ ଅଧିକାର ସପକ୍ଷରେ ଲଢୁଥିବା ଲୋକଙ୍କ ପାଇଁ ଏକ ଚିନ୍ତାଜନକ ବିଷୟ ।

ଆହୁରି ମଧ୍ୟ ଚିନ୍ତାର ବିଷୟ ହେଲା ପାଶ୍ଚାତ୍ୟ ସଂସ୍କୃତିଗୁଡ଼ିକ ଅଧୁନା ଅତ୍ୟଧିକ ପ୍ରଭାବଶାଳୀ ହୋଇଯିବା କାରଣରୁ ଯୁବ ସମାଜରେ ଆମ ମାତୃଭାଷାଗୁଡ଼ିକର ବ୍ୟବହାର ହ୍ରାସ ପାଉଛି । ଦେଖାଯାଉଛି ଯେ ଯୁବପିଢ଼ି ତାଙ୍କର ସଂସ୍କୃତି ଓ ପରମ୍ପରା ହରାଉଛନ୍ତି । ଏଣୁ ଏହି ଦିଗରେ ତାଙ୍କୁ ଆକର୍ଷିତ କରିବା ଜରୁରୀ ହୋଇପଡ଼ିଛି ।

ଇଂରାଜୀ ଓ ହିନ୍ଦୀ ଭାଷାର ନିଜସ୍ୱ ମହତ୍ତ୍ୱ ରହିଛି । କେବଳ ଏଥିପାଇଁ ନୁହେଁ ଯେ ବଜାରରେ ଏହି ଭାଷାଗୁଡ଼ିକର ଚାହିଦା ଅଛି । ଆହୁରି ଅନେକ କାରଣ ଯୋଗୁଁ ଏହି ଦୁଇ ଭାଷା ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ମାନବଜାତିର ଅନ୍ତରକୁ, ମର୍ମକୁ ବଞ୍ଚାଇ ରଖିବା ପାଇଁ ଆଞ୍ଚଳିକ ଭାଷାଗୁଡ଼ିକର ବ୍ୟବହାରକୁ ପ୍ରୋତ୍ସାହିତ କରାଇବା ଗୁରୁତ୍ୱପୂର୍ଣ୍ଣ । ଏହା ହିଁ ବୋଧହୁଏ ବର୍ତ୍ତମାନ ସମୟର ଆହ୍ୱାନ । ପରିସଂଖ୍ୟାନ ତଥ୍ୟରୁ ଜଣାଯାଏ ଯେ ପୃଥିବୀରେ ପ୍ରତି ପନ୍ଦର ଦିନରେ ଗୋଟିଏ ଭାଷାର ମୃତ୍ୟୁ ହେଉଛି ।

ବର୍ତ୍ତମାନ ସଂସ୍କୃତି, ଭାଷା ଓ ଐତିହ୍ୟର ସଂରକ୍ଷଣକୁ ନେଇ ବିଭିନ୍ନ ତର୍କବିତର୍କ ଚାଲିଛି । ଅନେକଙ୍କର ମତ ହେଲା ସଂସ୍କୃତି, ଭାଷା ଓ ଐତିହ୍ୟ ସମ୍ବନ୍ଧରେ ଯାହା କିଛି ଆମେ ଜାଣୁ ସେସବୁକୁ ସଂରକ୍ଷିତ କରିବା ଓ ଲୋକଙ୍କ ଭିତରେ ପ୍ରସାରିତ କରିବା ଦରକାର । ଦେଶଜ ଭାଷା ହେଉଛି ଆମ ସଂସ୍କୃତିର ଏକ ବିଶେଷ ଅଙ୍ଗ । ଅଥଚ କେତେକ ବାହ୍ୟଶକ୍ତିର ଅନୁପ୍ରବେଶ କାରଣରୁ ଏହି ଭାଷାଗୁଡ଼ିକ ଲୋପ ପାଇଯିବାର ବିପଦ ଦେଖାଦେଇଛି । ଆମ ଐତିହ୍ୟବୋଧକୁ ପ୍ରୋତ୍ସାହିତ କରିବାକୁ ହେଲେ ଆମକୁ ଭାଷା ଓ ସଂସ୍କୃତିକୁ ବଜାୟ ରଖିବାକୁ ହେବ । ଭାଷାର ମଧ୍ୟ ନିଜସ୍ୱ ପରମ୍ପରା ଓ ଐତିହ୍ୟ ରହିଛି । ଏସବୁ ଦ୍ୱାରା କେବଳ ପାରସ୍ପରିକ ବୁଝାମଣା ଓ ସମ୍ମାନ ବଢ଼େ ନାହିଁ, ଶାନ୍ତି ଓ ସୁରକ୍ଷାର ମୂଳଦୁଆ ମଧ୍ୟ ମଜବୁତ୍ ହୁଏ । ଜାତିସଂଘର ମହାନିର୍ଦ୍ଦେଶିକା ଇରିନା ବୋକୋଭା କହନ୍ତି :

"ସଂସ୍କୃତିର ସଂରକ୍ଷଣ ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା । ସମ୍ମାନ ବିନା ଦୀର୍ଘ ସମୟ ଧରି ଶାନ୍ତି ରକ୍ଷା ସମ୍ଭବ ନୁହେଁ । ସାଂସ୍କୃତିକ ଐତିହ୍ୟ ଉପରେ ଆକ୍ରମଣ କରିବାର ଅର୍ଥ ହେଲା ସେହି ସଂପ୍ରଦାୟର ଅସ୍ମିତା ଉପରେ ଆକ୍ରମଣ । ସେ ପ୍ରକାର ଆକ୍ରମଣ କୌଣସି ବିବାଦକୁ ବଢ଼ାଇବା ଦିଗରେ ଏକ ପ୍ରତୀକାତ୍ମକ ତଥା ପ୍ରକୃତ ଅଭିସନ୍ଧିମୂଳକ ପଦକ୍ଷେପ । ସେପରି ବିବାଦଜନିତ କ୍ଷତି ଅପୂରଣୀୟ ଓ ତାହାର ପ୍ରଭାବ ଦୀର୍ଘସ୍ଥାୟୀ ।"

ମଣିଷ ଜୀବନର ମୂଳ ତତ୍ତ୍ୱର ସଂରକ୍ଷଣ ଆମ ସାଂସ୍କୃତିକ ଜୀବନର ସୁରକ୍ଷା ସହ ବିଶେଷ ଭାବେ ଜଡ଼ିତ । ଯଦି ସଂସ୍କୃତି ଓ ଐତିହ୍ୟର ମୃତ୍ୟୁ ହୁଏ ତେବେ ଅସ୍ମିତା ମଧ ମରିଯାଏ ଓ ତାହା ସହିତ ଜନସମୁଦାୟର ମଧ ମୃତ୍ୟୁ ହୁଏ । ସେହି ପ୍ରକ୍ରିୟାରେ ଆମ ସାମାଜିକ ଓ ଅର୍ଥନୈତିକ ସମ୍ପର୍କ ସବୁ ନଷ୍ଟ ହୋଇଯାଏ । ଅଦ୍ଭୁତ କଥା ହେଲା, ଏ ସବୁ କିଛି କିଛି ଭାବରେ ଆମ ଆତ୍ମ-ଅଭିବ୍ୟକ୍ତିର ସାମର୍ଥ୍ୟ- ଆମ କଥିତ ଭାଷା, ଆମ ମାତୃଭାଷା ସହ ସମ୍ପର୍କିତ । ପ୍ରସିଦ୍ଧ ଦାର୍ଶନିକ ତଥା ସମାଜଶାସ୍ତ୍ରୀ ନୋଆମ୍ ଚୋମସ୍କିଙ୍କ ଅନୁସାରେ, "ଭାଷା କହିଲେ କେବଳ କେତୋଟି ଶବ୍ଦକୁ ବୁଝାଏ ନାହିଁ, ଭାଷା ହେଉଛି ଏକ ସଂସ୍କୃତି, ଏକ ପରମ୍ପରା, ସମାଜ ଗଠନର ଏକ ସମ୍ପୂର୍ଣ୍ଣ ଇତିହାସ । ଯେ କୌଣସି ଭାଷାରେ ଏ ସବୁ କିଛି ସନ୍ନିହିତ ହୋଇ ରହିଥାଏ ।" ସାଂସ୍କୃତିକ ଅସଙ୍ଗତି ଛାତ୍ରଛାତ୍ରୀଙ୍କ ବିକାଶକୁ ଅବରୋଧ କରିଥାଏ ବୋଲି ସ୍ୱୀକୃତ ହୋଇ ସାରିଛି । ସଂସ୍କୃତି ସଂରକ୍ଷଣର କଥା ଉଠାଇବା ବେଳେ ଏହି ତଥ୍ୟଟିକୁ ଧ୍ୟାନରେ ରଖିବା ଗୁରୁତ୍ୱପୂର୍ଣ୍ଣ ।

ସାମାଜିକ ବିବିଧତାରେ ପୂର୍ଣ୍ଣ କୌଣସି ଦେଶ ବା ରାଜ୍ୟରେ ସାଂସ୍କୃତିକ ଓ ଭାଷା ସଂରକ୍ଷଣକୁ ମହତ୍ତ୍ୱ ଦେବା ପଛରେ କେବଳ ଆଦର୍ଶଗତ କାରଣ ନଥାଏ । ବ୍ୟାବହାରିକ ବିଚାର ମଧ ତାହାର ସମର୍ଥନ କରେ । ମ୍ୟାନେଜମେଣ୍ଟର ମୁଖିଆମାନେ ଅନୁଭବ କଲେଣି ଯେ ଅର୍ଥନୈତିକ ବିକାଶର ସାଂସ୍କୃତିକ ଦିଗ ପ୍ରତି ଧ୍ୟାନ ଦେବାକୁ ହେବ । ସାଂସ୍କୃତିକ ଦିଗକୁ ଯେତେ ଗୁରୁତ୍ୱ ଦିଆଯିବ ସମାଜର ଅର୍ଥନୀତି ପାଇଁ ସେତେ ଭଲ । ପ୍ରକୃତ ପକ୍ଷେ, ବିଶ୍ୱ ବ୍ୟାଙ୍କ ଓ ଆଇ.ଏମ୍.ଏଫ୍ ଭଳି ଆନ୍ତର୍ଜାତିକ ସଂସ୍ଥାରେ କାର୍ଯ୍ୟରତ ଅର୍ଥନୈତିକ ନୀତି ନିର୍ମାତାମାନେ ବିକାଶର ସାଂସ୍କୃତିକ କାରଣଗୁଡ଼ିକୁ ପ୍ରାଧାନ୍ୟ ଦେବା ଆରମ୍ଭ କଲେଣି । (ମୁଁ ଟାଇମ୍ସ ଅଫ୍ ଇଣ୍ଡିଆ ସହ ଏକ ସାକ୍ଷାତକାରରେ ଏ ସମ୍ବନ୍ଧରେ ପ୍ରାଞ୍ଜଳଭାବେ ଆଲୋଚନା କରିଛି ।)

ଏବେ ଆସିବା ଭାରତର ଶିକ୍ଷା ବ୍ୟବସ୍ଥା ପାଖକୁ । ସମସ୍ତଙ୍କୁ ଜଣାଅଛି ଯେ ସାର୍ବଜନୀନ ଶିକ୍ଷା ଠାରୁ ଆମେ ଏବେ ମଧ ବହୁତ ଦୂରରେ । ଶିକ୍ଷା କ୍ଷେତ୍ରରେ ମଧ ଲିଙ୍ଗଗତ ବୈଷମ୍ୟ ଖୁବ ସ୍ପଷ୍ଟ । ପାଞ୍ଚରୁ ନଅ ବର୍ଷ ବୟସ୍କ ବାଳିକାଙ୍କ ଭିତରୁ କେବଳ

୫୩ ପ୍ରତିଶତ ସାକ୍ଷର । ସାଧାରଣ ଶିକ୍ଷା କଥା ଛାଡନ୍ତୁ, ଭାଷା ଶିକ୍ଷାର ସ୍ଥିତି ମଧ୍ୟ ଦୟନୀୟ । ଭାଷା ଶିକ୍ଷା ବିଷୟରେ କହିଲା ବେଳେ ଓଡ଼ିଶାର ଅବସ୍ଥାକୁ ଦେଖାଯାଉ ଯାହାକି ଅତି ଚିନ୍ତାଜନକ, ଯଦିଓ ଭାରତର ଛଅଟି ଶାସ୍ତ୍ରୀୟ ଭାଷା ମଧ୍ୟରେ ଓଡ଼ିଆ ଅନ୍ୟତମ । ଓଡ଼ିଶା ହେଉଛି ପ୍ରଥମ ରାଜ୍ୟ ଯାହା ଭାଷାଭିତ୍ତିରେ ଗଠିତ । ASER ନାମକ ଏକ ଅନୁଷ୍ଠାନର ରିପୋର୍ଟ ଅନୁସାରେ ଓଡ଼ିଶରେ କେବଳ ୩୩ ପ୍ରତିଶତ ଶିକ୍ଷାର୍ଥୀ ଓଡ଼ିଆ ଭାଷା ବ୍ୟବହାର କରନ୍ତି । ଅର୍ଥାତ ୭୦ ପ୍ରତିଶତରୁ ଅଧିକ ଭାଗ ଓଡ଼ିଆ ଭାଷା ବ୍ୟବହାର କରନ୍ତି ନାହିଁ । ତେଣୁ ତତ୍ପରତାର ସହ ଓଡ଼ିଆ ଭାଷା ଶିକ୍ଷଣକୁ ଆଗେଇ ନେବାକୁ ହେବ । ଅନ୍ୟାନ୍ୟ ରାଜ୍ୟଗୁଡ଼ିକରେ ମଧ୍ୟ ଏହିଭଳି ଅବସ୍ଥା । ପରିସଂଖ୍ୟାନ ତଥ୍ୟ ଅନୁସାରେ ପୃଥିବୀରେ ପ୍ରତି ପନ୍ଦର ଦିନରେ ଗୋଟିଏ ଭାଷାର ମୃତ୍ୟୁ ହେଉଛି । ଆଞ୍ଚଳିକ ଭାଷାଗୁଡ଼ିକର ବ୍ୟବହାର ହ୍ରାସ ପାଉଛି ବୋଲି ଅନେକଗୁଡିଏ ଗବେଷଣାମୂଳକ ବହିରେ ପ୍ରକାଶ ପାଇଛି । ବିଭିନ୍ନ ଅଞ୍ଚଳରେ ସ୍ଥାନୀୟ ଭାଷାର ବ୍ୟବହାର କୌଶଳ ଶିକ୍ଷା ଦେବା ପାଇଁ ଉପଯୁକ୍ତ ସାଧନ ପ୍ରସ୍ତୁତ କରିବା ଆବଶ୍ୟକ ହୋଇଯାଉଛି । ଓଡ଼ିଶାର ଏକ ତୃତୀୟାଂଶ ଜନସଂଖ୍ୟା ଆଦିବାସୀ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ ଥିବାରୁ ସମସ୍ୟା ଆହୁରି ଜଟିଳ । ସେମାନେ ଓଡ଼ିଆ ଭାଷା ବ୍ୟବହାର କରନ୍ତି ନାହିଁ ଓ ସେଥିପାଇଁ ଅନେକ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ ଥିବାରୁ ସମସ୍ୟା ଆହୁରି ଜଟିଳ । ସେମାନେ ଓଡ଼ିଆ ଭାଷା ବ୍ୟବହାର କରନ୍ତି ନାହିଁ ବୋଲି ଅନେକ କ୍ଷେତ୍ରରେ ପଛୁଆ ରହିଯାଇଛନ୍ତି । ଏହାର ଅର୍ଥ ନୁହେଁ ଯେ ସେମାନଙ୍କ ନିଜ ଭାଷା ବ୍ୟବହାର ହେବା ଅନୁଚିତ । ଭାଷା କେବଳ ଶବ୍ଦର ସମାହାର ନୁହେଁ । ବାଲ୍ୟକାଳରୁ ଶିକ୍ଷା କଲେ ଏକାଧିକ ଭାଷାରେ ଦକ୍ଷତା ଅର୍ଜନ କରିବା ମଧ୍ୟ କିଛି କଷ୍ଟକର କଥା ନୁହେଁ । ଓଡ଼ିଆ ହେଉଛି ଭାରତର ସବୁଠାରୁ ପ୍ରାଚୀନ ଓ ବିକଶିତ ଭାଷାଗୁଡ଼ିକ ମଧ୍ୟରୁ ଗୋଟିଏ । ଏହା ଅବହେଳାର ଶିକାର ହୋଇଛି । ଏଣୁ ଭାଷାଟିକୁ ବିଲୁପ୍ତ ହେବାରୁ ରକ୍ଷା କରିବାକୁ ତୁରନ୍ତ କିଛି ପଦକ୍ଷେପ ନେବାକୁ ହେବ ।

ଫକିରମୋହନ ଫାଉଣ୍ଡେସନ୍ ପାଇଁ ପ୍ରେରଣାର ମୁଖ୍ୟ ଉତ୍ସ ହେଲା ଫକୀରମୋହନ ସେନାପତିଙ୍କ ଅବଦାନ । ଓଡ଼ିଆ ଭାଷାକୁ ମୃତ୍ୟୁ ମୁଖରୁ ରକ୍ଷା କରିବା ପାଇଁ ତାଙ୍କ ସଂଘର୍ଷ ଏବଂ ସେ କ୍ଷେତ୍ରରେ ସେ କିପରି ସଫଳ ହେଲେ ତଥା ଓଡ଼ିଆମାନଙ୍କ ପାଖକୁ ସେମାନଙ୍କ ଅସ୍ମିତା ଫେରେଇଆଣିଲେ ଏବଂ ତାଙ୍କର **ସର୍ବଧର୍ମ ସମନ୍ୱୟ ଷ୍ଟମ୍ଭର** ଆଭିମୁଖ୍ୟକୁ ଭିତ୍ତି କରି ଫାଉଣ୍ଡେସନ୍ ବିଭିନ୍ନ କାର୍ଯ୍ୟକ୍ରମ ଆୟୋଜନ କରିଥାଏ । ଫାଉଣ୍ଡେସନ୍‌ର ଉଦ୍ଦେଶ୍ୟ ହେଲା ମାନବିକତାର ସିଦ୍ଧାନ୍ତଗୁଡ଼ିକୁ (ଯାହାକୁ ଆମେ ମାନବ ଧର୍ମ ବୋଲି ନାମ ଦେଇଛୁ) ଭାଷା ସମସ୍ୟା ସହ ଏକାଠି କରି ଦେଖିବା । ସେନାପତିଙ୍କ ସମୟରେ ଭାଷା ସମସ୍ୟାଟି

ଭାରି ଉତ୍କଟ ଥିଲା । ଏବେ ମଧ୍ୟ ଭାଷା ସଙ୍କଟରେ ଅଛି । ଆମକୁ ତାହା ସ୍ୱୀକାର କରିବାକୁ ହେବ । ସେଥିରୁ ମୁକୁଳିବା ପାଇଁ ଆମେ ଆମ ସାମର୍ଥ୍ୟ ଅନୁଯାୟୀ କେତୋଟି କାମ ହାତକୁ ନେଇଛୁ । ଭାରତରେ ତଥା ବିଦେଶରେ କର୍ମଶାଳା ଆୟୋଜନ କରିଛୁ ଓ ଭାଷା ସମସ୍ୟା ବିଷୟରେ ତଥା ଧାର୍ମିକ ସମନ୍ୱୟ ପାଇଁ ଅଧିବେଶନ କରିଛୁ ।

ହିନ୍ଦୀ ଓ ଇଂରାଜୀ ସହ ଓଡ଼ିଆ ଭାଷା ବ୍ୟବହାର କରିବା ପାଇଁ ଯୁବଗୋଷ୍ଠୀକୁ ପ୍ରୋତ୍ସାହିତ କରିବା ନିମନ୍ତେ ଆମେ ୟୁନେସ୍କୋ, ଭାରତ ସରକାରଙ୍କ ସଂସ୍କୃତି ବିଭାଗ ଓ (OSA) ନିକଟରେ ବିଭିନ୍ନ ପ୍ରକଳ୍ପର ପ୍ରସ୍ତାବ ରଖିଛୁ । ମାତୃଭାଷାର ସଂରକ୍ଷଣ ଓ ବ୍ୟବହାର ପାଇଁ ଆମେ ପ୍ରସ୍ତୁତ କରିଥିବା ମଡ୍ୟୁଲ୍ ଗୁଡ଼ିକୁ ଆମେ କର୍ମଶାଳା ଆୟୋଜନ କରି ପରୀକ୍ଷା କରିଛୁ । ଆମ ୱେବସାଇଟରେ ଉପଲବ୍ଧ ରିପୋର୍ଟରେ ଏସବୁର ବିବରଣୀ ରହିଛି । ଇଂରାଜୀ ଓ ହିନ୍ଦୀ ଭାଷାର ନିଜସ୍ୱ ଗୁରୁତ୍ୱ ରହିଛି । ଯଦିଓ କେବଳ ଦୁଇଟି କାରଣ ସମସ୍ତଙ୍କୁ ସ୍ପଷ୍ଟ ଦିଶୁଛି : ବାଣିଜ୍ୟିକ ଆବଶ୍ୟକତା ପାଇଁ ଇଂରାଜୀ ବ୍ୟବହାର ଓ ସିନେଜଗତ ପାଇଁ ହିନ୍ଦୀର ବ୍ୟବହାର ଲୋଡ଼ା । ଏ ସବୁ ତ ଠିକ ଅଛି ହେଲେ ଆହୁରି ଅନେକ ଆବଶ୍ୟକତା ପୂରଣ କରୁଥିବା, ଆତ୍ମାକୁ ଶାନ୍ତି ଦେଉଥିବା ମାତୃଭାଷାକୁ ଅବହେଳା କରିବାଟା କଦାଚିତ ତର୍କସଙ୍ଗତ କଥା ନୁହେଁ । ମାତୃଭାଷା ଜୀବନରେ କେତେ ରଙ୍ଗ ଭରିଦିଏ । ଆଞ୍ଚଳିକ ଲୋକକଥା, ରୁଢ଼ି, ପ୍ରବାଦ, ଗାଁ ଗହଳିରେ ବିଭିନ୍ନ ଉତ୍ସବରେ ବୋଲାଯାଉଥିବା ପଲ୍ଲୀଗୀତ, ଢଗଢମାଳି ଓ ସେସବୁର ସଂରକ୍ଷଣ ଆଜି ଅତୀତର ହଜିଲା ଗୌରବତାର ମନେ ହେଉଛି । ଏସବୁ ପାଇଁ ଲୋଡା ମାତୃଭାଷାର ବ୍ୟବହାର । ଅତି କମରେ ଏତିକି ତ କୁହାଯାଇ ପାରିବ ଯେ ମାତୃଭାଷା ଓ ଆଞ୍ଚଳିକ ଭାଷାଗୁଡ଼ିକର ବ୍ୟବହାର ଦ୍ୱାରା ପରିବାରରେ ତଥା ସମାଜରେ ଏକତା ବଢ଼େ । କିଛି ନହେଲେ ମଧ୍ୟ ନିତିଦିନିଆ କଥାବାର୍ତ୍ତା ସୁନ୍ଦର ଲାଗେ । ଲୋକଙ୍କର ମତିଭ୍ରମ ହୁଏନାହିଁ ।

ଆମ ଅଭିଯାନର ସଫଳତା ପାଇଁ ଲୋକଙ୍କର ସହଯୋଗ ଦରକାର । ଆମକୁ ବହୁତ କ୍ଷିପ୍ର ଗତିରେ ଆଗେଇବାକୁ ହେବ । ଏବେ ହିଁ କାମରେ ଲାଗିବାକୁ ହେବ । ୨୦୩୦ ଭାରତକୁ ଆଖି ଆଗରେ ରଖି ନିରପେକ୍ଷ ଭାବେ କାମ ଜାରି ରଖିବାକୁ ପଡ଼ିବ ।

# ଅନୁଷ୍ଠାନର କାର୍ଯ୍ୟକ୍ରମ ଓ ଭବିଷ୍ୟତ ପାଇଁ ଯୋଜନା

- କର୍ମଶାଳାର ମୁଖ୍ୟ ଉଦ୍ଦେଶ୍ୟ ହେଲା ସାହିତ୍ୟ ମାଧ୍ୟମରେ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ପରିସ୍ଥିତିଗୁଡ଼ିକୁ ବୁଝିବା । ଏଗୁଡ଼ିକ ଆଜିର ଦୁନିଆରେ ଅନେକ ସମୟରେ କାହିଁକି ବିକଟ ସମସ୍ୟାରେ ପରିଣତ ହୁଅନ୍ତି, ସେଥିପ୍ରତି ଦୃଷ୍ଟି ଦେବା ।

- ସାହିତ୍ୟ ମାଧ୍ୟମରେ ଯୁବପିଢ଼ିରେ ଏସବୁ ପ୍ରତି ସଚେତନନା ସୃଷ୍ଟି କରିବା । ଏକ କର୍ମଶାଳାର ଢାଞ୍ଚା ନିମ୍ନରେ ଦିଆଗଲା ଯେଉଁଥିରେ ଫକୀରମୋହନଙ୍କ ସାହିତ୍ୟ ଆଲୋଚନା ମାଧ୍ୟମରେ ଉପରୋକ୍ତ ଲକ୍ଷ୍ୟ ଦିଗରେ ଅଗ୍ରସରହେବାକୁ ଆମେ ଚେଷ୍ଟା କରିବୁ ।

୧ ) ଫକୀରମୋହନଙ୍କ ରଚନାରେ ନୈତିକତା
୨ ) ଧର୍ମୀୟ ସହନଶୀଳନତା ହିଁ ସାମ୍ପ୍ରତିକ ବିଶ୍ୱର ମୂଳମନ୍ତ୍ର ହେବା ବାଞ୍ଛନୀୟ
୩) 'ପ୍ରାୟଶ୍ଚିତ୍ତ' ରେ ଲିଙ୍ଗବୈଷମ୍ୟ ବିରୋଧୀ ନମନୀୟତା
୪ ) 'ଅସୁର ଦୀଘି' ଆଧାରରେ ପରିବେଶକୈନ୍ଦ୍ରିକ ପ୍ରଦୂଷଣ ପ୍ରସଙ୍ଗ ଏବଂ ତାହାର ନିରାକରଣ
୫ ) ଯୁବସମାଜ, ଭାଷା ସମସ୍ୟା ଓ ମାତୃଭାଷା ସଂପ୍ରୀତି
୬ ) ଫକୀରମୋହନଙ୍କ ସାହିତ୍ୟରେ ନାରୀଜାତିର ଦ୍ୱି-ପାର୍ଶିକ ସ୍ଥିତି
୭ ) ଫକୀରମୋହନ : ମାନବ ଧର୍ମ ଏବଂ ସର୍ବଧର୍ମ ସମନ୍ୱୟ

- ଆମ ଭାଷା ସାହିତ୍ୟ ହେଉଛି ଏକ ଜ୍ଞାନର ଭଣ୍ଡାର । ଯୁବପିଢ଼ିଙ୍କଠାରେ ସଚେତନତା ସୃଷ୍ଟି କରିବା ପାଇଁ ଅଭିନବ ଉପାୟରେ ଏହାର ବ୍ୟବହାର କରାଯାଇପାରିବ । ଏହା ଦ୍ୱାରା ସେମାନେ ସୃଜନଶୀଳ ଢଙ୍ଗରେ ଆଜିର ସମସ୍ୟାଗୁଡ଼ିକର ମୁକାବିଲା କରିପାରିବ ।

- ଆମ ଜୀବନ ସହ ଜଡ଼ିତ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ସମସ୍ୟାଗୁଡ଼ିକ ବିଷୟରେ ଧାରଣା ସୃଷ୍ଟି କରିବା ପାଇଁ ସାହିତ୍ୟ ଏକ ମାଧ୍ୟମ ହୋଇପାରିବ ।

- ସାହିତ୍ୟ ନିପୁଣତାର ସହ ଏହି ସମସ୍ୟାଗୁଡ଼ିକୁ ସମାଧାନ ଦିଗରେ ନେଇଯିବ ଓ ଆମ ଜୀବନକୁ ଆହୁରି ଆନନ୍ଦମୟ କରିବ ।

- ସମସ୍ୟାଗୁଡ଼ିକୁ ସାହିତ୍ୟ ଓ ସଂସ୍କୃତି ସହ ଯୋଡ଼ି ଦେଖିବାକୁ ହେବ ।

- ଆଜିର ଦୁନିଆର ଆବଶ୍ୟକତା ହେଉଛି ଏପରି ଏକ ମାଧ୍ୟମ ଯାହା ମସ୍ତିଷ୍କ ଓ ହୃଦୟର ଶକ୍ତି ମଧ୍ୟରେ ସଂହତି ରକ୍ଷା କରିପାରିବ । ପୃଥିବୀରେ ବିଶୃଙ୍ଖଳା ବଢ଼ିଚାଲିଛି । ବ୍ୟକ୍ତି ସ୍ତରରେ, ସାମାଜିକ ଜୀବନରେ, ଜାତୀୟ ସ୍ତରରେ ଓ ଆନ୍ତର୍ଜାତିକ ସମ୍ପର୍କରେ ଉଦବେଗ ବଢୁଛି । ମଣିଷକୁ ଶାନ୍ତି ଲୋଡ଼ା । ସେଥିପାଇଁ ଏପରି କିଛି ଦରକାର ଯାହା ଜୀବନରେ ପୁଣି ସନ୍ତୁଳନ ଆଣିପାରିବ । ଶାନ୍ତି ବିରାଜମାନ କଲେ ହିଁ ଜ୍ଞାନ ଓ ଆନନ୍ଦ ଉପୁଜିବ ।

- ବିଶ୍ୱର ପ୍ରମୁଖ ମ୍ୟାନେଜମେଣ୍ଟ ଗୁରୁମାନେ ଏବେ ତାଙ୍କ ପାଠ୍ୟକ୍ରମରେ ସାଂସ୍କୃତିକ ଶିକ୍ଷାକୁ ଅନ୍ତର୍ଭୁକ୍ତ କରୁଛନ୍ତି ।

- ଅନ୍ତହୀନ ତଥ୍ୟ ଅନ୍ୱେଷଣ କେବେହେଲେ ମଣିଷର ପ୍ରକୃତ ଆବଶ୍ୟକତା ପୂରଣ କରିପାରିବ ନାହିଁ । ଆନନ୍ଦ ସେତେବେଳେ ସମ୍ଭବ ଯେତେବେଳେ ମଣିଷ ଭିତରର ଆଧ୍ୟାତ୍ମିକ ଜୀବନ ଓ ବାହ୍ୟ ବସ୍ତୁବାଦୀ ଜୀବନ ମଧ୍ୟରେ ସୁସଙ୍ଗତି ସ୍ଥାପିତ ହେବ । ଜୀବନ ସେତେବେଳେ ପରିପୂର୍ଣ୍ଣ ମନେ ହେବ ।

- Youth is wasted on the young. - Bernard Show

- Demographic Dividend

- ଭାରତୀୟ ଜନସଂଖ୍ୟାର ୫୦ ପ୍ରତିଶତରୁ ଅଧିକ ଲୋକଙ୍କ ବୟସ ୨୫ ବର୍ଷରୁ କମ୍ । ୩୫ ବର୍ଷରୁ କମ୍ ବୟସ୍କ ଲୋକଙ୍କ ସଂଖ୍ୟା ୬୫ ପ୍ରତିଶତରୁ ବେଶୀ । ଆଶା କରାଯାଉଛି ଯେ, ୨୦୨୦ ସୁଦ୍ଧା ଭାରତରେ ହାରାହାରି ବୟସ ହେବ ୨୦ । ସେତେବେଳେ ଚୀନ ଓ ଜାପାନର ହାରାହରି ବୟସ ହେବ ୩୭ ଓ ୪୮ ଥିବ । ୨୦୩୦ ବେଳେ ଭାରତରେ ନିର୍ଭରଶୀଳତାର ଅନୁପାତ (dependency ratio) ୦.୪ରୁ ଟିକେ ଅଧିକ ଥିବ ।

- ୧୨୫ କୋଟି ଲୋକଙ୍କ ଭିତରୁ ୮୩ କୋଟିରୁ ଅଧିକ ଲୋକଙ୍କ ବୟସ ୩୫ ରୁ କମ୍ । ରାଷ୍ଟ୍ରନିର୍ମାଣ ପାଇଁ ଏହାଠାରୁ ଭଲ ସୁଯୋଗ କ'ଣ ହୋଇପାରେ ।

- ପରମ୍ପରା ଆମ ଆଦର୍ଶଗୁଡ଼ିକୁ ମଜବୁତ କରେ ଓ ସମାଜରେ ଐକ୍ୟ ପ୍ରତିଷ୍ଠାରେ ସହାୟକ ହୁଏ ।

- ପରମ୍ପରା ହିଁ ଆମ ଜୀବନକୁ ଗଢ଼େ ଓ ଅସ୍ତିତ୍ୱ ପ୍ରଦାନ କରେ । ଭାଷା ସାହିତ୍ୟରେ ପରମ୍ପରାକୁ ଅଣଦେଖା କଲେ ଆମ ପରିଚୟର ମୂଳଦୂଆ ପ୍ରତି ବିପଦ ସୃଷ୍ଟି ହେବ ।

- "A language is not just words it's culture, a tradition, a unification of a community, a whole history that creates what a community is. It's all embodies in a language," - Noam Chomasky

- "To be ignorant of what occured of before you were born is to remain always a child. For what is the worth of huamn life, unless it is woven into the life of our ancestors by the record of history."- Cicero, Quator (46BC)

- ଆଜିର ଦୁନିଆ  ରୋଗଗ୍ରସ୍ତ କାହିଁକି ? ଆମ ଚାରିପାଖରେ କ'ଣ ସବୁ ଘଟିଚାଲିଛି ଆପଣ ନଜର ପକାନ୍ତୁ । ସିରିଆରେ, ଉତ୍ତର କୋରିଆରେ, କାଶ୍ମୀରରେ ଅନ୍ୟାନ୍ୟ ସ୍ଥାନଗୁଡ଼ିକରେ କ'ଣ ଘଟୁଛି ଦେଖନ୍ତୁ । ପୃଥିବୀରେ ଆଦର୍ଶର ଅବକ୍ଷୟ ଘଟିଛି ।

- ଜଳବାୟୁ ପରିବର୍ତ୍ତନ ଆଜି ସମଗ୍ର ବିଶ୍ୱ ପାଇଁ ଏକ ଚିନ୍ତାଜନକ ବିଷୟ । ନାସା ଗ୍ଲୋବାଲ୍ କ୍ଲାଇମେଟ୍ ଚେଞ୍ଜ ଦ୍ୱାରା ପ୍ରକାଶିତ ତଥ୍ୟ ଅନୁସାରେ ବିଗତ ଶତାବ୍ଦୀରେ ପୃଥିବୀର ବାୟୁମଣ୍ଡଳର ତାପମାତ୍ରା ଦୁଇ ଡିଗ୍ରୀ ଫାରେନହାଇଟ୍ ବୃଦ୍ଧି ପାଇଛି । ଏହାର ଭୟାବହ ପରିଣାମ ବିଷୟରେ ଆମେ ସଚେତନ ହେବା ଓ ବେଳ ଥାଉଁ ଥାଉଁ ଏହାର ପ୍ରତିକାର ବ୍ୟବସ୍ଥା କରିବା ଏକାନ୍ତ ଆବଶ୍ୟକ । ଜଳବାୟୁ ପରିବର୍ତ୍ତନ ଯୋଗୁଁ, ବନ୍ୟା, ବାତ୍ୟା, ଦୁର୍ଭିକ୍ଷ, ମରୁଡ଼ି ଇତ୍ୟାଦି ପ୍ରାକୃତିକ ବିପର୍ଯ୍ୟୟ ପ୍ରବଳତର ହେବ । ଖାଦ୍ୟସମସ୍ୟା ଦେଖା ଦେବ । ପାନୀୟ ଜଳର ଘୋର ଅଭାବ ପରିଦୃଶ୍ୟ ହେବ ଓ ଆମ ଅର୍ଥନୀତି ଓ ଉତ୍ପାଦନ ସ୍ତର ଉପରେ ଏହାର ସିଧାସଳଖ ପ୍ରଭାବ ପଡ଼ିବ । ପ୍ରଦୂଷଣ ନିୟନ୍ତ୍ରଣ କରିବା ପାଇଁ ସବୁ ଦେଶମାନଙ୍କ ମଧ୍ୟରେ ରାଜନୈତିକ ସହମତି ସୃଷ୍ଟି କରିବା ଉଦ୍ଦେଶ୍ୟରେ ମିଳିତ ଜାତିସଂଘ ଉଦ୍ୟମ ଜାରି ରଖିଛି । ଫକୀରମୋହନ ଫାଉଣ୍ଡେସନ ଭାଷା ସାହିତ୍ୟ ମାଧ୍ୟମରେ ଯୁବପିଢ଼ିଠାରେ ପରିବେଶ ଓ ଜଳବାୟୁ ସମ୍ପର୍କରେ ସଚେତନତା ସୃଷ୍ଟି କରିବା ପାଇଁ କାର୍ଯ୍ୟରତ ।

- Young India

- ଲିଙ୍ଗଗତ ସଚେତନତା : Mc Kinsey Global Institute ର ଏକ ନୂଆ ରିପୋର୍ଟ ଅନୁସାରେ ମହିଳାମାନଙ୍କୁ ସମାନ ବୋଲି ଗ୍ରହଣ କରିନେଲେ ୨୦୨୫ ସୁଦ୍ଧା ବିଶ୍ୱର ଜି.ଡ଼ି.ପି.ରେ ୧୨ ଟ୍ରିଲିଅନ ଡଲାର ଅଧିକ ଆସିପାରିବ । ସମାଜର ଓ କର୍ମକ୍ଷେତ୍ରରେ ଲିଙ୍ଗଗତ ବୈଷମ୍ୟ କମାଇବା ପାଇଁ ସରକାରୀ, ବେସରକାରୀ ଓ ସାମାଜିକ ସଙ୍ଗଠନଗୁଡ଼ିକୁ ବିଭିନ୍ନ ପଦକ୍ଷେପ ନେବାକୁ ହେବ ।

- Cherish, Nurture, Enable

- Protect, Preserve, Promote - fakir Mohan Foundation's three watchwords

- ମନକୁ ସୁସ୍ଥକରିବା ପାଇଁ ଓ ଆତ୍ମାର ଶାନ୍ତି ପାଇଁ ଶବ୍ଦ ଓ ବିଚାରଗୁଡ଼ିକର ଅଦ୍ଭୁତ କ୍ଷମତା ରହିଛି । ସାହିତ୍ୟର ମହାନ କୃତିମାନ ଯୁଗ ଯୁଗ ଧରି ମାନବ ସମାଜକୁ ପ୍ରେରଣା ଦେଇଛନ୍ତି । ବର୍ଷ ବର୍ଷ ଧରି ଏହି ଜ୍ଞାନର ଗନ୍ତାଘରକୁ ଆଶ୍ରୟ କରି ଲୋକେ ନିଜକୁ ଶିକ୍ଷିତ କରିଛନ୍ତି । ଆଜିର ଅଶାନ୍ତ ଦୁନିଆରେ ଲୋକଙ୍କ ମଣିଷପଣିଆକୁ ଘଷିମାଜି ପାଲିସ କରିବାର ଆବଶ୍ୟକତା ରହିଛି । ସେମାନଙ୍କୁ ସମ୍ବେଦନଶୀଳ କରିବାର ଆବଶ୍ୟକତା ରହିଛି । ତଳେ ଦିଆଯାଇଥିବା Flowchart ରେ ଏହାର ଉପାୟ ଦର୍ଶାଯାଇଛି ।

- We are what our thoughts have made us; so tale care what you think. Words are secondary. Thoughts live; they travel far. - Vivekananda

- The world is never the same once good poem has been added to it- Dylan Thomas

- Education is not learning if facts, but the training of mind to think. - Albert Einstein

# ଫକୀରମୋହନ ସେନାପତିଙ୍କ ବଂଶଲତା

ଫକୀରମୋହନ ସେନାପତିଙ୍କ ବଂଶାନୁକ୍ରମ ସହିତ ପାଠକଙ୍କର ପରିଚୟ କରାଇଦେବା ଉଚିତ । ସୌଭାଗ୍ୟକ୍ରମେ, ପ୍ରତିଭା ରାୟଙ୍କ ଉପନ୍ୟାସ 'ମହାରାଣୀ ପୁତ୍ର'ରେ ଏହାର ଏକ ଚିତ୍ର ଦିଆଯାଇଛି । ତାହା ଏଠାରେ ଉଦ୍ଧାର କରୁଛି ।

## ଉପନ୍ୟାସ- 'ମହାରାଣୀ ପୁତ୍ର'




ଔପନ୍ୟାସିକା- ପ୍ରତିଭା ରାୟ
(ଜ୍ଞାନପୀଠ ପୁରସ୍କାର ବିଜେତା)

ଉତ୍ସର୍ଗ...

ଉତ୍କଳ ଜନନୀର ଦୁଇ କ୍ରାନ୍ତିକାରୀ ବରପୁତ୍ର
ବ୍ୟାସକବି ଫକୀରମୋହନ ସେନାପତି
ଏବଂ
ମହାନ ବିପ୍ଲବୀ ଧରଣୀଧର ନାଏକଙ୍କ
ଅମ୍ଳାନ ସ୍ମୃତିରେ...

## ଓଡ଼ିଆ ସାହିତ୍ୟର ଜନକ ବ୍ୟାସକବି ଫକୀରମୋହନ ସେନାପତିଙ୍କ ବଂଶଲତା



ଫକୀରମୋହନ ସେନାପତି ଚିରାଚରିତ ପ୍ରଥା ଅନୁସାରେ ନିଜର ଏକ ମାତ୍ର ପୁଅ ମୋହିନୀମୋହନଙ୍କ ନାମରେ ସମସ୍ତ ସମ୍ପତ୍ତି ଉଇଲ୍ କରିଦେବା ପରିବର୍ତ୍ତେ ବୋହୂ ହିରଣପ୍ରଭାଙ୍କ ନାମରେ ସମ୍ପତ୍ତିବାଡ଼ି ଲେଖିଦେଇଥିଲେ । ମାଆଙ୍କ କହିବା ଅନୁସାରେ ଫକୀରମୋହନ ଆବେଗପ୍ରବଣ ହୋଇ ଏମିତି କରିପକାଇଥିଲେ । ଅବଶ୍ୟ କେତେ ଲୋକ ଏହାକୁ ଫକୀରମୋହନଙ୍କ ଉଦାରତା ବୋଲି ଅଭିହିତ କଲେ । ମାଆ ମୋତେ କହିଥିଲେ ଯେ, ଆଈ ତାଙ୍କ ପତି (ମୋହିନୀମୋହନ) ମହୋଦୟଙ୍କୁ ବେଳେବେଳେ ଥଟ୍ଟାରେ କହୁଥିଲେ, "ମନେଅଛି ତ ? ବର୍ତ୍ତମାନ ସମ୍ପତ୍ତିବାଡ଼ିର ମାଲିକାଣୀ ମୁଁ । ମୁଁ ହେଉଛି ଉତ୍ତରାଧିକାରୀ, ତମେ ନୁହଁ ।" ପ୍ରତ୍ୟୁତ୍ତରରେ ଅଜା କହୁଥିଲେ, "ହଁ, ହଁ, ନିଶ୍ଚୟ । କାହିଁକି ହେବନି ମାଲିକାଣୀ ? ସବୁ କିଛି ଢାକାରୁ ପାଇଥିବ ବୋଧେ ।" ମୋ ଆଈଙ୍କ ବାପଘର ଥିଲା ଢାକାରେ । ତେଣୁ ଏମିତି ହାଲୁକା ଥଟ୍ଟା ପରିହାସ ଚାଲୁଥିଲା ।

କିଛିଦିନ ଆଗରୁ ଫକୀରମୋହନଙ୍କ 'ଇଚ୍ଛାପତ୍ର'ଟି ମୋତେ ପୁଣି ଥରେ ପଢ଼ିବାକୁ ମିଳିଲା । ଏହା ବର୍ତ୍ତମାନ ଛପା ହୋଇ ଲୋକଙ୍କ ପାଇଁ ପ୍ରକାଶିତ ହୋଇସାରିଛି । ଫକୀରମୋହନ ଦିଦିମାଙ୍କୁ ଯେପରି ଭାବେ ଦୃଢ଼ ବିଶ୍ୱାସ କରୁଥିଲେ ଓ ଆଦର କରୁଥିଲେ, 'ଇଚ୍ଛାପତ୍ର'ରେ ତାହା ପ୍ରତିଫଳିତ । ମୋ ମାଆ ଓ ମାଉସୀମାନଙ୍କ ନାଁ ମଧ୍ୟ ସେଥିରେ ଲେଖାହୋଇଛି । ମୋର ମନେପଡ଼ିଗଲା ପୁରୁଣା କଥାସବୁ । ମାଆ କହୁଥିଲେ ଯେ, ଦିଦିମା ମୋ ଅଜା ମୋହିନୀମୋହନ ସେନାପତିଙ୍କୁ ଚିଡ଼େଇବା ପାଇଁ ବେଳେବେଳେ 'ଇଚ୍ଛାପତ୍ର' କଥା ଉଠାଉଥିଲେ । କହୁଥିଲେ, "ତୁମ ବାପା ତ ସବୁ କିଛି ମୋ ନାଁରେ କରିଦେଲେ; ସେ ତୁମ ଅପେକ୍ଷା ମୋତେ ବେଶୀ ଭଲପାଉଥିଲେ ।" ମୋହିନୀମୋହନ ତତକ୍ଷଣାତ ଚତୁରତା ସହ ଏହାର ପ୍ରତ୍ୟୁତ୍ତର ଦେଉଥିଲେ । ମୋହିନୀମୋହନଙ୍କ ପାଇଁ ଏହା ସେମିତି ଗୋଟେ ଗୁରୁତର ସମସ୍ୟା ନଥିଲା । ସେ ଭଲ ଭାବେ ଜାଣିଥିଲେ ଯେ, ତାଙ୍କର ଅନୁରକ୍ତା ପତ୍ନୀ କେବେ ହେଲେ ପରିବାରର ସମସ୍ତଙ୍କର ମିଳିତ ସ୍ୱାର୍ଥ ବିରୋଧରେ ଯାଇ ମନ ଇଚ୍ଛା କିଛି ପଦକ୍ଷେପ ନେବେ ନାହିଁ ।

ଫକୀରମୋହନଙ୍କ ମୃତ୍ୟୁ ହେଲା ୧୯୧୮ରେ । ଅନେକ ବର୍ଷ ପରେ, ୧୯୫୦ରେ ସମ୍ପତ୍ତି ଭାଗବଣ୍ଟା ହେଲା । ଫକୀରମୋହନଙ୍କ ବାଲେଶ୍ୱରର ସମ୍ପତ୍ତି ମିଳିଲା ମୋ ମାଆଙ୍କୁ । ମୋର ସାନ ମାଉସୀ ପାଇଲେ ବାଖରାବାଦ ଘର । ସବୁଠୁ ବଡ଼ମାଉସୀ, ନୀରା ଦେବୀ ବା ଯିଏ ପରେ ମୈତ୍ରୀ ନାମରେ ଜଣାପାଇଲେ ବକ୍ସିବଜାର ଘର । ଦୁର୍ଭାଗ୍ୟକୁ, ମୋ ମାଆଙ୍କ ଭାଗର ସମ୍ପତ୍ତିକୁ ସରକାର ନେଇଗଲେ ତାହାକୁ ଫକୀରମୋହନଙ୍କ 'ସ୍ମୃତିସ୍ମାରକୀ'ରେ ପରିଣତ କରିବାପାଇଁ । ଅବଶ୍ୟ ଏହା ଆଉ ଏକ କାହାଣୀ ।

# ମୋ ଦୃଷ୍ଟିକୋଣଭିତ୍ତିକ କେତେକ ବିଶେଷ ପ୍ରସଙ୍ଗ

ଫକୀରମୋହନ ସେନାପତିଙ୍କ ବଂଶଜ ହୋଇଥିବାରୁ ମୁଁ ଗର୍ବିତ । ସେନାପତି ବଂଶର ସଂସ୍କୃତିରେ ପିଲାଙ୍କୁ ଯେପରି ଲାଳନପାଳନ କରାଯାଏ ତାହାର ସୁଯୋଗ ମୁଁ ପାଇଛି । ଏହା ମୋ ପାଇଁ ସୌଭାଗ୍ୟର କଥା । ମୋ ଶିକ୍ଷାଦୀକ୍ଷାରେ ଭରି ରହିଥିଲା ପ୍ରଚୁର ଆଦର୍ଶବାଦ, ଭିନ୍ନ ଭିନ୍ନ ସଂସ୍କୃତି ସହ ପରିଚୟ ଓ ଉଚିତ ମୂଲ୍ୟବୋଧର ଜ୍ଞାନାନୁଶୀଳନ । ତଥାକଥିତ ଭାବେ ସଫଳତା କହିଲେ ଯାହା ବୁଝାଯାଏ ହୁଏତ ମୁଁ ସେ ମାପକାଠିରେ ବିଶେଷ ସଫଳତା ପାଇନାହିଁ । କିନ୍ତୁ ମୁଁ ନିଜକୁ ସଫଳ ବୋଲି ମନେକରେ କାରଣ ମୋ ଜୀବନରେ ଅନେକାଂଶରେ ସନ୍ତୋଷ ଓ ପରିପୂର୍ଣ୍ଣତା ଅନୁଭବ କରିଛି । ବିଶେଷ କରି କର୍ମସୂତ୍ରରେ ତଥା ଅନ୍ୟାନ୍ୟ କ୍ଷେତ୍ରରେ ସମାଜର ବିଭିନ୍ନ ବର୍ଗର ଲୋକଙ୍କ ସହ ମିଶିବାର ସୁଯୋଗ ପାଇଥିବା ଯୋଗୁଁ । ମନେପଡୁଛି ଗୋଟିଏ ପୁରୁଣା କଥା । ମୁଁ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ସହ ଅନୁବନ୍ଧିତ ଏକ କଲେଜରେ NSS (National Service Scheme) ଦାୟିତ୍ୱରେ ଥାଏ । ଏହି ଦାୟିତ୍ୱ ମୁଁ ସ୍ୱେଚ୍ଛାରେ ଗ୍ରହଣ କରିଥିଲି । NSS କାମ କରିବା ବେଳେ ମୁଁ ସମାଜରେ ତଳ ବର୍ଗର ଲୋକଙ୍କ ସହ ମିଳାମିଶା କରିବାର ସୁଯୋଗ ପାଇଲି । ଜୀବନର ବାସ୍ତବତା ବିଷୟରେ ଏହି ଅନୁଭୂତିରୁ ମୋର କିଛି ଜ୍ଞାନ ହେଲା । ମୋ ଛାତ୍ରଛାତ୍ରୀମାନଙ୍କ ସହ ଦିଲ୍ଲୀର ବସ୍ତିଗୁଡ଼ିକରେ କାମ କଲାବେଳେ ମୁଁ ବିନମ୍ରତା ଓ ସରଳତା ପ୍ରକୃତରେ କ'ଣ ତାହା ଶିକ୍ଷା କଲି । କାମରେ ସମ୍ପୃକ୍ତ ଥିବାରୁ ମୁଁ ଲୋଧି ରୋଡ଼୍‌ର ଅନ୍ଧପିଲାଙ୍କ ସ୍କୁଲରେ, ଓଖଲା ରୋଡର NSS ରେ ଓ କେତେକ Rehabilitation Camp ରେ କାମ କରିବାର ସୁଯୋଗ ପାଇଲି । ଏହା ମୋ ପାଇଁ ଏକ ଶିକ୍ଷାପ୍ରଦ ଅନୁଭବ ଥିଲା ।

ଏହି ସୁଯୋଗ ପାଇଁ ଭଗବାନଙ୍କ ପାଖରେ କୃତଜ୍ଞ । ଏହି ଅଭିଜ୍ଞତା ଯୋଗୁଁ ମୋ ପ୍ରକୃତିର କେତେକ ଦୁର୍ବଳ ଦିଗ ଦୂର ହୋଇଗଲା । ଏବେ ମୁଁ ମାନବଜାତିର ଆହୁରି ନିକଟତର ହେବାପାଇଁ ଓ ବିଭିନ୍ନ ପ୍ରକାରର ମଣିଷଙ୍କୁ ଆଦରି ନେବାପାଇଁ ଅନେକ ମାତ୍ରାରେ କ୍ରମଶଃ ପ୍ରସ୍ତୁତ ହେଲି । ଜୀବନ ଅନେକ ବିସ୍ମୟ ଆଣେ । ମୋ ଜୀବନରେ ମଧ୍ୟ ଅପ୍ରତ୍ୟାଶିତ ଭାବେ ଅନେକ ସୁଖଦ ଓ ଦୁଃଖଦ ଘଟଣା ଘଟଣା ଘଟିଛି । ଗୋଟିଏ ଘଟଣା ମୋ

ଜୀବନରେ ଅନେକ ପ୍ରଭାବ ପକାଇଥିଲା । ତାହା ମୋ ଜୀବନ ବଦଳାଇ ଦେଇଥିଲା । ସେ ଘଟଣାଟି ହେଲା ବୌଦ୍ଧ ଧର୍ମର Soka Gakkal International (SGI) ପରମ୍ପରା ସହ ମୋର ପରିଚିତି । ଏହି ପରିଚୟ ପରେ ମୋ ଜୀବନର ସଂଜ୍ଞା ବଦଳିଗଲା । ଯୁବବର୍ଗଙ୍କୁ କେନ୍ଦ୍ରରେ ରଖି ସମାଜର ମଙ୍ଗଳ ପାଇଁ କାମ କରିବା ହେଲା SGI ର ଉଦ୍ଦେଶ୍ୟ । ଯେହେତୁ ମୁଁ ଓ ମୋ ସ୍ୱାମୀ ଏହି ଉଦ୍ଦେଶ୍ୟ ପାଇଁ ନିଜକୁ ସମର୍ପିତ କରିଦେଇଛୁ । ସେଥିପାଇଁ ଆମେ ଦୁହେଁ ସମାଜର ଯୁବବର୍ଗଙ୍କୁ ବିଭିନ୍ନ ସମାଜ କଲ୍ୟାଣକର କାମରେ ଯୋଗ ଦେବା ପାଇଁ ପ୍ରୋତ୍ସାହିତ କରୁ ।

ବିଭିନ୍ନ କାମରେ ତଥା ସାଧାରଣ ପର୍ଯ୍ୟଟକ ଭାବେ ମୁଁ ପୃଥିବୀର ଅନେକ ସ୍ଥାନ ଭ୍ରମଣ କରିଛି । ବିଭିନ୍ନ ଦେଶର ବିଭିନ୍ନ ଧରଣର ଲୋକଙ୍କ ସହ କଥାବାର୍ତ୍ତା କଲାବେଳେ ମୁଁ ବାରମ୍ବାର ନିଜକୁ ଆବିଷ୍କାର କରିଛି । କର୍ମସୂତ୍ରରେ ପାଶ୍ଚାତ୍ୟ ଜଗତରେ ମୁଁ ପ୍ରଥମ ଥର ପାଇଁ ପାଦ ଦେବା ଘଟଣାଟି ବିଚିତ୍ର ଲାଗେ । କାନାଡାର ଭାଙ୍କୋଭରସ୍ଥିତ ବ୍ରିଟିଶ କଲମ୍ବିଆ ବିଶ୍ୱବିଦ୍ୟାଳୟରେ ଓମେନସ୍ ଷ୍ଟଡିଜ ବିଭାଗର ନିର୍ଦ୍ଦେଶିକା ଥିଲେ ଜଣେ ଭଦ୍ର ମହିଳା । ସେ ମୋତେ ନିମନ୍ତ୍ରଣ କରିଥିଲେ । ଏଥିପାଇଁ ମୁଁ ଆବେଦନ କରିନଥିଲି । କେଜାଣି କେମିତି ତାଙ୍କ ନିମନ୍ତ୍ରଣ ଆସି ମୋ ପାଖରେ ପହଞ୍ଚିଲା । ବୋଧେ ଇଣ୍ଟରନେଟ୍‌ରୁ ସେ ମୋ ବିଷୟରେ ଜାଣିବାକୁ ପାଇଥିଲେ । ଜଣେ ଭିଜିଟିଙ୍ଗ୍ ସ୍କଲାର ଭାବେ ସେଠାରେ ମୁଁ ତିନି ମାସ ରହିଲି । ମୋର ସବୁ ଖର୍ଚ୍ଚ କର୍ତ୍ତୃପକ୍ଷ ବହନ କଲେ । ସେହିଭ୍ରମଣର ଅନୁଭୂତି ନିଆରା ଥିଲା । ମୋ ଆଖି ଖୋଲିଗଲା । ପ୍ରଥମେ ପ୍ରଥମେ ସବୁ ଆଡେ ଗୋରା ଲୋକଙ୍କ ଗହଣରେ ମୋତେ ଟିକେ ଅଖାଡୁଆ ଲାଗିଲା । ମୁଁ ଅବିଳମ୍ବେ ନିଜକୁ ଖାପଖୁଆଇ ନେଲି । ସେଠାରେ ରହୁଥିବା ମୋ ମାଉସୀ ଝିଅ ଭଉଣୀକୁ ମୋତେ ଦେଖାକରିବା ପାଇଁ ଡାକିଲି । ମୋ ପିଲାମାନେ ମଧ୍ୟ ଅନେକ ସାହାଯ୍ୟ କଲେ । ମୋ ପାଇଁ ଘର ଖୋଜି ଦେଲେ । ସଂଯୋଗକୁ ମୋ ପୁଅବୋହୂ ସେତେବେଳେ ପୋର୍ଟଲ୍ୟାଣ୍ଡରେ ରହୁଥାଆନ୍ତି । ମୁଁ ଆବିଷ୍କାର କଲି ଯେ, ଲୋକଙ୍କ ଭିତରେ ଅନେକ ପାର୍ଥକ୍ୟ ରହିଥିଲେ ମଧ୍ୟ ମୂଳତଃ କେତୋଟି କଥା ସର୍ବତ୍ର ସମାନ । ତାହା ହେଲା ମଣିଷମାନଙ୍କର ମୌଳିକ ଆବେଗ ଓ ପ୍ରକୃତି । ସେଇଥିପାଇଁ ହିଁ ଆମେ ସମସ୍ତଙ୍କ ସହ ମିଶି ଚଳିଯାଇ ପାରୁଛୁ ।

ଗତ ସତର ବର୍ଷ ହେଲା ପ୍ରତି ବର୍ଷ ମୁଁ ବିଦେଶରେ ରହୁଥିବା ମୋ ପିଲାମାନଙ୍କ ପାଖକୁ ବୁଲିବାକୁ ଯାଏ । ୟୁରୋପର ବିଭିନ୍ନ ସୁନ୍ଦର ସ୍ଥାନ ମୁଁ ବୁଲିଛି । ଯଥା : - ସ୍ୱିଜରଲ୍ୟାଣ୍ଡର ମାଉଣ୍ଟ ଟିଟିଲସ୍, ଫ୍ରାନ୍ସର ପଥର ଆଚ୍ଛାଦିତ ସମୁଦ୍ର ତଟ, ସେକ୍ସପିୟରଙ୍କ

ଘର-ଇଂଲଣ୍ଡର Statford-upon-Avon, ଇଟାଲୀ ଓ ରୋମ । ଆମେରିକାରେ ବୁଲିଛି ଲସ୍ ଭେଗାସ୍, ଗ୍ରାଣ୍ଡ କେନିଅନ, ଓରେଗନରେ କେଅଟର ହ୍ରଦ, ଇଦାହୋରେ ୟେଲୋଷ୍ଟୋନ ଜାତୀୟ ଉଦ୍ୟାନ । ତା' ସହିତ କାନାଡ଼ାରେ ନାଏଗ୍ରା ଜଳପ୍ରପାତ ସମେତ ଅନେକ ସ୍ଥାନ ବୁଲିଛି । ଚୀନରେ ବୁଲି ଦେଖିଛି ବେଜିଂ ଓ ହଂକଂ ସହର । ଅଷ୍ଟ୍ରେଲିଆ ଯାଇଛି । ଦୁବାଇରେ ଆଧୁନିକ ଯନ୍ତ୍ରବିଦ୍ୟାର ଚମତ୍କାର ଦେଖିଛି । ଏହି ତାଲିକାରେ ଆହୁରି କେତେ ସ୍ଥାନ ଅଛି । ତେବେ ମୋ ପର୍ଯ୍ୟଟନର ଏହି ସଂକ୍ଷିପ୍ତ ବିବରଣୀଟି ଦେବାର କାରଣଟି କହୁଛି । ମୋତେ ଆଶ୍ଚର୍ଯ୍ୟ ଲାଗୁଛି ଯେ ପୃଥିବୀର ଏତେ ଜାଗା ବୁଲିବା ପରେ ମଧ୍ୟ ବାଖରାବାଦ ଘର କଥା ଉଠିଲେ ମୋ ହୃଦୟ ବୀଣାର ତାର ନିନାଦିତ ହୁଏ କାହିଁକି ? ଇଂରାଜୀରେ ଗୋଟିଏ ଶବ୍ଦ ଅଛି 'Memes' ଯାହାର ଅର୍ଥ ହେଲା ଆମ ମନରେ ଗଭୀର ଭାବେ ଛାପ ଛାଡିଯାଇ ଥିବା ସାଂସ୍କୃତିକ ଓ ସାମଜିକ ପ୍ରଭାବମାନ । ଏହା ଗଭୀର ଭାବେ ମଣିଷ ମନରେ ବସା ବାନ୍ଧି ରହିଯାଏ । ଏହା କୌଣସି ଆନୁବଂଶିକ ଉପାୟରେ ସଂଚରିତ ହୁଏ ନାହିଁ । ତେବେ କ'ଣ 'Memes' ବା ସାଂସ୍କୃତିକ ସଂସର୍ଗ ଯୋଗୁଁ ମୋର ବାଖରାବାଦ ସ୍ମୃତି ପ୍ରତି ଏତେ ଅନୁରକ୍ତି ?

ଏହା ମଧ୍ୟ ହୋଇପାରେ ଯେ ବାଖରାବାଦ ଅଭିଜ୍ଞତା ହେଉଛି ମୋ ପିଲାମନରେ ରହିଯାଇଥିବା ଅଲିଭା ଛାପ । କୁହାଯାଏ ଯେ ଜୀବନର ପ୍ରଥମ ଦଶ ବର୍ଷର ଅନୁଭୂତି ମଣିଷକୁ ସବୁଠାରୁ ବେଶୀ ସହଜରେ ପ୍ରଭାବିତ କରେ । ସେତେବେଳେ ଯାହା କିଛି ସାଂସ୍କୃତିକ, ଆବେଗାତ୍ମକ, ଶିକ୍ଷଣୀୟ ଅନୁଭୂତି ମିଳେ ସବୁ ମନେ ରହିଯାଏ । ଆଦର ସହକାରେ ଶିଖାଇଲେ ଏହି ଶିକ୍ଷାର ପ୍ରଭାବ ଆହୁରି ଗଭୀର ହୁଏ ଏବଂ ଆଜୀବନ ପାଇଁ ରହିଯାଏ ।

ଏସବୁ କଥା ଲେଖିବା ବେଳେ ମନେ ହେଉଛି ମୁଁ ଆଜିର ଦୁନିଆର ବାସିନ୍ଦା ନୁହେଁ, ମୁଁ ଆଉ କେଉଁଠୁ ଆସିଛି । ଆଧୁନିକ ଚାଲିଚଳଣ ସହ ଅପରିଚିତ ଥିବା ଲୋକଙ୍କୁ ଏମିତି ଲାଗିବା ସ୍ୱାଭାବିକ । ଦ୍ରୁତ ଗତିରେ ଧାଉଁଛି ବିକାଶର ରଥ । ଅପର ପକ୍ଷରେ ଭାବନା, ଆବେଗ ଇତ୍ୟାଦିର ମୂଲ୍ୟ ବିପଜ୍ଜନକ ଭାବେ ହ୍ରାସପାଇଛି । ମଣିଷ ଜୀବନର ସଂଜ୍ଞା ମଧ୍ୟ ବଦଳି ଯାଇଛି । ଆଜିର ଦୁନିଆରେ ଯନ୍ତ୍ରବିଦ୍ୟାର ରାଜତ୍ୱ । ସର୍ବବ୍ୟାପୀ ଡିଜିଟାଲାଇଜେସନ । କେତୋଟି ଅଦ୍ଭୁତ ପରିବର୍ତ୍ତନର ଉଦାହରଣ ଦେଉଛି : ବ୍ଲୁଟୁଥ୍ (Bluetooth), ନାନୋ ଟେକ୍ନୋଲୋଜି (Nanotechnology), କ୍ଲାଉଡ ଟେକ୍ନୋଲୋଜି (Cloud technology), ଡିଏନ୍ଏ ମ୍ୟାପିଂ (DNA Mapping), ଜେନେଟିକ କୋଡିଂ

(Genetic Coding), ରୋବୋଟିକ୍ସ (Robotics), ଆର୍ଟିଫିସିଆଲ ଇଣ୍ଟେଲିଜେନ୍ସ (Artificial Intelligence), ମଣିଷ ଭ୍ରୂଣର ଜିନୋମରେ ହେରଫେର (Editing of Genome of human embryos) ଓ ଆହୁରି କେତେ କ'ଣ । ଆଜିର ଆଧୁନିକ ଯୁଗରେ ଏସବୁ ଉଦ୍ଭାବନର ଗୁରୁତ୍ୱ ଖୁବ ବେଶୀ ।

କହିବା ବାହୁଲ୍ୟ, ନାନାଦି ବିଭ୍ରାନ୍ତି ମଧ୍ୟ ବଢ଼ିଚାଲିଛି । ବଢ଼ିଛି ନରହତ୍ୟା, ଆତଙ୍କବାଦ, ରାସାୟନିକ ଯୁଦ୍ଧ, ଜାଗତିକ ଉଷ୍ମତା, ୩୫ ବର୍ଷରୁ କମ ବୟସର ଯୁବକ ଯୁବତୀଙ୍କ ଆତ୍ମହତ୍ୟା ହାର, ମହିଳାଙ୍କ ଉପରେ କଦର୍ଯ୍ୟତମ ନିର୍ଯ୍ୟାତନା । ପାଣି ଓ ପବନ ପାଇଁ ଯୁଦ୍ଧର ଆଶଙ୍କା ରହିଛି । ସଂକ୍ଷେପରେ କହିଲେ ମଣିଷ ଏକ ଉଦବେଗଜନକ ପରିସ୍ଥିତିରେ ବଞ୍ଚୁଛି ଓ ନିଜ ଅସ୍ତିତ୍ୱକୁ ଅସ୍ୱୀକାର କରିବା ଆରମ୍ଭ କରିଛି । ଏହି ପରିପ୍ରେକ୍ଷୀରେ ମଣିଷକୁ ସ୍ୱାଭାବିକ ଅବସ୍ଥାକୁ ଫେରାଇ ଆଣିବାପାଇଁ ଲୋଡ଼ା ଆମର ସାଂସ୍କୃତିକ ପରମ୍ପରା । ମଣିଷ ଅସ୍ତିତ୍ୱର ମର୍ମଟିକୁ ସୁରକ୍ଷିତ ରଖିବାକୁ ହେବ । ଆମେରିକାର ଇଣ୍ଡିଆନା ବିଶ୍ୱବିଦ୍ୟାଳୟର ନୃତତ୍ତ୍ୱବିଦ୍ ଷ୍ଟାନଲେ ନିକଙ୍କ ଲେଖାରୁ ଏଠାରେ କିଛି ଉଦ୍ଧାର କରିବା ଯଥାର୍ଥ ହେବ । ସେ ଲେଖନ୍ତି, "ଯଦିଓ ପାରମ୍ପରିକ ଓ ଆଧୁନିକ ସଂସ୍କୃତି ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି, ତଥାପି କେତୋଟି ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ଯୋଗୁଁ ଏହି ଦୁଇ ସଂସ୍କୃତି ପରସ୍ପର ଠାରୁ ସ୍ପଷ୍ଟ ରୂପେ ଭିନ୍ନ । ଆମ ପୂର୍ବପୁରୁଷମାନଙ୍କର ଯେଉଁ ପାରମ୍ପରିକ ସଂସ୍କୃତି ରହିଥିଲା ତାହାକୁ ଏକାଠି ଧରିରଖିଥିଲା ମଣିଷ ମଣିଷ ଭିତରେ ଥିବା ସମ୍ପର୍କ ସୂତ୍ର ଯଥା- ପରିବାର, କୁଟୁମ୍ବ, ବଂଶ, ଗୋଷ୍ଠୀ, ସମ୍ପ୍ରଦାୟ ଇତ୍ୟାଦି ।" (Traditional Culture and Modern Culture: Man's fall Grace) ଆଧୁନିକ ସମାଜରେ ଏସବୁ ବିଲୀନ ହେବାକୁ ଯାଉଛି ।

ଆଧୁନିକ ସଂସ୍କୃତି ହେଉଛି ପରିବର୍ତ୍ତନଶୀଳ । ଏହି ସଂସ୍କୃତି ଗୁରୁତ୍ୱ ଦିଏ ଶକ୍ତି ଉପରେ ଓ ପାର୍ଥିବ ଜିନିଷ ଉପରେ । ସୂଚନା ଓ ବୈଷୟିକ ବିଦ୍ୟା ହେଉଛି ଏହାର ଅଧାର । ପାରମ୍ପରିକ ସଂସ୍କୃତି କେବଳ ବିଦ୍ୟା ନୁହେଁ, ବରଂ ଜ୍ଞାନ ଓ ଉପଲବ୍ଧି ସ୍ତରକୁ ଗୁରୁତ୍ୱ ଦିଏ । ଏହା ଲୋକମାନଙ୍କର ପାରସ୍ପରିକ ସମ୍ପର୍କ ଉପରେ ଆଧାରିତ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କ'ଣ ? ସାଧାରଣ ଲୋକମାନେ ହିଁ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ । ତେଣୁ ମାନବ ଜାତିର ସୁରକ୍ଷା ସକାଶେ ଉଭୟ ପାର୍ଥିବ ତଥା ଅପାର୍ଥିବ ଐତିହ୍ୟର ସଂରକ୍ଷଣ, ସୁରକ୍ଷା ଓ ପ୍ରସାର ନିତାନ୍ତ ଆବଶ୍ୟକ ।

ଏଇ କେତେ ଦିନ ତଳେ ଟି.ଭିରେ ମୁଁ ଏକ ଆଲୋଚନା ଦେଖୁଥିଲି ଯାହାର ବିଷୟବସ୍ତୁ ଥିଲା 'ବିକାଶ କହିଲେ କ'ଣ ବୁଝାଏ ।' ଖୁସି ଲାଗିଲା ଯେ ଜଣେ ବିଦ୍ୱାନ

ବ୍ୟକ୍ତିଙ୍କ ଯୁକ୍ତିରେ ମୁଁ ମୋ ନିଜସ୍ୱ ବିଚାରର ପ୍ରତିଧ୍ୱନି ଶୁଣିଲି । ତାଙ୍କ ମତରେ ଅତିଶୟ ବିକାଶ ଏକ ନିର୍ଦ୍ଦିଷ୍ଟ ସମୟ ପରେ ବିପରୀତ ପରିଣାମ ଆଣି ଦେଇଥାଏ । ମୁଁ କହିବି, ଯଦି ଉତ୍ପାଦନ ଶକ୍ତି ଜନମଙ୍ଗଳକାରୀ କାର୍ଯ୍ୟକ୍ରମ ପାଇଁ ଅର୍ଥ ଯୋଗାଇବା ସହିତ ଲୋକଙ୍କ ଆନନ୍ଦ ମଧ୍ୟ ବୃଦ୍ଧି କରି ପାରୁଛି, ତେବେ ହିଁ ଆମେ କହିପାରିବା ଯେ ଉତ୍ପାଦନ ଶକ୍ତିର ବୃଦ୍ଧି ଘଟିବା ସହ ବାସ୍ତବରେ ଲୋକଙ୍କ ସମୃଦ୍ଧି ବଢୁଛି । ହିତକର ଅର୍ଥନୀତି (Welfare Economics) ରେ ଏହି ବିଚାରଟି ସ୍ପଷ୍ଟ ଭାବେ ପ୍ରମାଣିତ । ଆହୁରି ମଧ୍ୟ ଗୋଟିଏ କଥା, ବୈଷୟିକ ଦୁନିଆରେ ଆଜିକାଲି CSR (Corporate Social Responsibility) ର ଉଲ୍ଲେଖ ବାରମ୍ବାର ହେଉଛି । ଏହା ନିଶ୍ଚୟ ମହତ୍ତ୍ୱପୂର୍ଣ୍ଣ । କିନ୍ତୁ ମୋ ମତରେ ଏହା ସହିତ HSR (Human Social Responsibility) କୁ ପ୍ରୋତ୍ସାହିତ କରିବା ନିତାନ୍ତ ଆବଶ୍ୟକ । ଏହା ଦ୍ୱାରା ଶାନ୍ତି ଓ ଭାତୃତ୍ୱ ବଜାୟ ରହିବ । ମୁଖ୍ୟ କଥା ହେଲା ଲୋକଙ୍କ ସୁଖଶାନ୍ତି । ତାହା ହିଁ ସବୁଠୁ ବେଶୀ ଗୁରୁତ୍ୱପୂର୍ଣ୍ଣ କଥା । ରବୀନ୍ଦ୍ରନାଥ ଠାକୁର ମଧ୍ୟ କହିଚନ୍ତି 'ସବାର ଆଗେ ମାନୁଷ... ।' ମଣିଷ ହିଁ କେନ୍ଦ୍ରବିନ୍ଦୁ ।

ଆଜିର ଦୁନିଆରେ ଆରାମରେ ଜୀବନ କାଟିବା ପାଇଁ ଅନେକ ସୁବିଧା ସୁଯୋଗ ଉପଲବ୍ଧ । କିନ୍ତୁ ସେସବୁ ସୁବିଧା ବାଟ ମଣିଷର ବୁଦ୍ଧିବଣା କରିଦେଉଛି । ଲୋକେ ବିଭ୍ରାନ୍ତ ହେଉଛନ୍ତି, ଜୀବନ ପ୍ରତି ଉଦାସୀନ ହୋଇପଡୁଛନ୍ତି । ଏଣିକି ରୋବଟମାନଙ୍କ ଦ୍ୱାରା ରାଜତ୍ୱ ଚାଲିବ । ଭବିଷ୍ୟତର ଉପକରଣଗୁଡ଼ିକ ମଣିଷକୁ ଅଦରକାରୀ ଘୋଷିତ କରିଦେବେ । ଆଉ ବେଶୀ ଦିନ ଲାଗିବନି ରୋବଟମାନଙ୍କର ଶାସନ ଆରମ୍ଭ ହେବା ପାଇଁ । ପରିବର୍ତ୍ତନର ଘୂର୍ଣ୍ଣିବଳୟ ଆମକୁ ଅଣାୟତ୍ତ କରିଦେଉ ନାହିଁ କି ? ମଣିଷମାନେ ଜାଣି ଅଜଣା ପରି ରହିଛନ୍ତି । ଭଗବତମନସ୍କ ହେବା ପାଇଁ କ'ଣ ସମୟ ଆସିଯାଇ ନାହିଁ ? ପ୍ରକୃତିକୁ ଉପଭୋଗ କରିବା, ମାନବିକତା, ସାହିତ୍ୟ, ସଙ୍ଗୀତ, ସୁଖାଦ୍ୟ ଇତ୍ୟାଦି ସହ ସମସ୍ତେ ମିଳିମିଶି ଜୀବନର ସ୍ୱାଦ ଚାଖିବା କ'ଣ ଆମେ ଭୁଲିଗଲୁଣି ? ଏହି ସନ୍ଧିକ୍ଷଣରେ କ'ଣ ଏକ ମଧ୍ୟମ ପନ୍ଥା ଆପଣେଇନେବା ସମ୍ଭବ ? ଉତ୍ତର ହେଉଛି, ହଁ ନିଜ ପାଗଳାମି ଛାଡି ମଣିଷ ନିଜର କ୍ଷୟମାଣ ଅସ୍ତିତ୍ୱକୁ ସଂରକ୍ଷଣ କରିପାରିବ । ଜୀବନର ଛୋଟ ଛୋଟ ଖୁସିକୁ ଉପଭୋଗ କରି ପାରିଲେ ହିଁ ନକାରାତ୍ମକ ପ୍ରଭାବଗୁଡ଼ିକ ଠାରୁ ମଣିଷ ନିଜକୁ ସୁରକ୍ଷିତ ଦୂରତାରେ ରଖିପାରିବ । ଅବଶ୍ୟ ଏହି କଥା କହିବା ସହଜ ଓ କାମରେ କରି ଦେଖାଇବା କଷ୍ଟ । କିନ୍ତୁ କୌଣସି ମତେ ଅସମ୍ଭବ ନୁହେଁ । ଭଲ ଜୀବନ ହେଉଛି ସେହି ଜୀବନ ଯାହାର ମାର୍ଗଦର୍ଶକ ହେଉଛି ବିଦ୍ୟା ଓ ପ୍ରେରଣା ହେଉଛି ପ୍ରେମ । ବିଦ୍ୟା କ୍ଷେତ୍ରରେ

ତ ଆଶାତୀତ ଭାବେ ଉନ୍ନତି ଘଟୁଛି କିନ୍ତୁ ଜ୍ଞାନର ଅଭାବ ରହି ଯାଉଛି । ଏହା ସହିତ ମଣିଷ ମଣିଷ ଭିତରେ ଭଲପାଇବା କମି କମି ଯାଉଛି ।

ମୁଁ ସମାଜର ମଙ୍ଗଳ ଉଦ୍ଦେଶ୍ୟରେ ଫକୀରମୋହନଙ୍କ ବିଚାରକୁ ପ୍ରସାରିତ କରିବାକୁ ଚାହେଁ । ବିଶେଷ କରି ଯୁବସମାଜର ଆନନ୍ଦ ବୃଦ୍ଧି ପାଇଁ ଏହା ନିତାନ୍ତ ଆବଶ୍ୟକ । ସାହିତ୍ୟକୁ ଲୋକାଭିମୁଖୀ କରିବା ଦିଗରେ ଅନେକ ପ୍ରଶଂସନୀୟ ପ୍ରୟାସ ଦେଖିବାକୁ ମିଳୁଛି । କିନ୍ତୁ ଶବ୍ଦମାନଙ୍କ ଭିତରେ ନିହିତ ଥିବା ଭାବନାଗୁଡ଼ିକୁ ହୃଦୟଙ୍ଗମ ନ କଲେ, କାମରେ ନ ଲଗାଇଲେ ସାହିତ୍ୟ ପଢ଼ି କ'ଣ ଲାଭ ହେବ ? ମୁଁ ଚାହେଁ ଆଜିର ପିଲାମାନେ ଜୀବନର ପ୍ରକୃତ ମୂଲ୍ୟବୋଧଗୁଡ଼ିକ ସହ ପରିଚିତ ହୁଅନ୍ତୁ । ନିଜର ଐତିହ୍ୟ ବିଷୟରେ ଜାଣନ୍ତୁ । ଠିକ୍ କଥା ପାଇଁ ସ୍ୱର ଉତ୍ତୋଳନ କରନ୍ତୁ । ନିଜ ଅସ୍ମିତାକୁ ନେଇ ଗୌରବ ବୋଧ କରନ୍ତୁ ।

ଭାରତର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହ ସମ୍ପର୍କିତ ହେବାର ମୁଁ ସୁଯୋଗ ପାଇଛି । International Association for Feminist Economic (IAFFE) ସହ ଜଡ଼ିତ ହୋଇ କେତେକ ବ୍ୟକ୍ତିଙ୍କୁ ଭେଟିଛି ଯେଉଁମାନେ ଆନ୍ତର୍ଜାତିକ ସ୍ତରରେ ଅଜସ୍ର ପ୍ରସିଦ୍ଧିର ଅଧିକାରୀ । ମୋର ସୌଭାଗ୍ୟ ଯେ, ଝିଅ ପିଲାଙ୍କ ଜୀବନ ଉପରେ ମୋ ବହିକୁ ମହାନ୍ ଚିନ୍ତକ ଅମର୍ତ୍ତ୍ୟ ସେନ (Amartya Sen), ଭାରତର ପୂର୍ବତନ ରାଷ୍ଟ୍ରପତି ଅବଦୁଲ କଲାମ (Abdul Kalam), ସୋନିଆ ଗାନ୍ଧୀ (Sonia Gandhi) ପ୍ରମୁଖଙ୍କୁ ଉପହାର ସ୍ୱରୂପ ଦେଇପାରିଛି ।

ଭାଙ୍କୋଭର ଯିବା ପରେ ଲିଙ୍ଗଗତ ସମସ୍ୟା ଉପରେ କାମ କରିବାକୁ ମୋର ଆଗ୍ରହ ବଢ଼ିଲା । ତା'ପରେ ଦେଶ ବିଦେଶରେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ନାରୀ ସମସ୍ୟା ଉପରେ ବକ୍ତୃତା ଦେବା ପାଇଁ ମୁଁ ନିମନ୍ତ୍ରଣ ପାଇଲି । ଅନେକ ସମୟରେ AFFE, ଆନୁକୂଲ୍ୟରେ ମୁଁ ଗବେଷଣା ଉପସ୍ଥାପନ କରୁଥିଲି । ଏସବୁ ଭ୍ରମଣ ଓ ଗବେଷଣାରୁ ମୁଁ ବହି ଲେଖିବା ପାଇଁ ପ୍ରେରଣା ପାଇଲି । ମୋର ଦୁଇଟି ବହି ବିଷୟରେ ନିମ୍ନରେ କିଛି ବିବରଣୀ ଦେଉଛି ।

ପ୍ରଥମ ବହିଟି ଭାରତରେ ଝିଅ ପିଲାଙ୍କର ବିଭିନ୍ନ ସମସ୍ୟାମୂଳକ ପରିସ୍ଥିତି ଉପରେ ଲେଖାଯାଇଛି । ବହିର ନାମ ହେଲା 'Her Story so far - Tales of The Girl Child in India, ଉପରେ ମୋର ଅଭିଭାଷଣ ପୂର୍ବରୁ, ମୋର ପରିଚୟ ଦେବାକୁ ଯାଇ ସେ କହିଲେ, "ଆମ ଗହଣରେ ଆଜି ଅଛନ୍ତି ମନିକା ଦାସ; ଏମିତି ଜଣେ ଅର୍ଥନୀତିଜ୍ଞ

ଯିଏ ଆଜିକାଲି ଗପ ଶୁଣାଇବାରେ ଗଳ୍ପସାଗର ସଦୃଶ ମଧ୍ଯ ରୁଚି ରଖନ୍ତି ।" ତାଙ୍କ ମନ୍ତବ୍ୟ ଶୁଣି ମୁଁ ବହୁତ ଖୁସି ହେଲି । ଉପହାର ସ୍ୱରୂପ ସେ ମୋତେ ତାଙ୍କ ଲିଖିତ ଏକ ବହି ଦେଇଥିଲେ । ସେଥିରେ ମଧ୍ଯ ସେହି ଏକା କଥା ନିଜ ହସ୍ତାକ୍ଷରରେ ସେ ଲେଖିଥିଲେ । ଗଳ୍ପମସନସ୍କ ବୁଦ୍ଧିଜୀବୀ ଭାବେ ମୋର ପରିଚିତି ଏମିତି ସୃଷ୍ଟି ହୋଇଛି ।

ଏହି ବହିରେ ସାମାଜିକ ଓ ଅର୍ଥନୈତିକ ସମସ୍ୟା ଓ ସାହିତ୍ୟର ମଧ୍ୟବର୍ତ୍ତୀ ଭୂମିରେ ଥାଇ ମୁଁ କାମ କରିଛି । ଏହି ବହିର ଅନେକ ସମୀକ୍ଷା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଛି । ସେଥି ମଧ୍ୟରୁ 'India Today', ଓ କେନ୍ଦ୍ର ସାହିତ୍ୟ ଆକାଡେମୀର ସମୀକ୍ଷା ଅନ୍ୟତମ । ଗୋଟିଏ ସମୀକ୍ଷାରେ ଲେଖାଥିଲା ଯେ, "ଲୋକେ ସାହିତ୍ୟ ଓ ସାମାଜିକ ସମସ୍ୟା ବିଷୟକ ରିପୋର୍ଟ ସବୁ ଅଲଗା ଅଲଗା କରି ପଢ଼ନ୍ତି । କ୍ୱଚିତ କେହି କେହି ଏହି ଦୁଇ ପ୍ରକାର ଲେଖାକୁ ଏକାଠି କରି ସମସ୍ୟା ବିଷୟକ ରିପୋର୍ଟ ସବୁ ଅଲଗା ଅଲଗା କରି ପଢ଼ନ୍ତି । କ୍ୱଚିତ କେହି କେହି ଏହି ଦୁଇ ପ୍ରକାର ଲେଖାକୁ ଏକାଠି କରି ସମସ୍ୟାଗୁଡ଼ିକୁ ବୁଝିବାକୁ ଚେଷ୍ଟା କରନ୍ତି । ଡ. ମନିକା ଦାସଙ୍କ ବହିରେ ଏହି ଦୁଇ ବିଭାଗର ଲେଖାକୁ ଯୋଡ଼ି ଦେଖିବାର ଏକ ଅଭିନବ ଚେଷ୍ଟା କରାଯାଇଛି ।" ମୋର ଅନୁଭବ କହେ ଯେ ସାଧାରଣ ଲୋକଙ୍କୁ ଝିଅ ପିଲାଙ୍କର ସାମାଜିକ ଓ ଅର୍ଥନୈତିକ ଅବସ୍ଥା ବିଷୟରେ ସଚେତନ କରିବା ପାଇଁ ସବୁଠୁ ଭଲ ମାଧ୍ୟମ ହେଲା କ୍ଷୁଦ୍ରଗଳ୍ପ ଓ ସାହିତ୍ୟ । ଗଳ୍ପଦ୍ୱାରା ବିଭିନ୍ନ ସାମାଜିକ ଓ ଅର୍ଥନୈତିକ ତଥ୍ୟ ସୁନ୍ଦର ରୂପେ ପରିବେଷଣ କରାଯାଇପାରେ । ବହି ଅନ୍ତରାଳରେ ଥିବା ବିଚାରଟି ହେଲା 'କଳା ହେଉଛି ଜୀବନର ପ୍ରତିବିମ୍ବ' । ଆମର ଦୈନନ୍ଦିନ ଜୀବନ, ଆମର ସାମାଜିକ ଓ ଅର୍ଥନୈତିକ ଅବସ୍ଥା ପ୍ରତିଫଳିତ ହୁଏ ଗଳ୍ପ ଓ ଉପନ୍ୟାସ ମାଧ୍ୟମରେ । ମୋର ବହିଟିର ଆରମ୍ଭରେ ପ୍ରକାଶକ ଲେଖିଛନ୍ତି, 'ଲିଙ୍ଗଗତ ସମସ୍ୟା ଉପରେ ମନିକା ଦାସଙ୍କ କାମ ବିଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଗୃହୀତ ହୋଇଛି । ବିଭିନ୍ନ ଆନ୍ତର୍ଜାତିକ ସମ୍ମିଳନୀରେ ସେ ଲିଙ୍ଗଗତ ସମସ୍ୟା ଉପରେ ପ୍ରବନ୍ଧ ପାଠ କରିଛନ୍ତି । ଭାରତର ସଂସ୍କୃତି ଓ ଐତିହ୍ୟ ଉପରେ ଅନେକଗୁଡ଼ିଏ ପତ୍ରପତ୍ରିକାରେ ତାଙ୍କର ଲେଖା ପ୍ରକାଶିତ ହୋଇଛି ।"

ସୃଜନଶୀଳ କାର୍ଯ୍ୟ ଜୀବନକୁ ଅନୁକରଣ କରେ । ସମାଜରୁ ଜାତ ହୁଏ ସାହିତ୍ୟ ଓ ସାହିତ୍ୟରେ ପ୍ରତିଫଳିତ ହୁଏ ସମାଜର ବାସ୍ତବ ଚିତ୍ର । ମୋ ବହିରେ ୧୭ଟି ଭାଷାର କ୍ଷୁଦ୍ରଗଳ୍ପର ଇଂରାଜୀ ଅନୁବାଦ ଏକାଠି କରାଯାଇଛି । ଭାରତରେ ଅଧିକାଂଶ ଝିଅ ପିଲା ଯେପରି ଦୁର୍ଦ୍ଦଶା ଭୋଗୁଛନ୍ତି ସେସବୁ ପାଠକଙ୍କ ଆଗରେ ଉପସ୍ଥାପନ କରିବା ହେଲା ଏହି

ବହିର ଉଦ୍ଦେଶ୍ୟ । ବହିଟିର ଗଳ୍ପଗୁଡ଼ିକ ଭାରତର ବିଭିନ୍ନ ନାମୀ ଲେଖକଙ୍କ ଦ୍ୱାରା ଲେଖା ଯଥା ମହାଶ୍ୱେତା ଦେବୀ, ଫକୀରମୋହନ ସେନାପତି, ଇସ୍‌ମତ ଚୁଗତାଇ, ଅମ୍ରିତା ପ୍ରୀତମ, ଆଶାପୂର୍ଣ୍ଣା ଦେବୀ, ପ୍ରତିଭା ରାୟ, କମଳା ଦାସ ପ୍ରମୁଖ । ଭାରତୀୟ ସମାଜ ମହିଳାମାନଙ୍କୁ କିପରି ଦେଖେ ଜାଣିବା ପାଇଁ ଏହି ଗଳ୍ପଗୁଡ଼ିକ ହେଲା ଏକ ବଳିଷ୍ଠ ମାଧ୍ୟମ । ପ୍ରତ୍ୟେକ ଗପ ହେଉଛି ଗୋଟିଏ ଗୋଟିଏ ମାଷ୍ଟରପିସ୍ । ଗଭୀର ଚିନ୍ତନ, ସୂକ୍ଷ୍ମ ଅନୁଭବ ଓ ସିଦ୍ଧହସ୍ତ କଲମରୁ ଜାତ ହୁଏ ଏମିତି ଗପ ସବୁ । ଏଠାରେ ମୁଁ କହିରଖେ ଯେ, ଏହି ସଙ୍କଳନରେ ଫକୀରମୋହନ ସେନାପତିଙ୍କ 'ରେବତୀ' ଗଳ୍ପଟିକୁ ମୁଁ ଅତି ଶ୍ରଦ୍ଧାର ସହିତ ବ୍ୟବହାର କରିଛି ।

ବହିର ପୃଷ୍ଠଭୂମିରେ ମୁଁ ଯାହା ଲେଖିଛି ସେଥିରୁ କେତୋଟି କଥା ଏଠାରେ ଉପସ୍ଥାପନ କରୁଛି ।

ଏକଥା ସମସ୍ତେ ଜାଣନ୍ତି ଯେ, ପୃଥିବୀର ବିଭିନ୍ନ ଦେଶ ଓ ମହାଦେଶରେ ଝିଅ ପିଲାମାନେ ତାଙ୍କ ଜନ୍ମ ସମୟରୁ ହିଁ ଲିଙ୍ଗଗତ ବୈଷମ୍ୟ ଅନୁଭବ କରିବା ଆରମ୍ଭ କରନ୍ତି । ଆହାର, ସ୍ୱାସ୍ଥ୍ୟସେବା, ଶିକ୍ଷାଦାନ ଭଳି ସୁଯୋଗ ତଥା ଜୀବନରକ୍ଷା ପାଇଁ ତାଙ୍କର ଯେଉଁ ମୌଳିକ ଅଧିକାର ରହିଛି ତାହା ଅନେକ ସମୟରେ ତାଙ୍କ ପାଇଁ ସୀମିତ କରିଦିଆଯାଏ ବା ତାଙ୍କୁ ପୂରାପୂରି ସେଥିରୁ ବଞ୍ଚିତ କରାଯାଏ । ସେମାନଙ୍କୁ ଶାରୀରିକ ଓ ମାନସିକ ସ୍ତରରେ ଶୋଷଣ କରିବା ସହଜ ବୋଲି ଅନେକେ ବିଶ୍ୱାସ କରନ୍ତି ।

ଭାରତରେ ଝିଅ ପିଲାମାନଙ୍କର ଲାଳନପାଳନ ସମାଜରେ ପ୍ରଚଳିତ ହୋଇଆସୁଥିବା ଲିଙ୍ଗଗତ ବୈଷମ୍ୟ ଯୋଗୁଁ ବହୁ ପ୍ରକାରରେ ପ୍ରଭାବିତ ହୁଏ । ଅନେକ ପରିବାରରେ ଆଜି ମଧ୍ୟ ପୁତ୍ର ସନ୍ତାନଟିଏ ପାଇଁ ଲୋକେ ଆଶା ରଖନ୍ତି । କାରଣ ପୁଅମାନେ ହିଁ ବଂଶକୁ ଆଗକୁ ନେବେ ଆଉ ବଂଶ ରକ୍ଷା କରିବେ ବୋଲି ତାଙ୍କର ବିଶ୍ୱାସ । ଏପରି ବିଶ୍ୱାସର କାରଣ ହେଲା ଆମ ସମାଜ ଆଜି ମଧ୍ୟ ଏକ ପୁରୁଷପ୍ରଧାନ ସମାଜ ହୋଇ ରହିଛି । ଭାରତରେ ଏବେ ୧୪ ବର୍ଷରୁ କମ୍ ବୟସ୍କ ବାଳିକାଙ୍କ ସଂଖ୍ୟା ପ୍ରାୟ ୧୭.୧୫ କୋଟି । ଯଦିଓ କିଛି ପରିମାଣରେ ନାରୀ ସଶକ୍ତିକରଣ ଘଟୁଛି ତଥାପି ଭାରତର ବିଶାଳ ଜନସଂଖ୍ୟାକୁ ବିଚାରକୁ ନେଲେ ବହୁ ସଂଖ୍ୟାରେ ବାଳିକାମାନେ ଅତ୍ୟନ୍ତ ଶୋଚନୀୟ ଅବସ୍ଥାରେ ଅଛନ୍ତି ।

ତା'ପରେ ଆମ ସମାଜରେ ବିଭିନ୍ନ ଧରଣର ପାରମ୍ପରିକ ଭୂମିକା ଓ ଦାୟିତ୍ୱ ଉପରେ ବହୁତ ଗୁରୁତ୍ୱ ଦିଆଯାଏ । ନାରୀ ଜୀବନରେ ଅନେକ ନିଷ୍ପତ୍ତି ଅନ୍ୟମାନେ

ନେଇଥାଆନ୍ତି କାରଣ ଲୋକଙ୍କୁ ଲାଗେ ଯେ ନିଷ୍ପତ୍ତି ନେବା ପାଇଁ ନାରୀମାନେ ଅକ୍ଷମ । ନାରୀମାନଙ୍କୁ ମଧ୍ୟ ଏହି କଥା ବିଶ୍ୱାସ କରେଇ ଦିଆଯାଇଛି । ନାରୀମାନେ ନୀରବରେ ପୁରୁଷଶାସିତ ସମାଜର ନିୟମମାନ ମାନିନେଉଥିବାରୁ ପୁରୁଷତନ୍ତ୍ର ଆହୁରି କଠୋର ଓ ଉତ୍କଟ ହେଉଛି । ଯେଉଁ ସବୁ ନୀତିନିୟମ ଦ୍ୱାରା ଝିଅ ପିଲାଙ୍କ ପ୍ରତି ଭେଦଭାବ କରାଯାଏ ସେସବୁ ସ୍ୱୀକାର କରିନେବା ପାଇଁ ଝିଅମାନଙ୍କୁ ପିଲାବେଳୁ ହିଁ ପ୍ରସ୍ତୁତ କରିଦିଆଯାଏ ।

ବହିରେ ପ୍ରତ୍ୟେକ ଗପରେ ଝିଅ ପିଲାଙ୍କ ସହ ଭେଦଭାବ କଥା କୁହାଯାଇଛି । ସେମାନଙ୍କ ଜୀବନରେ କିଭଳି ଦୁର୍ଦ୍ଦଶା ଆସିଛି ତାହା ବର୍ଣ୍ଣନା କରାଯାଇଛି । ନାରୀ ଜୀବନର ପ୍ରତିଟି ସ୍ତର ଲିଙ୍ଗଗତ ଭେଦଭାବ ଦ୍ୱାରା ପ୍ରଭାବିତ ହୋଇଥାଏ । ମୃଣାଳ ପାଣ୍ଡେଙ୍କ ଗପରେ ଜଣେ ଝିଅ ବୁଝିପାରୁ ନାହିଁ ଯେ, କାହିଁକି ତାକୁ ସ୍ୱାଭାବିକ ଭାବେ କେହି ଗ୍ରହଣ କରିପାରୁ ନାହାନ୍ତି । ସେ ଭାବୁଛି, "କ'ଣ ମାଆ ଚଢ଼େଇ ବି ଏଇଆ ଭାବେ ଯେ ତା'ର ଝିଅମାନେ ପୁଅଙ୍କ ଠାରୁ ନ୍ୟୁନ ? " ପ୍ରତିଭା ରାୟଙ୍କ 'ମୂଣି' ଗପରେ ଗୋଟିଏ ଝିଅର ଦୁର୍ଦ୍ଦଶା କଥା ବର୍ଣ୍ଣନା କରାଯାଇଛି ଯିଏ ଲୋକଙ୍କ ଶୋଷଣରେ ଶିକାର ହୋଇଛି । ଲୋକଙ୍କ ପାଇଁ ତା' ଜୀବନର ଏକ ମାତ୍ର ଉଦ୍ଦେଶ୍ୟ ହେଲା ବଂଶର ଉତ୍ତରାଧିକାରୀ ଜନ୍ମ କରିବା । ଝିଅ ଯେ ତା' ନିଜ ପରିବାରର ଜଣେ ଅସ୍ଥାୟୀ ସଦସ୍ୟ ତାହା ମଧ୍ୟ ଏହି ଗପର ନାଟକୀୟତା ଭିତରେ ଫୁଟିଉଠିଛି । ଅତି ଦୁଃଖରେ ସହ ଝିଅଟି ହୃଦୟଙ୍ଗମ କରୁଛି ଯେ ତା' ସ୍ୱାମୀ ଓ ଭାଇ ପାଖରେ ତା' ଜୀବନର ଅର୍ଥ ସୀମିତ । ଶେଷରେ, ତା' ପୁଅ ମଧ୍ୟ ତା'ଠାରୁ ଅଲଗା ହୋଇଯାଉଛି । ତା' ଅର୍ଥହୀନ ଜୀବନରେ ତା' ପୁଅ ହିଁ ଥିଲା ତା'ର ଏକ ମାତ୍ର ସାର୍ଥକତା । ପୁଅ ଯିବା ପରେ ତା'ର ମୃତ୍ୟୁ ହେଉଛି ।

ଗୋଟିଏ ପ୍ରଶ୍ନ ବାରମ୍ବାର ଉଠେ ଯେ, ନାରୀମାନେ କାହିଁକି ସେମାନଙ୍କ ପ୍ରତି ହେଉଥିବା ନିର୍ଯ୍ୟାତନାକୁ ସହି ଯାଆନ୍ତି ଓ ପ୍ରଶୟ ଦିଅନ୍ତି ? ବୈଦେହୀଙ୍କର 'ଏ ମେମୋରୀ କଲ୍ଡ଼ ଆମାଚ୍ଚି' (A Memory called Ammacchi) ଗପରେ ସୀତାଭେର ଝିଅ ଆମାଚ୍ଚି ଉପରେ ନିର୍ଯ୍ୟାତନା ହେଉଛି । ନିର୍ଯ୍ୟାତନା ଦେବା ଲୋକ କିନ୍ତୁ ସୀତାଭେର ସହଯୋଗରେ ହିଁ ତା' ନିଜ ଝିଅ ଅତ୍ୟାଚାରିତ ହେଉଛି । ଭାଗ୍ୟକ୍ରୁ, ଆମାଚ୍ଚି ହୃଦୟରେ ଜଳିଛି ବିପ୍ଳବର ବହ୍ନି ଓ ସେ ତା' ଉତ୍ପୀଡ଼କ ଉପରେ ପ୍ରତିଶୋଧ ନେଇଛି । ଉଲ୍ଲେଖନୀୟ କଥା ହେଲା ଯେ, ଯଦିଓ ଏହି ଗପଗୁଡ଼ିକ ଭିନ୍ନ ଭିନ୍ନ ଭାଷା, ସଂସ୍କୃତି ଓ ସାମିଜିକ ପୃଷ୍ଠଭୂମିରେ ଲିଖିତ ସବୁ ଗପର ଉଦ୍ଦେଶ୍ୟ ଏକ - ଭାରତର ଝିଅ ପିଲାଙ୍କ ଜୀବନର ବାସ୍ତବତାକୁ ଚିତ୍ରଣ କରିବା ଏବଂ ପାଠକଙ୍କ ଭିତରେ ସଚେତନା ଓ ଦାୟିତ୍ୱବୋଧ ସୃଷ୍ଟି କରିବା ।

ଆମେ ବୁଝିଯିବା ଉଚିତ ଯେ, ଆମର ସାମାଜିକ ଓ ଅର୍ଥନୈତିକ ବିକାଶର ସୂଚକାଙ୍କ କେବେ କେମିତି ସମାଜରେ ଘଟୁଥିବା ସକାରାତ୍ମକ ପରିବର୍ତ୍ତନ ଆଡ଼କୁ ଇଶାରା କଲେ ମଧ୍ୟ ଲିଙ୍ଗଗତ ବୈଷମ୍ୟ ସଚେତନତା ଆଣିବା ପାଇଁ ଅନେକ କାମ କରିବାକୁ ସମାଜକୁ ସଦୃଢ଼ ଓ ସଙ୍ଗଠିତ କରିବାକୁ ପଡ଼ିବ । ଖୁସିର କଥା ଯେ କେନ୍ଦ୍ର ସରକାର CEFL ଦ୍ୱାରା ବହିଟିର ୨୦୦ଟି କପି କିଣି ୨୦୦ଟି ଶିକ୍ଷାନୁଷ୍ଠାନକୁ ଯୋଗାଇଛନ୍ତି ।

ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯେ, ଏହି ଗପଗୁଡ଼ିକ ଝିଅ ପିଲାମାନଙ୍କ ଦୁର୍ଦ୍ଦଶା ଓ ଅନ୍ଧକାରମୟ ଭବିଷ୍ୟତର କଥା କହୁଥିଲେ ମଧ୍ୟ ପ୍ରତିଟି ଗପରେ ଝିଅ ପିଲାଙ୍କର ଅପୂରନ୍ତ ଉତ୍ସାହ, ଉଦ୍ଦୀପନା ଓ ଭାବନା ଫୁଟିଉଠିଛି । ଜୀବନର ଛୋଟ ବଡ଼ ଆଶାକୁ ବଞ୍ଚାଇ ରଖିବା ପାଇଁ ସେମାନଙ୍କ ସଂକଳ୍ପର ପ୍ରତିଧ୍ୱନି ପ୍ରତିଟି ଗପରେ ଗୁଞ୍ଜରିତ ହୋଇଛି ।

ଏହି ପରିପ୍ରେକ୍ଷୀରେ ଏଠାରେ ଚିନୁଆ ଆକବେଙ୍କ 'ଆଣ୍ଟାହିଲସ୍ ଅଫ୍ ଦି ସାଭାନା' (Anthills of the Savannah) ରୁ ଉକ୍ତିଟିଏ ଉଦ୍ଧାର କରିବା ଖୁବ୍ ପ୍ରାସଙ୍ଗିକ ହେବ । "କେବଳ କାହାଣୀ ହିଁ...ଆଗକୁ ବଢ଼ିବ...କାହାଣୀ ଆମର ସନ୍ତାନମାନଙ୍କୁ ଅନ୍ଧ ଭିକାରୀ ହୋଇ ଏଠି ସେଠି ବୁଲିବାକୁ ରକ୍ଷା କରିବ । କାହାଣୀ ଆମକୁ ବାଟ ଦେଖାଇବ । କାହାଣୀ ବିନା ଆମେ ଅନ୍ଧ । ଅନ୍ଧ କେବେ ତାକୁ ସାହାରା ଦେଉଥିବା ମଣିଷର ମାଲିକ ହୋଇପାରେ କି ? ନା । ଆମେ ମଧ୍ୟ ମାଲିକ ନୁହଁ । ବରଂ କାହାଣୀ ହେଉଛି ଆମ ମାଲିକ, ଆମର ପଥ ପ୍ରଦର୍ଶକ ।"

ବହିର ପଛ ପୃଷ୍ଠାଟି ନିମ୍ନରେ ଦିଆଗଲା ।



'A girl should walk so softly that even the sound of her footfall shouldn't be heard. She should be so humble as to fit into a ring without disharmony.'

*Her Story So Far* showcases the most sensitive short fiction on the subject of the girl child by some of India's finest writers— [illegible] and others. Compiled and edited by Monica Das, these stories cut across social, economic and regional divides to reveal what life is like for a girl growing up in India. And they raise a crucial question: will our society ever rise above its inane hypocrisies and change the way it regards its women?

Deceptively simple in their telling, the stories in this collection are about complex issues—exploitation, physical and emotional; gender and class prejudices, so deeply entrenched even in educated minds that they make monsters of men; and the scars of negative conditioning that have compelled women to continually question their self-worth. Yet, the characters who bear out these adversities in each of the tales told here pulsate with life, exhibiting remarkable grit: a little girl asks why she is worshipped on Ashtami when her very presence [illegible] her mother's spiritual [illegible] which against strict rules that govern her every action and thought; a [illegible] year-old [illegible] her grandmother [illegible] in the forbidden art of [illegible]; and a young woman wishes for her unborn child all of life's little blessings that she herself missed out on.

To read these stories is to feel pain, bewilderment, outrage, compassion and a sudden surge of hope at finding love and tenderness where one least expects it.



A PENGUIN ORIGINAL
Fiction/Anthology
India Rs 200
www.penguin[illegible]india.com



ସାହିତ୍ୟ ସହ ସାମାଜିକ ସମସ୍ୟାକୁ ଯୋଡ଼ି ମୁଁ ଏହି ବହିରେ ଯେଉଁ ନୂଆ ପ୍ରୟାସ କଲି ତାହା ସଫଳ ହେଲା । ଏଥରୁ ମୁଁ ମୋର ଦ୍ୱିତୀୟ ବହି ପାଇଁ ପ୍ରେରଣା ପାଇଲି । ବହିଟିର ନାମ ହେଲା: 'The Other Woman' । ଏହା ହାର୍ପର ମୁଁ ଦ୍ୱାରା ପ୍ରକାଶିତ ହୋଇଛି । ଏହି ବହିର ସୂତ୍ରପାତ ହେଲା ମୋ ଗବେଷଣାରୁ, ଯାହାର ବିଷୟ ଥିଲା 'The impact of underage marriage of women in India' on the Human Development Index (HDI) and Gender Development Index (GDI)' । ବୋଷ୍ଟନ ବିଶ୍ୱବିଦ୍ୟାଳୟ (University of Biston) ରେ ମୋ ଗବେଷଣା ଉପସ୍ଥାପନ କରିବା ପାଇଁ International Association for Feminist Economics ଠାରୁ ମୋତେ ନିମନ୍ତ୍ରଣ ମିଳିଲା । ପରେ ମୁଁ ଚିନ୍ତା କଲି ଯେ, ନାବାଳିକା ବିବାହ କିପରି ଭାବେ, ସାକ୍ଷରତା, ଆୟୁ ସମ୍ଭାବନା ଓ ରୋଜଗାର ଉପରେ ପ୍ରଭାବ ପକାଇ ଥାଏ ତାହା ଉପରେ କାମ କରିବି । ମୁଁ ଜାଣିବାକୁ ପାଇଲି ଯେ, ଅନେକ କ୍ଷେତ୍ରରେ ଯେଉଁଠାରେ ନାବାଳିକା ବିବାହ ହେଉଛି, ସେଠାରେ ଦ୍ୱିବିବାହ ଓ ବହୁବିବାହ ମଧ୍ୟ ହୋଇଛି । ଏହିଠାରୁ ବହିର ମଞ୍ଜି ପୋତା ହୋଇଗଲା ଓ ଶେଷରେ ବହିଟି ପ୍ରକାଶ ପାଇ ପାରିଲା । ବହିଟିକୁ ପ୍ରକାଶକ ପଛ ମଲାଟରେ କିପରି ବର୍ଣ୍ଣନା କରିଛନ୍ତି ପଢନ୍ତୁ :





ହାର୍ପର କଲିନସ୍ ମୋର ଏକ ସାକ୍ଷାତକାର ନେଇଥିଲା । ଏହି ସାକ୍ଷାତକାରଟି ବହିର ଶେଷ ଭାଗରେ ସ୍ଥାନିତ । ଏହି ବହିଟି ମଧ୍ୟ କେତେଗୁଡ଼ିଏ ଗଳ୍ପର ସମାହାର । ସାକ୍ଷାତକାରଟି ଏଠାରେ ମଧ୍ୟ ସ୍ଥାନିତ କରୁଛି । ଏଥିରେ କେତୋଟି ମୁଖ୍ୟ ବିନ୍ଦୁ ଆଲୋଚିତ ହୋଇଛି ।

**ଗଳ୍ପ ସଙ୍କଳନର ସମ୍ପାଦିକା ମନିକା ଦାସଙ୍କ ସହ ଏକ ସାକ୍ଷାତକାର**

**ହାର୍ପର କଲିନସ୍ :**

**୧ ) ଏହି ସଙ୍କଳନ ପ୍ରସ୍ତୁତ କରିବାର କଥା କେମିତି ଉଠିଲା ?**

ମନିକା ଦାସ: ଅର୍ଥ ନୀତି ପଢାଇବା ବ୍ୟତୀତ, ୱାସିଙ୍ଗଟନର International Association for Feminist Economics (IAFFE) ଭଳି କେତୋଟି ମହିଳାଙ୍କ ଉଦ୍ଦେଶ୍ୟରେ କାମ କରୁଥିବା ସଂସ୍ଥା ସହ ମୁଁ ଜଡିତ ରହିଆସିଛି । ମହିଳାଙ୍କ ସମସ୍ୟା ଉପରେ କାମ କରୁ କରୁ ମୁଁ ଅନୁଭବ କଲି ଯେ, ପୁରୁଷପ୍ରଧାନ ସମାଜର ଅସୁସ୍ଥତା ପଛରେ ଏକ ସାଂସ୍କୃତିକ ପୃଷ୍ଠଭୂମି ରହିଛି । ମହିଳାଙ୍କୁ କିପରି ଗାଳିଗୁଲଜ କରାଯାଏ, ଅତ୍ୟାଚାର ତାହା ଆମେ ସମସ୍ତେ ଜାଣୁ । ମୋର ଧ୍ୟାନ ଆକର୍ଷିତ କଲା ଏହିପରି ପ୍ରକାର ନିର୍ଯ୍ୟାତନା । ତାହା ହେଲା, ସମାଜରେ ଦ୍ୱିବିବାହ ଓ ବହୁବିବାହ ବଢିଚାଲିଛି । ସମାଜ ଓ ଅର୍ଥନୀତି ଉପରେ ଏହା ଖରାପ ପ୍ରଭାବ ପକାଉଛି । ଏପଟେ, ସାହିତ୍ୟ ହେଉଛି ସଂସ୍କୃତିର ପ୍ରତିଫଳନ । ତେଣୁ ମୁଁ ଭାବିଲି ଯେ, ସାହିତ୍ୟରେ ଦ୍ୱିବିବାହ ଓ ବହୁବିବାହ ପରମ୍ପରା କେମିତି ଉପସ୍ଥାପନ କରାଯାଇଛି ସେ ବିଷୟରେ କାମ କରିବି । ଗଳ୍ପ ମାଧ୍ୟମରେ ଏହି ପ୍ରକାର ଘଟଣାକୁ ଅଧ୍ୟୟନ କରିବା ଭଲ ହେବ ବୋଲି ମୁଁ ବିଚାର କଲି ।

**୨ ) ଗଳ୍ପଗୁଡ଼ିକ କେମିତି ଖୋଜା ହେଲା ?**

ସ୍ତ୍ରୀ ବ୍ୟତୀତ ଅନ୍ୟ ମହିଳା ସହ ସମ୍ପର୍କ ଉପରେ ମୁଁ ଗଳ୍ପ ଖୋଜିବା ଆରମ୍ଭ କଲି । ଏଥିପାଇଁ ଭାରତର ଅନେକ ଲାଇବ୍ରେରୀ ଯିବାକୁ ପଡ଼ିଲା । ଭାରତର ବିଭିନ୍ନ ଅଞ୍ଚଳରେ କାର୍ଯ୍ୟରତ ସମାଜ ବିଜ୍ଞାନୀ ଓ ଗବେଷକଙ୍କ ସହ ଆଲୋଚନା କଲି ।ଏଥିରୁ ମୋତେ ପ୍ରସଙ୍ଗକୁ ଦେଖିବା ପାଇଁ ଏକ ଦୃଷ୍ଟିକୋଣ ମିଳିଲା । ଏହି ସଙ୍କଳନର ଅନେକଗୁଡିଏ ଗପ ମୋତେ ସାହିତ୍ୟ ଆକାଡେମୀ ଲାଇବ୍ରେରୀ ଓ ନ୍ୟାସନାଲ ବୁକ୍ ଟ୍ରଷ୍ଟ ଲାଇବ୍ରେରୀରୁ ମିଳିଲା ।

**୩) ଏହି ବିଷୟରେ, କେତେକେ ନିର୍ଦ୍ଦିଷ୍ଟ ଭାଷାର ସାହିତ୍ୟରେ ଅପେକ୍ଷା ଅଧିକ ଲେଖା ରହିଛି ବୋଲି ଆପଣ ଭାବୁଛନ୍ତି କି ?**

ମୋର ଆରମ୍ଭରୁ ଏହି ଧାରଣା ଥିଲା ଯେ, ଏହି ବିଷୟରେ ବଙ୍ଗଳା ସାହିତ୍ୟରେ ସବୁଠାରୁ ଭଲ ଗପ ମିଳିବ । କିନ୍ତୁ ଗପ ଖୋଜା ପ୍ରକ୍ରିୟାରେ ଭାରତର ବିଭିନ୍ନ ଭାଷାରେ

ଲେଖା କ୍ଷୁଦ୍ରଗଳ୍ପ ପଢ଼ିବାଟି ମୋ ପାଇଁ ଏକ ସୁନ୍ଦର ଅଭିଜ୍ଞତା ହୋଇଗଲା । କେତେ ଗପ ମୂଳ ଭାଷାରେ ପଢ଼ିଲି ଓ ଆଉ କିଛି ଗପର ଅନୁବାଦ ପଢ଼ିପାରିଲି । ଶେଷରେ ମୋ ଗଳ୍ପମାଳାରେ ତାମିଲ, ମାଲାୟାଲମ, କୋଙ୍କଣୀ, ଉର୍ଦ୍ଦୁ, ମରାଠୀ, ଗୁଜୁରାତୀ, ଓଡ଼ିଆ, ପଞ୍ଜାବୀ, ହିନ୍ଦୀ ଓ ଅସମୀୟା ଗପ ରହିଲା । ଏସବୁ ଗପ ସବୁଠୁ ଉତ୍କୃଷ୍ଟ ଭାଷା ସାହିତ୍ୟିକଙ୍କ ଦ୍ୱାରା ରଚିତ । ମୁଁ ଇଂରାଜୀ ଭାଷାରୁ ମଧ୍ୟ ଗୋଟିଏ ଗପ ନିର୍ବାଚିତ କରିଛି । ସେଇଟି ହେଲା ମକରନ୍ଦ ପରଞ୍ଜପେଙ୍କ 'ବଡି ଅଫରିଙ୍ଗ୍' । ଏହି ଉପରେ ଲୈଙ୍ଗିକତାକୁ ଅତି ସୁନ୍ଦର ଓ ସାଧାରଣ ଭାବେ ଉପସ୍ଥାପନ କରାଯାଇଛି ।

**୪) ଅନୁବାଦ ଓ ଅନୁମତି ପାଇବାରେ ଆପଣଙ୍କୁ କିଛି ଅସୁବିଧାର ସମ୍ମୁଖୀନ ହେବାକୁ ପଡିଲା କି ?**

କେତୋଟି ଗପର ଅନୁବାଦ ପାଇଁ ମୋତେ ହଇରାଣ ହେବାକୁ ପଡ଼ିଲା । ଗୋଟିଏ ଲମ୍ବା ମରାଠୀ ଗପ ଥିଲା ଯାହା ମୋତେ ଭାରି ପସନ୍ଦ ଆସିଥିଲା । କିନ୍ତୁ ଗପଟି ଏତେ ଲମ୍ବା ଥିଲା ଯେ ଉପନ୍ୟାସିକା ପରି ଲାଗୁଥିଲା । ସେହି ଗପଟିକୁ ଆମେ ସଙ୍କଳନର ଅନ୍ତର୍ଭୁକ୍ତ କରିପାରିଲୁନି କାରଣ କେହି ହେଲେ ମଧ୍ୟ ଗପଟିର ଅନୁବାଦ କରିବାକୁ ରାଜି ହେଲେ ନାହିଁ । ଗଳ୍ପଗୁଡ଼ିକର ପୁନଃପ୍ରକାଶନ ପାଇଁ ଅନୁମତି ମିଳିବାରେ ସେମିତି କିଛି ଅସୁବିଧା ହୋଇନି । ସତ କଥା କହିବାକୁ ଗଲେ, ସବୁ ଅନୁବାଦକ ଓ ସ୍ୱତ୍ତ୍ୱାଧିକାରୀ ଭାରି ସହଯୋଗ କଲେ । ଅସୁବିଧା ହୋଇଥିଲା ସେମାନଙ୍କୁ ଯୋଗାଯୋଗ କରିବାରେ ।

**୫) ଏହି ଗପଗୁଡ଼ିକ ଏକ ସାମାଜିକ ସମସ୍ୟାକୁ ସୂଚାଉଛନ୍ତି ବୋଲି ଆପଣଙ୍କୁ ଲାଗୁଛି କି ? ଏକବିଂଶ ଶତାବ୍ଦୀରେ ମଧ୍ୟ ଏହି ଗପଗୁଡ଼ିକର ପ୍ରାସଙ୍ଗିକତା ରହିଛି କି ?**

ହିଁ, ଏହି ଗପଗୁଡ଼ିକରେ ଏକ ଗମ୍ଭୀର ସାମାଜିକ ସମସ୍ୟା ପ୍ରତିଫଳିତ ହୋଇଛି । ସଂକ୍ଷେପରେ କହିଲେ, ସମସ୍ୟାଟି ହେଲା, ମହିଳାମାନଙ୍କ ଠକିବା ଦ୍ୱାରା ସେମାନଙ୍କ ସାମାଜିକ ଓ ଆର୍ଥିକ ସ୍ଥିତି ଖରାପ ହେଉଛି । ଏକ ନିର୍ଦ୍ଦିଷ୍ଟ ଋତୁରେ ବାହାଘର କରାଯାଉଛି ଓ ବର୍ଷେ ନପୂରୁଣୁ ବର କନ୍ୟାର ହାତ ଛାଡ଼ି ଦେଉଛି । ଝିଅ ଘରକୁ ଫେରୁଛି ଗର୍ଭବତୀ ହୋଇ । ଶ୍ୱଶୁର ଘର ଲୋକଙ୍କ ଖୋଜ ଖବର ମିଳୁନି । ଦ୍ୱିବିବାହ ହେଉଛି ଏକ non-cognisable offence । ଏଣୁ ଅନେକ ଲୋକଙ୍କର ଦ୍ୱିବିବାହରେ କିଛି ଅସୁବିଧା ହେଉନାହିଁ । ଏହି ସମସ୍ୟା ଆଜି, ଏକବିଂଶ ଶତାବ୍ଦୀରେ, କେବଳ ପ୍ରାସଙ୍ଗିକ ନୁହେଁ, ପୂର୍ବାପେକ୍ଷା ଖୁବ ବେଶୀ ପ୍ରାସଙ୍ଗିକ ହୋଇ ଯାଇଛି ବୋଲି ମୋର ଧାରଣା ।

**୬) ଅନ୍ୟ ମହିଳା ସହ ଜଣଙ୍କର ସମ୍ପର୍କ ବ୍ୟତୀତ ଆଉ କ'ଣ କ'ଣ ସମସ୍ୟା ଜଡିତ ଯାହା ଏହି ଗପଗୁଡ଼ିକରୁ ଜଣା ପଡୁଛି ?**

ଏହି ଗପଗୁଡ଼ିକରୁ ଜଣାଯାଏ, ବ୍ୟକ୍ତି ଜୀବନରେ ନୈତିକତାର ପ୍ରଶ୍ନ ଜଟିଳ, କଳାଧଳା ପରି ସ୍ପଷ୍ଟ ନୁହେଁ । ଆହୁରି ମଧ୍ୟ ଆମର ହୃଦବୋଧ ହୁଏ ଯେ, ଆଜିର ଦୁନିଆରେ ବିଶୁଦ୍ଧ ସୁଖସ୍ୱାଚ୍ଛନ୍ଦ୍ୟ କ୍ୱଚିତ ଲୋକଙ୍କ ଭାଗ୍ୟରେ ଜୁଟେ । ବିବାହ ହେଉ ବା ବିବାହ ବାହାରେ, ସମ୍ପର୍କଗୁଡ଼ିକର ମଧୁରତା ମଧ୍ୟ ଆମେ ଦେଖିବାକୁ ପାଉ । ପ୍ରେମ ଏକ ବୈଭବପୂର୍ଣ୍ଣ ସମ୍ପର୍କ । ପ୍ରବଞ୍ଚକ ପାଇଁ ଭୟ ତ ରହିଛି । ତଥାପି ପ୍ରେମ ଓ ଅନୁରାଗ ଏସବୁ ଆବେଗ ବିନା ଜୀବନ କ'ଣ ଆଉ ଜୀବନ ହୋଇ ରହିବ ?

**୭) ବାସ୍ତବ ଦୁନିଆକୁ ଚିତ୍ରଣ କରିବାରେ ସାହିତ୍ୟ କେତେ ଦୂର ସଫଳ ହୋଇଛି ?**

ବାସ୍ତବତାକୁ ଉପସ୍ଥାପନା କରିବା ପାଇଁ ସାହିତ୍ୟ ଏକ ଚମତ୍କାର ମାଧ୍ୟମ । ଏହା ପାଠକଙ୍କ ଧ୍ୟାନ ସାମାଜିକ ଓ ଅର୍ଥନୈତିକ ପରିସ୍ଥିତି ଆଡ଼କୁ ଆକର୍ଷିତ କରିପାରିବ । ଭିନ୍ନ ଭିନ୍ନ ଦିଶୁଥିବା ଘଟଣା ପରସ୍ପର ସହ କିପରି ଭାବେ ସମ୍ପର୍କିତ ହୋଇରହିଥାଏ ତାହା ଅନେକ ଲୋକ ବୁଝିବାକୁ ଚେଷ୍ଟା କରନ୍ତି ନାହିଁ । ସାହିତ୍ୟ ଏହି ଦିଗରେ ମଧ୍ୟ ସାହାଯ୍ୟ କରେ । ଲୋକେ ଗଳ୍ପ ଉପନ୍ୟାସ ଓ ଖବର ପତ୍ରପତ୍ରିକା ଅଲଗା ଅଲଗା କରି ପଢ଼ନ୍ତି । ମୋର କହିବାର କଥା ହେଲା ଗଳ୍ପ ଉପନ୍ୟାସ ବାସ୍ତବତା ଠାରୁ ବିଚ୍ଛିନ୍ନ ହୋଇ ରହେନାହିଁ । ସାହିତ୍ୟ ହେଉଛି ସମାଜର ଦର୍ପଣ । ଆମ ଚାରିପାଖରେ ଭଲ ମନ୍ଦ ଯାହା କିଛି ବି ଘଟୁଛି ସେସବୁର ଚିତ୍ର ଧରିରଖିବା ହେଲା ସାହିତ୍ୟର ଏକ ସହଜାତ ସାମର୍ଥ୍ୟ ।

**୮) ଦ୍ୱିବିବାହ କ'ଣ କେବଳ ସମାଜଶାସ୍ତ୍ରୀଙ୍କ ଅଧ୍ୟୟନର ବିଷୟ ?**

ଦ୍ୱିବିବାହ ଏକ ସାମାଜିକ ଓ ଅର୍ଥନୈତିକ ସମସ୍ୟା । ଏହାର ସାଂସ୍କୃତିକ ଓ ମନସ୍ତାତ୍ତ୍ୱିକ ଦିଗ ମଧ୍ୟ ରହିଛି । ଦ୍ୱିବିବାହ ଘଟଣା ଆହୁରି ଜଟିଳ ଯେଉଁଠାରେ ଝିଅ ନାବାଳିକା । ଭାରତରେ ବର୍ତ୍ତମାନ ସମୟରେ ପ୍ରାୟ ୪୮ ପ୍ରତିଶତ ବିବାହରେ ଝିଅ ନାବାଳିକା ଥାଏ । ଏହାର ଅର୍ଥ, ୨୦୦୧ ଜନଗଣନା ଅନୁସାରେ ପ୍ରାୟ ୧.୬ କୋଟି ପିଲାଙ୍କ ବାହାଘର ହେଉଛି । ଆହୁରି ମଧ୍ୟ, ଆପଣ ଜାଣି ଚକିତ ହେବ ଯେ, ପ୍ରାୟ ୧୫ ଲକ୍ଷ ଝିଅଙ୍କର ୧୫ ବର୍ଷରୁ କମ୍ ବୟସରେ ବିବାହ ହୋଇଯାଏ ଓ ସେମାନଙ୍କ ମଧ୍ୟରୁ ୨୦ ପ୍ରତିଶତ, ଅର୍ଥାତ୍ ୩ ଲକ୍ଷ ଝିଅ ଅତି କମରେ ଥରେ ପିଲା ଜନ୍ମ କରି ସାରିଥାଆନ୍ତି (୨୦୦୧ ଜନଗଣନା ଅନୁସାରେ) । ଏହା ଏକ ବଡ଼ ସଂଖ୍ୟା । ଏଥିରୁ ଅନୁମାନ କରିହେଉଛି ଯେ, ଦ୍ୱିବିବାହ ଓ ବହୁବିବାହ କରୁଥିବା ଅନେକ ଲୋକ ନାବାଳିକାଙ୍କୁ ବିବାହ କରୁଛନ୍ତି ।

**୯) ଏହି ସମସ୍ୟାରୁ ଆଉ କେଉଁ ସମସ୍ୟା ଉପୁଜୁଛି ?**

ଦ୍ୱିବିବାହ, ବିଶେଷ କରି ନାବାଳିକା ଦ୍ୱିବିବାହ ଦ୍ୱାରା ଝିଅ ପିଲାମାନେ ଅଧିକ ଅତ୍ୟାଚାରିତ ହୁଅନ୍ତି । ସ୍ୱାମୀମାନଙ୍କ ଅସୁରକ୍ଷିତ ଅବସ୍ଥାରେ ତ୍ୟାଗ କରିଦିଆଯାଏ । ଭାରତ ସରକାରଙ୍କର ୨୦୦୧ ଜନଗଣନାରେ ବିବାହ କରିଛନ୍ତି । ଏହି ସଂଖ୍ୟା ଅଷ୍ଟ୍ରେଲିଆର ଅଧା ଜନସଂଖ୍ୟାରୁ ଅଧିକ, ସିଙ୍ଗାପୁରର ଜନସଂଖ୍ୟାର ଦୁଇଗୁଣ । ଆଉ ସମାନ ସଂଖ୍ୟକ ମହିଳା, ପ୍ରାୟ ୧କୋଟି ମହିଳା, ଦ୍ୱିବିବାହର ଶିକାର ହୋଇଛନ୍ତି । ଯେମିତି ଆଗରୁ କହିଛି, ନାବାଳିକା ବିବାହ ଓ ଦ୍ୱିବିବାହ ଯୋଡ଼ି ହୋଇ ରହିଛି । ତେଣୁ ଯଦି କେହି ଭାବୁଛନ୍ତି ଯେ ନାବାଳିକା ବିବାହ ଭାରତର ବିଗତ ଅତୀତ ବା କାଁ ଭାଁ ଦେଖିବାକୁ ମିଳୁଥିବା ଏକ ପରମ୍ପରା ତେବେ ୨୦୦୧ ଜନଗଣନା ରିପୋର୍ଟ ଅନୁସାରେ ଏହି ଧାରଣା ସମ୍ପୂର୍ଣ୍ଣ ଭୁଲ ।

ଆଉ ଗୋଟିଏ କଥା ଲକ୍ଷ୍ୟ କରିବାର କଥା । ଜନଗଣନାରେ ଯେଉଁମାନେ ବିବାହିତ ବୋଲି ସୂଚିତ କରିଛନ୍ତି ସେମାନଙ୍କ ମଧ୍ୟରେ ମହିଳା ଅଧିକ । ବିବାହିତ ମହିଳାଙ୍କ ସଂଖ୍ୟା ବିବାହିତ ପୁରୁଷଙ୍କ ଠାରୁ ପ୍ରାୟ ୫୦ ଲକ୍ଷ ଅଧିକ । କାହିଁକି ? ଯଦି ଗୋଟିଏ ହିଁ ପୁରୁଷ ଓ ଗୋଟିଏ ହିଁ ନାରୀକୁ ନେଇ ବିବାହ ହେଉଛି ତେବେ ବିବାହିତ ପୁରୁଷ ସଂଖ୍ୟା ସମାନ ହେବା କଥା । ତେଣୁ ଦ୍ୱିବିବାହ ଓ ବହୁବିବାହ ଏକ କାରଣ ହୋଇପାରେ । ଏଥିରୁ ଏହା ମଧ୍ୟ ସ୍ପଷ୍ଟ ଯେ, ମହିଳାମାନେ ଅଳ୍ପ ଦିନ ପାଇଁ ଗୋଟିଏ ବିବାହ ସମ୍ପର୍କରେ ରହୁଛନ୍ତି ।

**୧୦) ଯୌତୁକ ଦ୍ୱିବିବାହର ଏକ କାରଣ ବୋଲି ଆପଣ ଭାବୁଛନ୍ତି କି ?**

ଦ୍ୱିବିବାହ ସମସ୍ୟାର ଅନ୍ୟ ଏକ ଦିଗ ହେଲା ଯୌତୁକ । ଯଥେଷ୍ଟ ଯୌତୁକ ମିଳିଲାନି କହି ଲୋକେ ପୁଣି ଆଉ ଗୋଟିଏ ଝିଅ ବାହା ହୋଇଯାଉଛନ୍ତି ।

**୧୧) ସମାଜରେ ସବୁଆଡ଼େ କ'ଣ ଏମିତି ସମାନ ଘଟଣା ଘଟୁଛି ?**

ନା । ପୁରୁଷ ଓ ମହିଳାମାନେ ସମାଜରେ କେଉଁ ବର୍ଗରେ ଅଛନ୍ତି ତାହା ମଧ ଗୁରୁତ୍ୱପୂର୍ଣ୍ଣ । ସେହି ଅନୁସାରେ ଭିନ୍ନ ଭିନ୍ନ ପ୍ରକାରର ସମ୍ପର୍କ ଦେଖିବାକୁ ମିଳିବ । ମଧ୍ୟ ଓ ଉଚ୍ଚ ବର୍ଗୀୟ ଲୋକଙ୍କ ମଧ୍ୟରେ ଯୌନତାକୁ ନେଇ ଯାହା ସବୁ ଆଗରୁ ନିଷିଦ୍ଧ ଥିଲା ଏବେ ସେଥିରେ ଅନେକ ପରିବର୍ତ୍ତନ ହେଲାଣି । ଆଜିର ଯୁବସମାଜ ଯୌନତାକୁ ଭିନ୍ନ ଢଙ୍ଗରେ ଦେଖୁଛନ୍ତି ।

**୧୨) ଦ୍ୱିବିବାହ ଓ ବହୁବିବାହ ମୁସଲିମ ଲୋକଙ୍କଠାରେ ବେଶୀ ଦେଖିବାକୁ ମିଳେ କି ?**

ନା । ଅଦ୍ଭୁତ କଥା ଯେ, ଏପରି ବିବାହ ହିନ୍ଦୁମାନଙ୍କ ଠାରେ ବେଶୀ ଦେଖିବାକୁ ମିଳୁଛି । ୧୯୭୧ ଜନଗଣନା ଅନୁସାରେ ଭାରତରେ ୪୫.୩ କୋଟି ହିନ୍ଦୁ ଥିଲେ ଓ ୬ କୋଟି ମୁସଲିମ ଥିଲେ । ଧରିନିଅନ୍ତୁ ଯେ, ପ୍ରତି ସମ୍ପ୍ରଦାୟର ୬୫ ପ୍ରତିଶତ ଲୋକ ମହିଳା ଓ ଶିଶୁ । ତେବେ ଜଣାପଡ଼ିବ ଯେ, ୧୯୭୧ରେ ପ୍ରାୟ ୧ କୋଟି ହିନ୍ଦୁ ପୁରୁଷଙ୍କର ଏକରୁ ଅଧିକ ସ୍ତ୍ରୀ ଥିଲେ । ଏକାଧିକ ସ୍ତ୍ରୀ ବିବାହ କରିଥିବା ମୁସଲିମ ପୁରୁଷଙ୍କ ସଂଖ୍ୟା ୧୨ ଲକ୍ଷ ହେବ ।

ଭାରତରେ ମହିଳାଙ୍କ ସ୍ଥିତି ଉପରେ ୧୯୭୪ରେ ଏକ କମିଟି ରିପୋର୍ଟ ଉପସ୍ଥାପନ କରିଥିଲେ । ଏହି ରିପୋର୍ଟ ଅନୁସାରେ ବହୁବିବାହ କେବଳ ମୁସଲମାନ ସମ୍ପ୍ରଦାୟରେ ହୁଏ ନାହିଁ, ବରଂ ଭାରତର ସବୁ ପ୍ରକାର ଗୋଷ୍ଠୀରେ ଏହା ଅଳ୍ପ ବହୁତ ପ୍ରଚଳିତ । ପ୍ରକୃତ କଥା ହେଲା ଯଦିଓ ବହୁବିବାହ ପାଇଁ ମୁସଲିମମାନେ ସବୁଠାରୁ ବେଶୀ ଅପବାଦ ପାଆନ୍ତି, ସେମାନଙ୍କ ସମ୍ପ୍ରଦାୟରେ ଏହାର ପ୍ରଚଳନ ସବୁଠାରୁ କମ୍ ।

ନାବାଳିକା ବିବାହର ପ୍ରଚଳନ ଅନ୍ୟ ଧର୍ମ ସମ୍ପ୍ରଦାୟ ଅପେକ୍ଷା ହିନ୍ଦୁ ଧର୍ମରେ ଅଧିକ । ମୋଟ ନାବାଳିକାଙ୍କ ସଂଖ୍ୟାର ୭୯ ପ୍ରତିଶତ ହିନ୍ଦୁ । କିନ୍ତୁ ନାବାଳିକା ବୟସରେ ବିବାହିତ ମହିଳାଙ୍କ ଭିତରୁ ୮୪.୭ ପ୍ରତିଶତ ମଧ୍ୟ ହିନ୍ଦୁ ଅଟନ୍ତି । ତେବେ ଦକ୍ଷିଣ ଭାରତରେ ଉତ୍ତର ଭାରତ ଅପେକ୍ଷା ବହୁବିବାହର ପ୍ରଚଳନ ଅଧିକ, ବିଶେଷ କରି ଧନୀ ଓ ମଧ୍ୟବିତ୍ତ ହିନ୍ଦୁମାନଙ୍କ କ୍ଷେତ୍ରରେ ।

**୧୩) ଏହି ସଙ୍କଳନର କେଉଁ ଗପରେ ଅନ୍ୟ ମହିଳା ସହ ସମ୍ପର୍କ ରଖିବା ବ୍ୟାପାରଟି ବିଶେଷ ଭାବେ ଆଲୋଚିତ ?**

ସବୁ ଗପରେ ଏହି ପ୍ରସଙ୍ଗ ଆଲୋଚିତ । ତେବେ ମହେଶ୍ୱତା ଦେବୀଙ୍କ 'ଚିନ୍ତା' ଗପଟିକୁ ଦେଖନ୍ତୁ । ଏଥିରେ ଜଣେ ସ୍ତ୍ରୀକୁ ତା' ସ୍ୱାମୀ ଠକିଦେଇ ଛାଡ଼ି ଦେଉଛି । ସେ ଅସୁରକ୍ଷିତ ଅବସ୍ଥାରେ ନିଜ ପରଚିତ ହରାଇ ଦୁର୍ଦ୍ଦଶା ଭୋଗୁଛି । ଜୟକଣ୍ଠନଙ୍କ 'ରକିଏଲ୍' ଗପରେ ଲୁଚାଛପା ଦ୍ୱିବିବାହ ଦେଖିବାକୁ ମିଳିବ । ମୁସଲିମମାନଙ୍କ କ୍ଷେତ୍ରରେ ବହୁବିବାହ ଅପେକ୍ଷାକୃତ ଭାବେ ଭଲ କାରଣ ସେମାନଙ୍କ ଧର୍ମରେ ସବୁ ସ୍ତ୍ରୀମାନଙ୍କୁ ଆଇନଗତ ଅଧିକାର ମିଳେ । କିଶୋରୀ ଚରଣ ଦାସଙ୍କର 'ଦ ଭିଜିଟର' ଗପରେ ଜଣେ ନାବାଳିକାର ବିବାହ ପୂର୍ବରୁ ସମ୍ପର୍କର କଥା କୁହାଯାଇଛି । ମକରନ୍ଦ ପରଞ୍ଜପେଙ୍କ 'ବଡି ଅଫରିଙ୍ଗ୍' ରେ ଯୌନତା ଓ ପ୍ରେମରେ ପଡ଼ିବାର ଆନନ୍ଦ ବର୍ଣ୍ଣନା କରାଯାଇଛି । ଆଜିର ଦୁନିଆରେ, ଯେଉଁଠାରେ ପରକୀୟା ଆଉ ଅପରାଧ ବୋଲି ବିବେଚିତ ହେଉ ନାହିଁ, ଏହି ଗପର

ବିଶେଷ ମହତ୍ୱ ରହିଛି । ପଛକୁ ଫେରି ଚାହିଁଲେ ମୁଁ ସ୍ପଷ୍ଟ ଭାବେ ଦେଖିପାରୁଛି ଯେ ଏହିପରି 'ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ପ୍ରଣୋଦିତ' ବହି ଲେଖିବା ପାଇଁ ମୁଁ କାହିଁକି ଆଗ୍ରହୀ ହେଲି । ମୋ ପାରିବାରିକ ପୃଷ୍ଠଭୂମି, ଫକୀରମୋହନ ସେନାପତିଙ୍କ ବଂଶାନୁକ୍ରମିକ ପ୍ରଭାବ, ଯେଉଁଭଳି ପ୍ରଗତିଶୀଳ ବାତାବରଣରେ ମୁଁ ବଡ଼ ହୋଇଛି, ମୋହିନୀମୋହନ ସେନାପତିଙ୍କ ଆଧୁନିକ ବିଚାର ସମ୍ବଳିତ ଲେଖା ମୋ ଠାରେ ଏପରି ଆଗ୍ରହ ଜାତ କରାଇଛି । ମୋହିନୀମୋହନ ତାଙ୍କ ସମୟରେ ଜଣେ ପ୍ରସିଦ୍ଧ ପ୍ରାଧ୍ୟାପକ, ଲେଖକ ଓ ଦାର୍ଶନିକ ଥିଲେ । ସତ କହିବାକୁ ଗଲେ ଉଭୟ ପିତା ଏବଂ ପୁତ୍ର ତାଙ୍କ ସମୟଠାରୁ ଢେର ଆଗରେ ଥିଲେ । ହୁଏତ ବଂଶାନୁକ୍ରମେ ଏହି ସଂସ୍କାରଧର୍ମୀ ମାନସିକତା ମୋତେ ମଧ୍ୟ ସ୍ପର୍ଶ କରିଛି । ସେ ଯାହା ହେଉ, ମୋ ସାଙ୍ଗମାନେ ଅଧିକାଂଶ ସମୟରେ ମନ୍ତବ୍ୟ ଦେଇଛନ୍ତି ଯେ, ଜୀବନ ପ୍ରତି ମୋର ଦୃଷ୍ଟିଭଙ୍ଗୀ ଟିକେ ନିଆରା ।

ମୋ ବାପାମାଆ ମୋତେ ଯେଉଁଭଳି ଭାବରେ ଲାଳନପାଳନ କରି ବଡ଼ କଲେ ସେଥିପାଇଁ ମୁଁ କୃତଜ୍ଞ । ତାଙ୍କରି ପ୍ରଭାବ ଯୋଗୁଁ ମୁଁ ସମାଜର ଅସୁସ୍ଥତା ଉପରେ କାମ କରିବା ପାଇଁ ମନୋନିବେଶ କରିପାରିଲି । ଏହା ବ୍ୟତୀତ, ମାନବ ସମାଜ ବିଷୟରେ ଭାବିଲା ବେଳେ ମୋତେ ଅନେକ ଅଦ୍ଭୁତ ଖିଆଲ ଆସେ । ମୁଁ ଭାବେ ମୋତେ ଯଦି ଯାଦୁବିଦ୍ୟା ଜଣା ଥାଆନ୍ତା, ତେବେ ଆଜିର ଦୁନିଆରେ ଯେପରି ଧର୍ମବିଦ୍ୱେଷ ଓ ଅସହନଶୀଳତା ଯୋଗୁଁ ଲୋକେ ପାଗଳ ପରି କାଣ୍ଡ କାରଖାନା କରୁଛନ୍ତି, 'ଯାଦୁଇ ଛଡ଼ି' ବୁଲାଇ ସବୁ ବନ୍ଦ କରିଦିଅନ୍ତି । ଫକୀରମୋହନ ଫାଉଣ୍ଡେସନର କାମପାଇଁ ମୁଁ ଯୁବବର୍ଗ ଓ ବୟସ୍କଙ୍କ ସହଯୋଗ ପାଇବାରେ ସକ୍ଷମ ହୋଇଛି । ଆମ କାର୍ଯ୍ୟଧାରାର ମୁଖ୍ୟ ଉଦ୍ଦେଶ୍ୟ ହେଲା ଭାଷା ଓ ସାହିତ୍ୟ ମାଧ୍ୟମରେ ସାମାଜିକ ଓ ଅର୍ଥନୈତିକ ଅବସ୍ଥା ଉପରେ ଆଲୋକପାତ କରିବା । ଭାଷା ଓ ସାହିତ୍ୟ ଶିକ୍ଷା ମାଧ୍ୟମରେ ଆମ କାର୍ଯ୍ୟକ୍ରମ ସୁଚାରୁରୂପେ ଚାଲିଥିବ । ଆମ କାମ ଆରମ୍ଭ ହୋଇଯାଇଛି । ଆମେ କେତୋଟି କର୍ମଶାଳା ଆୟୋଜନ କରିସାରିଛୁ । ଆଉ କେତେଟି ଭାଷା/ସାହିତ୍ୟ ପ୍ରତିଯୋଗିତା ମଧ୍ୟ ଆୟୋଜନ କରିଛୁ ଯେଉଁଠାରେ ସାହିତ୍ୟର ବିଷୟଗୁଡ଼ିକ ଦ୍ୱାରା ସାମାଜିକ ଓ ଅର୍ଥନୈତିକ ଅବସ୍ଥାକୁ ବୁଝିବା ପାଇଁ ପ୍ରୟାସ ହୋଇଛି ।

ଅନେକ ଲୋକଙ୍କ ପରି ମୁଁ ମଧ୍ୟ ଭାବୁଛି ଯେ ଆଧୁନିକ ଦୁନିଆରେ ଆଦର୍ଶବାଦର ବିପର୍ଯ୍ୟୟ ଘଟିଛି । ଯୁବସମାଜର ସୁସ୍ଥ ମାନସିକ ବିକାଶ ପାଇଁ ଆଦର୍ଶବାଦର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସାହିତ୍ୟ ହେଉଛି ସେହି ସୁରକ୍ଷିତ ସ୍ଥାନ ଯେଉଁଠାରେ ଆଦର୍ଶବାଦର ଗଛରେ

ପତ୍ର କଅଁଳେ । ଆଜିର ଦୁନିଆରେ କେତେ ରକମର ବିବାଦ ଚାଲିଛି । ରାଜନୈତିକ ବାତାବରଣ ଭୟଙ୍କର ରୂପ ଧାରଣ କରିଛି । ଏସବୁ ହିଁ ଖୁବ୍ ଶୀଘ୍ର ଭାରତର ଯୁବସମାଜର ଧ୍ୱଂସର କାରଣ ହୋଇପାରେ । ତେଣୁ ଯୁବସମାଜକୁ ଆମର ସମୃଦ୍ଧ ଇତିହାସ, ଆମର ମୂଳଦୁଆ ସହ ପରିଚିତ କରାଇବା ନିତାନ୍ତ ଆବଶ୍ୟକ ହୋଇପଡିଛି । ଆମର ଶାସ୍ତ୍ରୀୟ ସାହିତ୍ୟ ଆମକୁ ଏହି ବିପଦପୂର୍ଣ୍ଣ ସମୟରେ ଆଶ୍ରୟ ଦେବ ।

ଦୁନିଆର ସବୁ ମହାମନୀଷୀ - ସେ ଆଇନଷ୍ଟାଇନ, ଟଲଷ୍ଟୟ, ସେକ୍ସପିୟର, ହୁଅନ୍ତୁ ବା ଆମ ଦେଶର ରବୀନ୍ଦ୍ରନାଥ ଠାକୁର, ମୁନସୀ ପ୍ରେମଚାନ୍ଦ, ଫକୀରମୋହନ ସେନାପତି ହୁଅନ୍ତୁ ବା କବୀର, ଗୁରୁ ନାନକ, ଶଙ୍କର ଆଚାର୍ଯ୍ୟ, ଯୀଶୁ ଖ୍ରୀଷ୍ଟଙ୍କ ପରି ସନ୍ଥ ହୁଅନ୍ତୁ ବା ଶାକ୍ୟମୁନି ବୁଦ୍ଧ ହୁଅନ୍ତୁ - ଏହି ସମସ୍ତଙ୍କର ବିଚାରରେ ଗୋଟିଏ ସମାନତା ଥିଲା । ତାହା ହେଲା କେମିତି ଜଗତର ମଙ୍ଗଳ କରାଯାଇ ପାରିବ । ସେମାନଙ୍କ ପରିକଳ୍ପନାରେ ଭଲପାଇବା ଥିଲା ଦୁନିଆର କେନ୍ଦ୍ରବିନ୍ଦୁ । ସେ ଭଲପାଇବା ମଣିଷ ଠାରୁ ଆରମ୍ଭ କରି ପଶୁପକ୍ଷୀ, ବାତାବରଣ ଯାଏଁ ପରିବ୍ୟାପ୍ତ ଥିଲା ।

ମୁଁ ଏଠାରେ କେବଳ ଜଣଙ୍କର ଉକ୍ତି ଉଦ୍ଧାର କରିବି । ସେ କେହି ନୁହନ୍ତି, ମହାନ ଚିନ୍ତକ ଅଲବର୍ଟ ଆଇଷ୍ଟାଇନ (Albert Einstein) । ସେ କହିଛନ୍ତ, "ଯଦି ତୁମେ ଚାହଁ ଯେ ତୁମ ପିଲାମାନେ ବୁଦ୍ଧିମାନ ହୁଅନ୍ତୁ, ତେବେ ସେମାନଙ୍କୁ ପରୀରାଇଜର କାହାଣୀ ଶୁଣାଅ । ଯଦି ତୁମେ ଚାହଁ ଯେ ତୁମ ପିଲାମାନେ ବହୁତ ବୁଦ୍ଧିମାନ ହୁଅନ୍ତୁ, ତେବେ ସେମାନଙ୍କୁ ଆହୁରି ବେଶୀ ପରୀରାଇଜର କାହାଣୀ ଶୁଣାଅ ।" ସେ ଆହୁରି ମଧ କହିଛନ୍ତି, "କେତୋଟି ତଥ୍ୟ ମନେ ରଖିବା ଶିକ୍ଷାର ଅର୍ଥ ନୁହେଁ । ଚିନ୍ତା କରିବା ପାଇଁ ନିଜକୁ ପ୍ରସ୍ତୁତ କରିବା ହେଉଛି ପ୍ରକୃତ ଶିକ୍ଷା ।" ମୁଁ ଭାବୁଛି ସାହିତ୍ୟ ଆମକୁ ଏହି ପ୍ରକାର ଶିକ୍ଷା ଦେଇପାରିବ ।

କିନ୍ତୁ ଆଜିର ଦୁନିଆରେ ଶିକ୍ଷାର ଏକ ପ୍ରମୁଖ ମାଧ୍ୟମ ହେଲା ଇଣ୍ଟରନେଟ ଓ କମ୍ପ୍ୟୁଟର । ଶିକ୍ଷାରେ ତଥା ଓ ସୂଚନା ପ୍ରକ୍ରିୟା କରଣ ଉପରେ ଗୁରୁତ୍ୱ ଦିଆଯାଉଛି । ତଥ୍ୟକୁ ନେଇ କସରତ କରିବା ବିଭିନ୍ନ କ୍ଷେତ୍ରରେ ଏକ ଫ୍ୟାସନ ପାଲଟିଯାଇଛି । ମୁଁ କହୁନାହିଁ ଯେ ତଥ୍ୟ ବା ସୂଚନା କୌଣସି ଦୃଷ୍ଟିରୁ ଗୌଣ ବୋଲି । ପ୍ରମୁଖ ଶିଳ୍ପପତି ଅମ୍ୱାନି (Ambani)ଙ୍କ କହିବା ଅନୁସାରେ 'ସୂଚନା ହେଉଛି ଆଜିର ଦୁନିଆରେ ପେଟ୍ରୋଲିୟମ ।' ସୂଚନା ବା ଗୁଡ଼ିଏ ଏକ ଓ ଶୂନର ସମାହାରରେ ଗଠିତ ବାଇନାରି ଡାଟାର ଆଧିପତ୍ୟ ଉପରେ ଆଶଙ୍କା ପ୍ରକଟ କରିଛନ୍ତି ଆପଲ କମ୍ପାନିର ସି.ଇ.ଓ.ଟିମ୍ କୁକ୍ (Apple CEO

Tim Cook) । ସେ ଡାଟା ଉପରେ ପର୍ଯ୍ୟବେସିତ ଏକ ଶିଳ୍ପର ଭୟାବହତା ବିଷୟରେ ବିଷୟରେ ଆମକୁ ସାବଧାନ କରିଛନ୍ତି । ତାଙ୍କ ମତରେ, 'ଆମରି ବିଷୟରେ ବିଭିନ୍ନ ପ୍ରକାରର ତଥ୍ୟ (ନିତିଦିନିଆ କଥା ତଥା ସଂପୂର୍ଣ୍ଣ ବ୍ୟକ୍ତିଗତ ତଥ୍ୟ)' ସଂଗ୍ରହ କରାଯାଇ ଆମରି ବିରୁଦ୍ଧରେ ବ୍ୟବହାର କରାଯାଉଛି । ଏବଂ ଏସବୁ ଘଟୁଛି ମିଲିଟାରୀ ରଣ କୌଶଳ ପରି ଖୁବ୍ ନିପୁଣତାର ସହ ।

ଅମରପ୍ରୀତ କଲକାଟ (Amarpreet Kalkat) କହନ୍ତି ଯେ, ଲୋକେ ଲିଙ୍କଡଇନ୍ (Linkedin), ଇନଷ୍ଟାଗ୍ରାମ (Instagram), ଟ୍ୱିଟର (Twitter) ଆଦି ମାଧମରେ ଯେଉଁ ତଥ୍ୟ ସର୍ବସାଧାରଣରେ ପରିବେଷଣ କରିଥାଆନ୍ତି ସେସବୁ ବିଶ୍ଳେଷଣ କରି ତାଙ୍କର ବ୍ୟକ୍ତିତ୍ୱ ବିଷୟରେ ୮୦ ପ୍ରତିଶତ ଯାଏଁ ସଠିକ ଧାରଣା ପାଇହେବ ।

ତିନିବର୍ଷ ହେଲାଣି ଏହି ପ୍ରକାର ବିଶ୍ଳେଷଣ କରି ଆସୁଥିବା ଏକ ସଂସ୍ଥା ହେଲା Watson Personality Insights. ଏହା ଲୋକଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଦିଗ, ସେମାନଙ୍କ ଆବଶ୍ୟକତା, ମୂଲ୍ୟବୋଧ ଇତ୍ୟାଦି ଦର୍ଶାଉଥିବା ତଥ୍ୟକୁ କେତେକ ମଡ୍ଲେ ଦ୍ୱାରା ବିଶ୍ଳେଷଣ କରି ସେମାନଙ୍କ ପସନ୍ଦ ନାପସନ୍ଦ ବିଷୟରେ ଅନୁମାନ କରିପାରୁଛି । Deep senseର ବିଶ୍ଳେଷଣ ଆହୁରି ବିଶ୍ୱସନୀୟ । ହଜାର ହଜାର ପ୍ରୋଫାଇଲର ଡାଟାକୁ ତର୍ଜମା କରାଇ ଏହାର ମଡେଲକୁ ଟ୍ରେନିଂ ଦିଆଯାଇଛି । ଏହା କେତୋଟି ସାଇକୋମେଟ୍ରିକ ସ୍କେଲ (Psychometric test scales) ଦ୍ୱାରା ଲୋକଙ୍କ ଚରିତ୍ରର ଏକ ବିଶଦ ଚିତ୍ର ଯୋଗାଇ ପାରୁଛି । ବ୍ୟକ୍ତିତ୍ୱର ପାଞ୍ଚଟି ମୁଖ୍ୟ ଦିଗ ହେଲା: ସ୍ପଷ୍ଟବାଦିତା (Openness) କର୍ତ୍ତବ୍ୟନିଷ୍ଠା (Conscientiousness),ବହିର୍ମୁଖୀତା (Extroversion) ପାରସ୍ପରିକ ବୁଝାମଣା (Agreeableness), ଓ ସ୍ନାୟବିକ ବିକାର (Neuroticism) । ଏହି ପାଞ୍ଚଟି ଦିଗକୁ ସଂକ୍ଷେପରେ କୁହାଯାଏ OCEAN । ଏହା ସହିତ Disc Assessment ମଧ୍ୟ ଉପଲବ୍ଧ । ପ୍ରଭୁତ୍ୱ (Domonance), ପ୍ରଭାବ (Influence), ସ୍ଥିରତା (Steadiness), ଓ କର୍ତ୍ତବ୍ୟନିଷ୍ଠା (Conscientiousness) ତା ସହିତ ସଂଶ୍ଳିଷ୍ଟ ।

ଏସବୁ ପ୍ରକାର ବିଶ୍ଳେଷଣର ମାନେ କଅଣ ? ଆମର ବ୍ୟକ୍ତିଗତ ଜୀବନ ଧିରେ ଧିରେ ଅବରୁଦ୍ଧ ହେବାକୁ ବସିଛି । ଆଗରେ ଡେଡ୍ ଏଣ୍ଡ ? ଭବିଷ୍ୟତ କଅଣ ତମସାଚ୍ଛନ୍ନ ? ଆଶା କରେ ଏହା ହେବ ନାହିଁ ।

ସାମାଜିକ ଗଣମାଧମରେ ଆଜିକାଲି ଚହଳ ପକାଇଥିବା କେତୋଟି କଥାର ଉଦାହରଣ ଦେଉଛି । ସୋସିଆଲ ଇଣ୍ଟେଲିଜେନ୍ସ (Social intelligence) ବା ସାମାଜିକ

ବୁଦ୍ଧିମତ୍ତା ସେଥିରୁ ଗୋଟିଏ । ଏହାର ଅର୍ଥ ହେଲା ନିଜକୁ ଓ ଅନ୍ୟକୁ ଜାଣିବାର କ୍ଷମତା । ସମାଜ ବିଜ୍ଞାନୀ ରସ୍ ହନିଓ୍ୱିଲ୍ (Ross Honeywill) କହନ୍ତି ଯେ, ସୋସିଆଲ ଇଣ୍ଟେଲିଜେନ୍ସ ହେଉଛି ଆତ୍ମ ସଚେତନତା, ସାମାଜିକ ସଚେତନତା, ବିକଶିତ ସାମାଜିକ ବିଚାରଧାରା ଓ ଦୃଷ୍ଟିଭଙ୍ଗୀ ଏବଂ ଜଟିଳ ସାମାଜିକ ପରିବର୍ତ୍ତନକୁ ସାମ୍ନା କରିବା ପାଇଁ ଆଗ୍ରହ ତଥା କ୍ଷମତା ଇତ୍ୟାଦିକୁ ଏକତ୍ରଭାବେ ପ୍ରକାଶ କରୁଥିବାର ମାପଦଣ୍ଡ । ଏ ପ୍ରକାର ସାମାଜିକ ବୁଦ୍ଧିମତ୍ତା କ'ଣ ଲୋକଙ୍କୁ ଅଧିକ ସୁଖୀ କରିବ ? ତଥ୍ୟ ଓ ସୂଚନାର ବନ୍ୟା କ'ଣ ପୃଥିବୀକୁ ଆହୁରି ସୁନ୍ଦର କରିଦେବ ? ପାଠକେ ଏ ବିଷୟରେ ଚିନ୍ତା କରନ୍ତୁ । ମୋର ଦୃଢ଼ ଉତ୍ତର ହେଲା, ନା । ଏଥିରେ ଦ୍ୱିମତ ନାହିଁ ଯେ ଆଜିର ଯୁଗର ପରି ବର୍ତ୍ତମାନ ଲୋକଙ୍କ ଚିନ୍ତାଧାରାକୁ ନିଜ ଇଚ୍ଛାମତେ ନିୟନ୍ତ୍ରଣ କରିବେ । ତଥାପି ପାଗଳାମି ମଧ୍ୟରେ ବି କିଛି ଶୈଳୀ ଶୃଙ୍ଖଳା ଆଶା କରାଯାଇପାରେ ।

ଉପରେ ଯେଉଁ ବିକଶିତ ସାମାଜିକ ବିଚାରଧାରା ଓ ଦୃଷ୍ଟିଭଙ୍ଗୀ ବିଷୟରେ କୁହାଗଲା ତାହା ବିଷୟରେ ମୁଁ ଚିନ୍ତିତ । ଏଥିପାଇଁ ଲୋଡ଼ା ଏପରି ଶିକ୍ଷା ଯାହା ଲୋକଙ୍କର ସର୍ବାଙ୍ଗୀନ ବିକାଶ କରିବ ଓ ଏହି ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ହେବ ଚାରିତ୍ରିକ ଅଖଣ୍ଡତା । ଆମେ ମନେରଖିବା ଉଚିତ ଯେ ଲୋକେ ଶିକ୍ଷିତ ହୋଇଥିଲେ ମଧ୍ୟ ଚରିତ୍ର ଓ ସତ୍ୟନିଷ୍ଠା ନଥିଲେ ଶିକ୍ଷିତ ହେବାର କିଛି ମୂଲ୍ୟ ନାହିଁ । ଭାବି ଦୁଃଖ ଲାଗୁଛି ଯେ, ଆଧୁନିକ ଯୁଗର ଯାବତୀୟ ବିକାଶ ହେଉଛି ଏପରି ଏକ ପ୍ରକାଶ ସୌଧ ସଦୃଶ ଯାହାର ଭୂମିକୁ ଉଇମାନେ ଆକ୍ରାନ୍ତ କରିସାରିଛନ୍ତି । କାରଣ ଯେଉଁ ଲୋକଙ୍କ ଉଦ୍ଦେଶ୍ୟରେ ପ୍ରଗତିର ସୌଧ ଛିଡ଼ା ହୋଇଛି ସେମାନେ ଏଥିପାଇଁ ଏକ ଦୁର୍ବଳ ଆଧାର । ଲୋକଙ୍କ ଗୁରୁତ୍ୱ ହିଁ ପ୍ରଗତିର ମୁଖ୍ୟ ଉଦ୍ଦେଶ୍ୟ ହେବା କଥା । ତାହା ନହେଲେ ବିକାଶ ହେଉଛି ଦନ୍ତୁରା କଣ୍ଟା ତିଆରିବା ପରି କଥା, କଣ୍ଟା ପରି ଦିଶୁଥିଲେ ବି ଯେଉଁ କାମ ପାଇଁ ତିଆରି ସେ କାମରେ ଲାଗିବ ନାହିଁ । ସବୁ କିଛିର ମୂଳରେ ହେଲା ଲୋକଙ୍କ ମଙ୍ଗଳ । ଲୋକଙ୍କ ଚାରିତ୍ରିକ ଅଖଣ୍ଡତା ନଥିଲେ ସବୁ କିଛି ବିଫଳ । ଲୋକେ ହିଁ ପ୍ରଗତିର ରଥକୁ ଆଗକୁ ନେବେ ଓ ଏକ ଶକ୍ତିଶାଳୀ ରାଷ୍ଟ୍ର ଗଠନ କରିପାରିବେ ।

ଆମ ଚାରିପାଖରେ ଯାହା ସବୁ ଘଟୁଛି ଭାବି ଦେଖନ୍ତୁ । କି ପ୍ରକାର ଖାଦ୍ୟ ଆମେ ଖାଉଛୁ ସତରେ । କ'ଣ ସେସବୁ ଖାଇବାର ଯୋଗ୍ୟ ? ପ୍ରାୟ ସମସ୍ତ ପର୍ବପର୍ବାଣୀ ଆଜିକାଲି ପ୍ରାଣହୀନ, କେବଳ ରୀତିନୀତି ଚାଲିଛି । ବାହାଘର ପରିଣତ ହୋଇଛି ଏକ ଲୋକ ଦେଖାଣିଆ କାର୍ଯ୍ୟକ୍ରମରେ । ରାସ୍ତାକଡ଼ରେ ବସୁଥିବା ଭିକାରୀମାନେ ବି ପ୍ରକୃତ

ଭିକାରୀ ନୁଅନ୍ତି । ସତ କହିବାକୁ ଗଲେ, ପାଣି ଓ ପବନ ବି ନିଜର ସଂଜ୍ଞା ହିସାବରେ ଯେପରି ହେବା କଥା ସେପରି ହୋଇ ରହି ନାହାଁନ୍ତି ।

ତେବେ ଶେଷ କଥାଟି ହେଲା, ମଣିଷ ଜୀବନର କେତେଗୁଡ଼ିଏ ମୌଳିକ ତତ୍ତ୍ୱ ସହିତ ଜଡ଼ିତ ହୋଇ ନିଜ ଅଖଣ୍ଡତାକୁ ବଜାୟ ରଖିବା କିଛି ଅସମ୍ଭବ ନୁହେଁ । ଆଗାମୀ ପିଢ଼ି ମାନବୋଚିତ ହୁଅନ୍ତୁ, ନିଜ ଐତିହ୍ୟ ସହ ସଂପର୍କିତ ହୋଇ ଥାଆନ୍ତୁ, କାଳ କାଳରୁ ଚଳିଆସୁଥିବା ସର୍ବୋତ୍ତମ ମାନବିକ ମୂଲ୍ୟବୋଧଗୁଡ଼ିକୁ ଆପଣାନ୍ତୁ । ଯନ୍ତ୍ରବିଦ୍ୟାରେ ତୀବ୍ର ପ୍ରଗତି ଆସିଲେ କ'ଣ ପୃଥିବୀବାସୀଙ୍କର ଶାରୀରିକ ଓ ମାନସିକ ମଙ୍ଗଳ ଘଟିବ ? ଲୋକଙ୍କର ସର୍ବାଙ୍ଗୀନ ଉନ୍ନତି ହେଉଛି କି ନାହିଁ - ଏହି ପ୍ରଶ୍ନ ଦ୍ୱାରା ଆମ ବିକାଶ ଅଭିମୁଖୀ ପ୍ରୟାସଗୁଡ଼ିକ ଆମକୁ ତଉଲିବାକୁ ହେବ । ଆମର ଲକ୍ଷ୍ୟ ହେଲା ଆମର ଉତ୍ତରାଧିକାରୀମାନଙ୍କ ଠାରେ ସୁସ୍ଥ ମାନସିକତା ଓ ଚାରିତ୍ରିକ ଅଖଣ୍ଡତା ବଜାୟ ରଖିବା ।

ମୋର ଦୃଢ଼ ବିଶ୍ୱାସ ଯେ, ଭାଷା ଓ ସାହିତ୍ୟ ଦ୍ୱାରା ସାମ୍ପ୍ରତିକ ଦୁନିଆକୁ ଭାରାକ୍ରାନ୍ତ କରି ରଖିଥିବା ବୃହତ୍ତର ସମସ୍ୟାମାନ ତଥା ସ୍ଥାନୀୟ ସାମାଜିକ ଓ ଆର୍ଥନୀତିକ ସମସ୍ୟାଗୁଡ଼ିକ ଉପରେ ସଚେତନତା ସୃଷ୍ଟି କରାଯାଇପାରିବ । ଏହା ହିଁ ଏକ ଉପାୟ ଯାହା ଆଜିର ରୁଗ୍ଣ ପୃଥିବୀକୁ ସୁସ୍ଥ କରିବାରେ ସାହାଯ୍ୟ କରିବ । ସାହିତ୍ୟ ଆମର ଚିନ୍ତାଧାରାକୁ ଆକାର ଦିଏ ଓ ଚିନ୍ତାଭାବନା କର୍ମରେ ରୂପାନ୍ତରିତ ହୁଏ । ଭଲ ସାହିତ୍ୟରୁ ଭଲ ଚିନ୍ତାଧାରା ଜନ୍ମ ନିଏ ଯାହା ଆମକୁ ଭଲ କାମ କରିବାକୁ ପ୍ରେରଣା ଦିଏ । ଆମେ ବର୍ତ୍ତମାନ ଯେଉଁ ଭଳି ଭୟଙ୍କର ସମସ୍ୟାଗୁଡ଼ିକର ସମ୍ମୁଖୀନ ହୋଇଛୁ ସେଗୁଡ଼ିକର ସମାଧାନ ଦିଗରେ ବୋଧହୁଏ ସାହିତ୍ୟ ହିଁ ଆମକୁ ବାଟ କଢ଼ାଇନେବ । ସମସ୍ୟାଗୁଡ଼ିକ କେବଳ ସାମ୍ନାରେ ଛିଡ଼ା ହୋଇ ରହିଥାନ୍ତି, ସେଗୁଡ଼ିକ ଆମକୁ ଭୟଭୀତ କରି ରଖିଛନ୍ତି, ଭୟ ଆମକୁ ପ୍ରାଣହୀନ କରିଦେଇଛି । ତେଣୁ ମୁଁ ଯୁବପିଢ଼ିକୁ ଅନୁରୋଧ କରୁଛି ଯେ ଏ ବିଷୟରେ ସେମାନେ ଗଭୀର ମନନ ଚିନ୍ତନ କରନ୍ତୁ ଓ ଆବଶ୍ୟକୀୟ ପଦକ୍ଷେପ ନିଅନ୍ତୁ । ଅନ୍ତତଃ, ସାହିତ୍ୟ ଦ୍ୱାରା ଆମର ସାମାଜିକ ଦାୟିତ୍ୱବୋଧ ସୃଷ୍ଟି ହେଉ, ମାନବିକ ଦାୟିତ୍ୱପୂର୍ଣ୍ଣ ସଚେତନତା ବଢ଼ୁ । ସାହିତ୍ୟ ହେଉଛି ପ୍ରକୃତରେ ଏପରି ମାଧ୍ୟମ ଯାହା ଦ୍ୱାରା ଆମର ନୈତିକତା ଶୁଦ୍ଧ ଓ ପରିମାର୍ଜିତ ହୁଏ । ଏହି ଆଦର୍ଶରୁ ବିଚ୍ୟୁତ ନହେବା ପାଇଁ ପାଇଁ ବ୍ୟାସକବି ଫକୀରମୋହନ ସେନାପତି ତାଙ୍କର ଅନେକ କବିତାରେ, ଗଳ୍ପରେ, ପ୍ରବନ୍ଧରେ ପାଠକଙ୍କୁ ନିବେଦନ କରିଛନ୍ତି ।

ଏଠାରେ ଆମେରିକାର ଓଡ଼ିଆ ସୋସାଇଟି ସମ୍ମିଳନୀରେ ପ୍ରଦତ୍ତ 'ଶିକ୍ଷା ସଂକଟ; ଅବଲୋକନ' ଶୀର୍ଷକ ମୋର ପ୍ରବନ୍ଧଟିକୁ ଏଠାରେ ସ୍ଥାନିତ କରିବା ପାଇଁ ମୁଁ ଚାହୁଁଅଛି ।

**ଶିକ୍ଷା ସଂକଟ: ଏକ ଅବଲୋକନ**

ଆମେରିକାର ସମ୍ମିଳନୀ - Odia Society of Americas (OSA) ୨୦୧୨ ରେ ମନିକା ଦାସଙ୍କ ଉପସ୍ଥାପନାର ଏକ ଅଂଶ ।

ଆଜି ଆମେ ଭାରତୀୟମାନେ ଅଧିକତର ଦେଶର ଅର୍ଥ ବ୍ୟବସ୍ଥା ଓ ଆନ୍ତର୍ଜାତିକ ସଂପର୍କ ସଂକ୍ରାନ୍ତ ଚର୍ଚ୍ଚା ଉପରେ ପ୍ରାଧାନ୍ୟ ଦେଉଛୁ ମାତ୍ର ଅନ୍ୟ ବହୁ ସମସ୍ୟା ଆମକୁ ଦୁର୍ବଳତର କରିବାରେ ଲାଗିଛି । ସେଗୁଡ଼ିକ ମଧ୍ୟରେ ଶିକ୍ଷାବ୍ୟବସ୍ଥା ଅନ୍ୟତମ । ଏହି ସମସ୍ୟା ପ୍ରାଥମିକ ବିଦ୍ୟାଳୟରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପରିସର ପର୍ଯ୍ୟନ୍ତ ପ୍ରସାରିତ । ଅଧିକ ଉତ୍କଟ ସମସ୍ୟା ହେଉଛି ଯୁବପିଢ଼ିର ମାତୃଭାଷା ପ୍ରତି ବିମୁଖତା । ଏହାର ବହୁ କାରଣ ମଧ୍ୟରୁ ହିନ୍ଦୀ ଓ ଇଂରାଜୀ ଭାଷାର କର୍ତ୍ତୃତ୍ୱ ଓ ବହୁଳ ବ୍ୟବହାର ଅନ୍ୟତମ । ଆଧୁନିକ ବଜାର ସଭ୍ୟତା ହିଁ ଏହାର ପ୍ରତିଫଳନ । ମାତ୍ର ଆମେ ଭୁଲି ଯାଉଛୁ ଯେ ପୃଥିବୀର ସବୁ ବିକଶିତ ଭାଷାର ଆବଶ୍ୟକତା ରହିଛି ଏବଂ ଏହି ବିକାଶ ପ୍ରକ୍ରିୟା ମଧ୍ୟ ସମକାଳୀନ ଆବଶ୍ୟକତା ଉପରେ ନିର୍ଭର କରେ ।

ସର୍ବେକ୍ଷଣରୁ ଜଣାଯାଏ, ପୃଥିବୀରେ ପ୍ରତି ପନ୍ଦର ଦିନରେ ଗୋଟିଏ ଭାଷା ଲୋପ ପାଇଯାଉଛି । ଓଡ଼ିଆ ଭାଷାର ବ୍ୟବହାର ସଂପର୍କରେ ଏ.ସି.ଇ.ଆର୍. ସଂସ୍ଥା ନିକଟ ଅତୀତରେ ଏକ ସର୍ବେକ୍ଷଣ କରିଥିଲା । ଏଥିରୁ ଜଣାଯାଏ ମାତ୍ର ଶତକଡ଼ା ତେତିଶ ଭାଗ ଛାତ୍ରଛାତ୍ରୀ ମାତୃଭାଷାରେ ପଢ଼ାପଢ଼ି କରୁଛନ୍ତି । ପୁନଶ୍ଚ ଭାଷା ଓ ଶିକ୍ଷା ସହିତ ସଂସ୍କୃତିର ସଂପର୍କ ଚର୍ଚ୍ଚା କଲାବେଳେ ସମସ୍ୟା ଅତ୍ୟନ୍ତ ଉଦ୍‌ବେଗଜନକ ମନେହୁଏ । କାରଣ ଆମେ ପ୍ରାୟତଃ ଭୁଲିଯାଇଥାଉ ସେ ସଂସ୍କୃତିର ଗୁଣସୂତ୍ରକୁ ବୁଝିବା ପାଇଁ ମାତୃଭାଷା ସର୍ବମୂଳ ଉପାଦାନ । ତେଣୁ ସଂସ୍କୃତିର ସଂରକ୍ଷଣ କ୍ଷେତ୍ରରେ ଭାଷାର ଭୂମିକା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସଂସ୍କୃତିକୁ ଚିହ୍ନିଲେ ଜାତିକୁ ଚିହ୍ନିହେବ ।

ପ୍ରାୟତଃ ଶିକ୍ଷିତ ଓଡ଼ିଆମାନେ ଫକୀରମୋହନ ସେନାପତିଙ୍କ ଓଡ଼ିଆ ଭାଷାପ୍ରୀତି ସପର୍କରେ ସଚେତନ । ଆଜି ଆମେ ଯେଉଁମାନେ ଓଡ଼ିଆ ଅସ୍ମିତା ସଂପର୍କରେ ଚର୍ଚ୍ଚା କରୁଛୁ, ପ୍ରଥମେ ଫକୀରମୋହନଙ୍କୁ ମନେ ପକାଉଛୁ । ସେ କାଳରେ ସେ ଏବଂ ତାଙ୍କ ବହୁ ସମଧର୍ମୀ- ଅଭିଜାତ ବଙ୍ଗାଳୀମାନଙ୍କର ଓଡ଼ିଆ ଭାଷା ବିରୋଧୀ ମାନସିକତାର ତୀବ୍ର

ସମାଲୋଚନା କରିଛନ୍ତି । ଭାଷାର ସୁରକ୍ଷା ପାଇଁ ନିଷ୍ପାପର ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଆମେ ଆଜି ସେମାନଙ୍କର ସଶ୍ରଦ୍ଧ ସଂଗ୍ରାମର ଫଳ ଭୋଗ କରୁଛୁ । ତେଣୁ ସେମାନେ ଆମ ସକଳଙ୍କର ସମ୍ମାନର ପାତ୍ର ।

ଫକୀରମୋହନ ଫାଉଣ୍ଡେସନ୍ ଉପଯୁକ୍ତ ଭାବାଦର୍ଶକୁ ଜୀବନ୍ତ ରଖିବାକୁ ପ୍ରତିଶ୍ରୁତିବଦ୍ଧ । କାରଣ ଆଜି ଏକବିଂଶ ଶତାବ୍ଦୀର ପ୍ରଥମ ଦଶକରେ, ଆମେ ଊନବିଂଶ ଶତାବ୍ଦୀର ୭/୮ମ ଦଶକର ଭାଷା ସମସ୍ୟାକୁ ଅନୁଭବ କରୁଛୁ । ତେଣୁ ଆପଣା ଭାଷାର ସୁରକ୍ଷା ଆମ ଆଗରେ ଏକ ଆହ୍ୱାନ ହୋଇଛି । ଏହି ଆହ୍ୱାନରେ ସାମିଲ ହେବା ପାଇଁ ମୁଁ ଆମେରିକାର ଓଡ଼ିଆ ଭାଷାଭାଷୀ ଭାଇ ଭଉଣୀମାନଙ୍କୁ ଅନୁରୋଧ କରୁଛି । ସମସ୍ୟାର ନିରାକରଣ ପାଇଁ ଆମେ କେତେକ ଯୋଜନା ମଧ୍ୟ ପ୍ରସ୍ତୁତ କରିଛୁ । ତେବେ ଏହି ପ୍ରସଂଗର ସ୍ପଷ୍ଟ ଅବବୋଧ ପାଇଁ ବିଶିଷ୍ଟ ଭାଷା ବିଜ୍ଞାନୀ ଓ ସମାଜଶାସ୍ତ୍ରୀ ନୋଆମ ଚମସ୍କିଙ୍କ ବିଚାର ସ୍ମରଣୀୟ । ତାଙ୍କ ଭାଷାରେ, "ଭାଷା କହିଲେ କେବଳ ଶବ୍ଦ ନୁହେଁ; କୌଣସି ଜନସମୁଦାୟର ମଣିଷମାନଙ୍କର ପାରସ୍ପରିକ ଯୋଡ଼ଣ ସୂତ୍ରର ସଂସ୍କୃତି ଓ ପରମ୍ପରାର ଇତିହାସ । ଅର୍ଥାତ୍ ତା'ର ଗୋଷ୍ଠୀର ପରିଚିତି ।" ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ବିଦ୍ୱାନ ସିସୋରୋଙ୍କ ବିଚାରରେ ମଧ୍ୟ ଏହି କଥା ରହିଛି । ସେ ସ୍ପଷ୍ଟ କରିଦେଇଛନ୍ତି, ଆପଣା ଅତୀତକୁ ଜାଣି ନଥିବା ଜଣେ ମଣିଷ ସମଗ୍ର ଜୀବନ ନିର୍ବୋଧ ଶିଶୁ ପରି ବଞ୍ଚି ରହିଥାଏ । ତା'ର ମାନସିକ ବିକାଶ ସମ୍ଭବ ହୋଇପାରେ ନାହିଁ । କାରଣ ଜୀବନର ସାରବତ୍ତା ଓ ବର୍ତ୍ତମାନ, ଆମ ପୂର୍ବପୁରୁଷଙ୍କ ଜୀବନଚର୍ଯ୍ୟା ଓ ଭାବାଦର୍ଶ ସହ ଅନ୍ତରଙ୍ଗ ଭାବରେ ସହ ସୂତ୍ରାୟିତ । ଏବେ, ଓଡ଼ିଆ ଭାଷାର ଦୁଃସ୍ଥିତି - ମୁକ୍ତି ସଂପର୍କରେ ମୁଁ ଆମ ପରିଯୋଜନାର ଚିତ୍ର ଦେବାକୁ ଚାହୁଁଛି ।

୧) ସ୍ଥାନୀୟ ପର୍ବପର୍ବାଣୀ ଓ ଧର୍ମ ଉତ୍ସବ ପାଳନ ଅବସରରେ ଭାଷାଗତ ବୈଚିତ୍ର୍ୟର ଅନୁଶୀଳନ ।

୨) ୭ ରୁ ୧୫ ବର୍ଷ ବୟସର ପିଲାମାନଙ୍କର ବିଭିନ୍ନ ପ୍ରକାରର ଖେଳକୁଦର ଅନୁଶୀଳନ ଓ ତତ୍ ସମ୍ବନ୍ଧିତ ଭାଷା ସଂଗ୍ରହ ।

୩) ଶିକ୍ଷକ, ଅଧ୍ୟାପକ ଓ ସ୍ୱେଚ୍ଛାସେବୀମାନଙ୍କ ସହଯୋଗରେ ବିଭିନ୍ନ ସମୟରେ କର୍ମଶାଳା ଆୟୋଜନ ।

୪) ଗ୍ରାମାଞ୍ଚଳରେ ଗ୍ରାମସଭାର ଆୟୋଜନ ଓ ଅଂଶଗ୍ରହଣ ।

୫) ସ୍ଥାନୀୟ ନୃତ୍ୟଗୀତ ଆଧାରିତ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ ।

୬) ସାମାଜିକ ସଚେତନତା ସୃଷ୍ଟି ପାଇଁ ପଥପ୍ରାନ୍ତ ନାଟକ ଓ ଯାତ୍ରାର ଆୟୋଜନ ।

୭) ଭ୍ରାମ୍ୟମାଣ ପାଠାଗାର ମାଧ୍ୟମରେ ଲୋକମାନଙ୍କ ଭିତରେ ବହି/ପତ୍ରିକା ପଠନର ଆଗ୍ରହ ସୃଷ୍ଟି ।

୮) ଅନୁଭବୀ ଓ ଅଭିଜ୍ଞ ଅବସରପ୍ରାପ୍ତ କର୍ମଚାରୀମାନଙ୍କ ସହଯୋଗରେ ବିଭିନ୍ନ ସ୍ଥାନରେ ପିଲାମାନଙ୍କର ସୃଜନଶୀଳତାର ବିକାଶ ପାଇଁ କାହାଣୀ କଥନ ଓ ଗାୟନ କର୍ମଶାଳାର ଆୟୋଜନ ।

୯) ସ୍ୱେଚ୍ଛାସେବୀମାନଙ୍କ ଦ୍ୱାରା ବିଭିନ୍ନ ସ୍ଥାନରେ ଶିକ୍ଷା ଆୟତନଗୁଡ଼ିକରେ ନାନା ବିଷୟରେ ଆଞ୍ଚଳିକ ଭାଷା ମାଧ୍ୟମରେ ବକ୍ତୃତା ଆୟୋଜନ ।

୧୦) ବିଶେଷତଃ, ପିଲାମାନଙ୍କ ମନରେ ମାତୃଭାଷା ପ୍ରତି ଶ୍ରଦ୍ଧା ସୃଷ୍ଟି ପାଇଁ ଏହି କାର୍ଯ୍ୟରେ ସ୍ୱେଚ୍ଛାସେବୀ ସଂଗଠନଗୁଡ଼ିକର ସଂପୃକ୍ତି । ଉପଯୁକ୍ତ ପରିଯୋଜନା କାର୍ଯ୍ୟକାରୀ ହୋଇପାରିଲେ ଓଡ଼ିଶାର ଗ୍ରାମୀଣ ଓ ଅପହଞ୍ଚ ଅଞ୍ଚଳର ମଣିଷମାନଙ୍କ ଭିତରେ ମାତୃଭାଷା ପ୍ରତି ପ୍ରୀତି ସୃଷ୍ଟି କରାଯାଇପାରିବ ।

ଫକୀରମୋହନ ଫାଉଣ୍ଡେସନ୍ ବିଶ୍ୱବିଦ୍ୟାଳୟ ସ୍ତରରେ ତୁଳନାତ୍ମକ ସାହିତ୍ୟ ଚର୍ଚ୍ଚାର ଯୋଜନା ରଖିଛି । ଏହି ଅଭିଯାତ୍ରାରେ ସାହିତ୍ୟ ଏକାଡେମୀ ସହଯୋଗର ହାତ ବଢ଼ାଇଛି । ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ପ୍ରକାଶନ ସଂସ୍ଥାକୁ ସକଳ ପ୍ରକାରର ସହଯୋଗ ପାଇଁ ଅନୁରୋଧ କରାଯାଇଛି । କାରଣ ଫକୀରମୋହନ ସେନାପତିଙ୍କର ରଚନା ସମୂହର ଅନ୍ତର୍ପାଠ୍ୟ ଅଧ୍ୟୟନ ନହେଲେ ତାଙ୍କୁ ବୁଝିବା ସହଜ ନୁହେଁ । ତାଙ୍କ ସୃଜନ ପ୍ରତିଭା ବହୁ ଭାବରେ କାଳ, ସାମାଜିକ ଓ ରାଜନୈତିକ ବ୍ୟବସ୍ଥାର ସହୃଦୟ ଉପାଦାନ ।

**ଲିଖନ ଦକ୍ଷତା କର୍ମଶାଳା**

ଏହି ସଂସ୍ଥାନ ଫକୀରମୋହନଙ୍କ ସୃଷ୍ଟି ସମ୍ଭାର (ସମ୍ବାଦ ରଚନା, ପାଠ୍ୟପୁସ୍ତକ, ଅନୁବାଦ, ଜୀବନୀ, ଆତ୍ମଜୀବନୀ କଥା, ଉପନ୍ୟାସ, ଭ୍ରମଣ କାହାଣୀ ଇତ୍ୟାଦି) ର ବୈଚିତ୍ର୍ୟ ଅନୁଶୀଳନ ପାଇଁ କର୍ମଶାଳା ମଧ୍ୟ ଆୟୋଜନ କରିବ । ଏଥିପାଇଁ ଦିଲ୍ଲୀ ବିଶ୍ୱବିଦ୍ୟାଳୟ, ଜବାହାରଲାଲ୍ ନେହେରୁ ବିଶ୍ୱବିଦ୍ୟାଳୟ, ଜାମିୟା-ମିଲିୟା ବିଶ୍ୱବିଦ୍ୟାଳୟ, ଗୁରୁଗୋବିନ୍ଦ ସିଂ ବିଶ୍ୱବିଦ୍ୟାଳୟ, ସରୋଜିନୀ ନାଇଡୁ ମହିଳା ଗବେଷଣା ପ୍ରତିଷ୍ଠାନ ଏବଂ ଇନ୍ଦିରା ଗାନ୍ଧୀ ରାଷ୍ଟ୍ରୀୟ ମୁକ୍ତ ବିଶ୍ୱବିଦ୍ୟାଳୟକୁ ଅନୁରୋଧ କରାଯାଉଛି । ଫକୀରମୋହନଙ୍କ

ରଚନାକୁ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ କରିବା ପାଇଁ ଜାତୀୟ ଶିକ୍ଷା, ଗବେଷଣା ଓ ତାଲିମ ପ୍ରତିଷ୍ଠାନ ଏବଂ ତାଙ୍କ ନାମରେ ଡାକ ଟିକଟ ମୁଦ୍ରଣ ପାଇଁ ଭାରତୀୟ ଡାକ ଓ ତାର ବିଭାଗ ପାଖରେ ପ୍ରସ୍ତାବ ରଖାଯାଇଛି ।

କୁହାଯାଇଛି, ଧର୍ମ କେବଳ ଜ୍ଞାନ ଓ ମୁକ୍ତିଲାଭର ମାଧ୍ୟମ ନୁହେଁ, ବରଂ ଏହା ମାନବତାବାଦର ସୂକ୍ଷ୍ମ ଅବବୋଧର ମାର୍ଗଦର୍ଶକ । ଏହା ବ୍ୟକ୍ତିକୁ ତା'ର ଜ୍ଞାନର ସୀମିତତା ଓ କ୍ଷୁଦ୍ରତା ସଂପର୍କରେ ଅବଗତ କରିଥାଏ । ପରମ୍ପରାକୁ ବୁଝିବାରେ ସହାୟକ ହୁଏ । ଆଜି ଆମେ ଧର୍ମ ଓ ଆଚରଣରେ ମାନବତାବାଦର ମନ୍ତ୍ର ଖୋଜୁଛୁ । ଫକୀରମୋହନ ଆପଣାର ସମଗ୍ର ଜୀବନ କାଳରେ ଧର୍ମ ଭିତରେ ମାନବ ପ୍ରେମକୁ ଖୋଜିଛନ୍ତି । ଜନ୍ମରେ ହିନ୍ଦୁ, ମାତ୍ର ଈଶାହୀ ଓ ବ୍ରାହ୍ମ ଧର୍ମ ପ୍ରତି ଶ୍ରଦ୍ଧା ପ୍ରକଟ କରିଛନ୍ତି । ବଙ୍ଗୀୟ ବ୍ରାହ୍ମ ପରିବାରର ହିରଣପ୍ରଭାଙ୍କୁ ନିଜର ବୋହୂ କରିଛନ୍ତି । ବାଲେଶ୍ୱରସ୍ଥ ଆପଣାର ଘର ଶାନ୍ତିକାନନରେ ସର୍ବଧର୍ମସମନ୍ୱୟ ସ୍ତମ୍ଭ ତିଆରିଛନ୍ତି । ଏହା ହିନ୍ଦୁ, ଇସଲାମ୍ ଓ ଖ୍ରୀଷ୍ଟ ଚେତନାର ଏକ ଆଧାର ସ୍ତମ୍ଭ । ଧର୍ମକନ୍ଦଳ ସଂକ୍ରମିତ ସାଂପ୍ରତିକ ବିଶ୍ୱ ପରିମଣ୍ଡଳରେ ଫକୀରମୋହନଙ୍କ ଏହି ସର୍ବଧର୍ମସମନ୍ୱୟବାଦୀ ମାନସିକତା ଆମକୁ ଅଭିଭୂତ କରେ ।

ଏବେ ଆମେ ଓଡ଼ିଆମାନେ ବାଲ୍ୟ ବିବାହ, ଜଳ, ପରିବେଶ ଓ ମାନବ ସମ୍ବଳର ବିନିଯୋଗ ଏବଂ ନାରୀ ପୁରୁଷ ଅଧିକାର ସଂକ୍ରାନ୍ତୀୟ ବହୁ ଜଟିଳ ସମସ୍ୟାର ସମ୍ମୁଖୀନ ହେଉଛୁ । ସମସ୍ୟା ଏତେ ସଙ୍ଗୀନ ଯେ ତାହା ଆନ୍ତର୍ଜାତିକ ସ୍ତରରେ ଚର୍ଚ୍ଚାର ପ୍ରସଙ୍ଗ ହୋଇଛି । ସବୁଠାରୁ ଉତ୍କଟ ସ୍ଥିତିରେ ଅଛି ଆମ ଭାଷାଗତ ଅସ୍ମିତା । ଆଶ୍ଚର୍ଯ୍ୟର କଥା ହେଲା ସମଗ୍ର ଭାରତବର୍ଷରେ ଓଡ଼ିଶା ଭାଷାଭିତ୍ତିରେ ଗଠିତ ପ୍ରଥମ ରାଜ୍ୟ; ମାତ୍ର ଏଠି ଶାସନ ଓ ଶିକ୍ଷାଦାନ ମୁଖ୍ୟତଃ ଇଂରାଜୀ ଭାଷାରେ ହିଁ ଚାଲେ । ଏହାକୁ ଭାଷାଗତ ସମସ୍ୟା କହି ଏଡ଼ାଇ ଗଲେ ଧର୍ମକୁ ଆଖିଠାରୁ ମାରିଲା ପରି ହେବ । ଆମର ମନେ ରଖିବା ଉଚିତ ଯେ, କୌଣସି ଜନସମୁଦାୟର ଭାଷା ସାହିତ୍ୟ, ସଂସ୍କୃତି, ଅର୍ଥନୀତି ଓ ରାଜନୀତିକେନ୍ଦ୍ରିକ ଯେ କୌଣସି ସମସ୍ୟା ସମକାଳିକ ଓ ପରସ୍ପର ସହ ସମ୍ବନ୍ଧିତ । ଏଠାରେ ଓଡ଼ିଶା ଆମେରିକା ଆସୋସିଏସନର ସକଳ କର୍ମକର୍ତ୍ତାଙ୍କ ଓଡ଼ିଶା ପ୍ରୀତିକୁ ସମ୍ମାନ ଜଣାଉଛି । ଆଶା କରୁଛି, ସେମାନଙ୍କ ସକଳ ପ୍ରକାରର ସହଯୋଗ ପୃଥିବୀର ଏହି ଅନ୍ୟତମ ପ୍ରାଚୀନ ଜନସମୁଦାୟର ସାମଗ୍ରିକ ବିକାଶର ମାର୍ଗକୁ ସୁଗମ କରିବ ।

# ଉପସଂହାର

ବ୍ୟାସକବି ଫକୀରମୋହନ ସେନାପତିଙ୍କର ବଂଶଧର ଭାବରେ ମୁଁ ସର୍ବଦା ନିଜକୁ ଧନ୍ୟ ମନେକରେ । ମୁଁ ତାଙ୍କର ହେଉଛି ଚତୁର୍ଥ ପ୍ରଜନ୍ମ । ଫକୀରମୋହନ-ମୋହିନୀମୋହନ-ବୀଣାପାଣି-ମନିକା ହେଉଛି ତାହାର ପ୍ରଲମ୍ବିତ ଆତ୍ମପରିଚିତି । ଫକୀରମୋହନ ଓଡ଼ିଆ ଭାଷାସାହିତ୍ୟର ସେନାପତି ବୋଲି ସର୍ବଜନବିଦିତ । ତାଙ୍କ ପୁତ୍ର ମୋହିନୀମୋହନ ମଧ୍ୟ ନିଜ ଗୁଣରେ ମହୀୟାନ । ମୋ ମାଆଙ୍କ ପ୍ରସଙ୍ଗ ତ ମୁଁ ଉଲ୍ଲେଖ କରିସାରିଚି । ତେବେ ମୋ କଥା ମୁଁ ଆଉ ନିଜେ କ'ଣ କହିବି । ମୋ ଦେହରେ ସେହି ବଂଶର ରକ୍ତ ପ୍ରବାହିତ ହେଉଚି, ସେଇଟା ସବୁଠାରୁ ବଡ଼ କଥା ।

ସେଥିପାଇଁ ଏହି ସ୍ମୃତିକଥା ଅର୍ଥାତ 'ମୁଁ ଫକୀରମୋହନଙ୍କ ଆତ୍ମଜା କହୁଚି' ପୁସ୍ତକରେ ମୁଁ ଯାହା ଯାହା ବି ଉଲ୍ଲେଖ କରିଚି, ତାହା ସେହି ଗୌରବୋଜ୍ଜ୍ୱଳ ବଂଶର ଗୌରବ ବିଶେଷ ମାତ୍ର । ସମସ୍ତ ଶ୍ରେୟ ସେଇ ପୂର୍ବପୁରୁଷମାନଙ୍କର । ଶୈଶବ ଅବସ୍ଥାରୁ ଆଜିଯାଏଁ ଯାହା ଯାହା ଅନୁଭବ ଏବଂ ଅନୁଭୂତି ମୋର ହେଇଚି, ତାକୁ ଏଇ ପୁସ୍ତକର ପୃଷ୍ଠାରେ ଲିପିବଦ୍ଧ କରିବାକୁ ଚେଷ୍ଟା କରିଚି । ମୋତେ ଲାଗିଚି ମୋର ପୂର୍ବଜ ପିଢ଼ିମାନେ ଯଦି ଚିରଦୀପ୍ତିମାନ୍ ନକ୍ଷତ୍ର ମଣ୍ଡଳ ହୁଅନ୍ତି, ମୁଁ ସେଇଟି ଗୋଟେ ଜ୍ୟୋତିରିଙ୍ଗଣ ବା ଜୁଳୁଜୁଳିଆ ପୋକ ମାତ୍ର । ମୋର ଯେତିକି ବି ଆଲୋକ ରହିଛି, ସେଇଟା ମୂଳତଃ ସେଇମାନଙ୍କର । ମୋର ବୋଲି କିଛି ବି ନୁହଁ ।

ସ୍ମୃତିକଥାଟିଏ ଲେଖିବାକୁ ଉତ୍ସୁକ ଥିଲି । ଲେଖା ସରିଗଲା । ସଫଳତା ବିଫଳତା କଥା ଆଦୌ ଭାବିନାହିଁ । ଛୋଟବେଳୁ ଯାହା ଯାହା ଅଙ୍ଗେ ନିଭାଇଥିଲି ବଖାଣିଦେଲି । ତା' ସହିତ ବର୍ତ୍ତମାନ ଫାଉଣ୍ଡେସନ୍ ନିର୍ମାଣ କରି କ'ଣ କାର୍ଯ୍ୟକ୍ରମ ଅବ୍ୟାହତ ରହିଛି, ତାହା ବି ଉଲ୍ଲେଖ କରିଛି । ମୋର କେତେକ ଲେଖା ଆଦିକୁ ବି ଏଥିରେ ସଂଯୋଜିତ କରିଚି । ବର୍ତ୍ତମାନର ସଂକଟାପନ୍ନ ଏବଂ ସମସ୍ୟାଚ୍ଛନ୍ନ ବିଶ୍ୱରେ ଯୁବପିଢ଼ିମାନଙ୍କର ଭୂମିକା, ମାତୃଭାଷା ପ୍ରତି ସେମାନଙ୍କର ମନୋଭାବ, ଶିକ୍ଷାସଂକଟ, ଫକୀରମୋହନୀୟ ସଂଦୃଷ୍ଟି, ସର୍ବଧର୍ମ ସମନ୍ୱୟ, ନୈତିକ-ଆଧ୍ୟାତ୍ମିକ ମୂଲ୍ୟବୋଧ ଭଳି କେତେକ ସମ୍ବେଦନଶୀଳ ପ୍ରସଙ୍ଗକୁ ମଧ୍ୟ ଏଥିରେ ସ୍ଥାନିତ କରିଚି ।

ଶେଷରେ ଫକୀରମୋହନ ଫାଉଣ୍ଡେସନର ଆଭିମୁଖ୍ୟ ଏବଂ ତା'ସହିତ ସଂଶ୍ଲିଷ୍ଟ ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କର ଅବଦାନ ସମ୍ପର୍କରେ ସୂଚନା ପ୍ରଦାନ କରିଛି । ଭବିଷ୍ୟତରେ ଫାଉଣ୍ଡେସନର ଯୋଜନା ପ୍ରଭୃତି ସଂପର୍କରେ ମଧ୍ୟ କିଛି କହିବାକୁ ଚେଷ୍ଟା କରିଚି । ଏସବୁ କେତେଦୂର ପାଠକୀୟ ଆଦୃତି ଲାଭ କରିବ ଜାଣେ ନାହିଁ । ତେବେ ଏସବୁ ପଛରେ ମୋ ପୂର୍ବପୁରୁଷଙ୍କର ଆଶିଷ କାର୍ଯ୍ୟ କରିଛି ବୋଲି ମୁଁ ବିନୟ ସହକାରେ ଉଚ୍ଚାରଣ କରିପାରେ ।

ମୁଁ ପରିଶେଷରେ ୱାଲ୍ଟର୍ ବଟଲରଙ୍କ 'Dear Ancestor' କବିତାର କେଇ ଧାଡ଼ିକୁ ଏଠାରେ ସଂଯୁକ୍ତ କରାଇ ମୋର ପୂର୍ବଜଙ୍କୁ ଶ୍ରଦ୍ଧାଞ୍ଜଳି ବାଢ଼ିବା ପାଇଁ ପ୍ରୟାସ କରୁଛି ।

Dear Ancestor, the place you filled
One hundred years ago
Spreads out among the ones you left
who would have loved you so
I wonder if you knew
That someday I would find this spot
And come to visit you.

ହେ ମୋର ପ୍ରିୟ ପୂର୍ବଜ !
ସେଦିନ ଅନେକ ବର୍ଷ ପୂର୍ବେ
ତମେ ଯେଉଁ ଆସ୍ଥାନର ଅଧିକାରୀ ଥିଲ,
ମୁଁ ଆଜି ଏକାନ୍ତରେ ସେଇଠି ଜୀଉଁଚି ।
ସେଇଠି ମୁଁ ଦେଖୁଚି ବୁଣିହେଇ ପଡ଼ିଥିବା
ତମର ସେ ରୂପ-ରସ-ଗନ୍ଧ ।
ତା ଭିତରେ ତମ ପ୍ରେମ ଏବେ ମଧ୍ୟ
ରୂପାୟିତ-ରସାୟିତ-ଗନ୍ଧାୟିତ
ଅବିକଳ ପୁଣି ଛଳଛଳ
ମହମହ ବ୍ୟାପତ ସର୍ବତ୍ର ।
ଓଃ ! କି ଅମୃତମୟ ତମରି ସେ

ଆତ୍ମୀକ ଭିନିଭିନି ନିବିଡ଼ ଆଶ୍ଳେଷ ।।
ହେ ପୂର୍ବଜ ପିତାମହ ।
ତମେ କେମିତି ବଞ୍ଚୁଥିଲ ମୁଁ ଜାଣେନା,
ତଥାପି ସେଇ ପାଠର ଭୂଇଁରେ
ଯେଉଁଠି ତମେ ବିଚରଣ କରୁଥିଲ ସେଦିନ,
ସେ ପାଠରେ ମୁଁ ଦେଖୁଚି ଅହରହ ତମ ପଦଚିହ୍ନ,
ସେ ଚିହ୍ନର ପ୍ରତି ରେଖାଧାର
ମୋ ଜୀବନ ପ୍ରତି କୋଷେ ତୋଳଇ କମ୍ପନ ।

(ଅନୁସୃଜନ- ଡ.ରବୀନ୍ଦ୍ର କୁମାର ଦାସ, ଶାନ୍ତିନିକେତନ)



ଫକୀରମୋହନଙ୍କ ଉତ୍ତର ଦାୟାଦ - (ଉପରେ ବାମରେ ମାୟା, ମୀରା ଏବଂ ବୀଣା । ମଝିରେ ମୋହିନୀମୋହନ ଏବଂ ହିରଣପ୍ରଭା ତଳେ ମୈତ୍ରୀ ଏବଂ ତାଙ୍କ ସ୍ୱାମୀ ବାବୁଭାଇ ଶୁକ୍ଳା ।





ଫକୀରମୋହନଙ୍କ ପୁତ୍ର ମୋହିନୀମୋହନ ଏବଂ ପୁତ୍ରବଧୂ ହିରଣପ୍ରଭା

## ଫକୀରମୋହନ ଫାଉଣ୍ଡେସନ୍ ଓଡ଼ିଶା ଶାଖା ସୌଜନ୍ୟରୁ......



'ଅନ୍ୱେଷଣ' ଚଳଚ୍ଚିତ୍ର ପ୍ରଦର୍ଶନ ଅବସରରେ ପ୍ରଦୀପ ପ୍ରଜ୍ୱଳନ



କରଣ ସିଂଙ୍କ ସହିତ ଜାମିଆ ମିଲିଆରେ



ପ୍ରବାସୀ ଓଡ଼ିଆଙ୍କ ସମ୍ମିଳନୀରେ ମୁଖପତ୍ର ଉନ୍ମୋଚନ ଅବସରରେ



ନୋବେଲ ବିଜେତା ଅମର୍ତ୍ତ୍ୟସେନଙ୍କ ସହିତ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ

# ଫକୀରମୋହନ ଫାଉଣ୍ଡେସନ୍ ଓଡ଼ିଶା ଶାଖା ସୌଜନ୍ୟରୁ......



ରାଷ୍ଟ୍ରପତି ଭବନରେ ଅବ୍ଦୁଲ କଲାମଙ୍କ ସହ



ରାଷ୍ଟ୍ରପତି ଭବନରେ ଅବଦୁଲ କଲାମଙ୍କୁ 'ଦ ଗାର୍ଲ ଚାଇଲ୍ଡ' ପୁସ୍ତକ ଉପହାର ଦେବା ଅବସରରେ ।



ନୂଆଦିଲ୍ଲୀରେ ଫକୀରମୋହନ ଫାଉଣ୍ଡେସନ୍‌ର ମୁଖପତ୍ର ଉନ୍ମୋଚନ ଅବସରରେ ।



ମନିକା ଦାସଙ୍କୁ ରାଜ୍ୟପାଳ ଗଣେଶୀ ଉତ୍କର୍ଷତା ପୁରସ୍କାର ପ୍ରଦାନ ଅବସରରେ ।





ଓଡ଼ିଶା ଏକ୍ସଲେନ୍‌ସ୍ ପୁରସ୍କାର



'ଅନ୍ୱେଷଣ' ଚଳଚ୍ଚିତ୍ର ପାଇଁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଦ୍ୱାରା ସମ୍ବର୍ଦ୍ଧନା ।

# ଫକୀରମୋହନ ଫାଉଣ୍ଡେସନ୍ ଓଡ଼ିଶା ଶାଖା ସୌଜନ୍ୟରୁ......



ଫକୀରମୋହନ ଫାଉଣ୍ଡେସନ୍, ନୂଆଦିଲ୍ଲୀ ଏବଂ ଫ.ମୋ. ବିଶ୍ୱବିଦ୍ୟାଳୟ, ବାଲେଶ୍ୱର ସହ ଅନୁବନ୍ଧନ ସ୍ୱାକ୍ଷର ସମୟରେ ।




ଫକୀରମୋହନ ବିଶ୍ୱବିଦ୍ୟାଳୟରେ ଉପକୁଳପତି ଶିବପ୍ରସାଦ ଅଧିକାରୀଙ୍କ ସହ ।



'ସ୍ମୃତି କଥା'ର ଇଂରାଜୀ ପୁସ୍ତକ 'Memoirs and more' ଉନ୍ମୋଚନ ଅବସରରେ ।




ପ୍ରତିଭାରାୟଙ୍କ ସହ



ନବୀନ ପଟ୍ଟନାୟକଙ୍କୁ 'ମେମୋୟର୍ସ ଆଣ୍ଡ ମୋ'ର' ଉପହାର ଦେବା ଅବସରରେ ।



ମନିକାଙ୍କ ପୁସ୍ତକ ଉନ୍ମୋଚନ ସଭାରେ ଜଷ୍ଟିସ୍ ଅନଙ୍ଗ ପଟ୍ଟନାୟକ ଏବଂ ଲଳିତ ମାନସିଂ ।

# ଫକୀରମୋହନ ଫାଉଣ୍ଡେସନ୍ ଓଡ଼ିଶା ଶାଖା ସୌଜନ୍ୟରୁ......



ସୋନିଆ ଗାନ୍ଧୀଙ୍କ ବାସଭବନରେ



ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାବିଦ୍ୟାଳୟରେ




ସାଇ ଇଣ୍ଟରନ୍ୟାସନାଲରେ



ଫକୀରମୋହନ ସଂପର୍କିତ ଆଲୋଚନାଚକ୍ର ପରିପ୍ରେକ୍ଷୀରେ ଜାତୀୟ ପାଠାଗାର, କଲିକତାରେ



ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ



ଭାଷା ସମସ୍ୟା ଉପରେ ଆୟୋଜିତ ଏକ ସଭାରେ ।

# ଫକୀରମୋହନ ଫାଉଣ୍ଡେସନ୍ ଓଡ଼ିଶା ଶାଖା ସୌଜନ୍ୟରୁ......



ଓଡ଼ିଶା ସରକାର ଏବଂ ସୀତାକାନ୍ତ ଦାସ, ଆମେରିକାଙ୍କ ଦ୍ୱାରା ସମ୍ବର୍ଦ୍ଧନା ।



ବି.ଜେ.ବି. ମହାବିଦ୍ୟାଳୟରେ ସମାପନୀ ଉତ୍ସବ ଅବସରରେ ।



ହୋଟେଲ ମେଫେୟାରରେ 'ମୋହନ ମୂର୍ଚ୍ଛନା' ସି.ଡି. ଉନ୍ମୋଚନ ଅବସରରେ




ଓଡ଼ିଶା ଫୋରମ, ଦିଲ୍ଲୀରେ ସ୍ୱତନ୍ତ୍ର ଆଲୋଚନା ଚକ୍ରରେ




ମୋହନ ମୂର୍ଚ୍ଛନା ଶିବିର ସାମ୍ନା ପ୍ରଚ୍ଛଦ




ପ୍ରତିଭା ରାୟ, କେ.ଆର୍. ମୀରାଙ୍କ ସହିତ ଏକ ବିଶେଷ କାର୍ଯ୍ୟକ୍ରମରେ

## ଫକୀରମୋହନ ଫାଉଣ୍ଡେସନ୍ ଓଡ଼ିଶା ଶାଖା ସୌଜନ୍ୟରୁ......



ସୋନିଆ ଗାନ୍ଧୀଙ୍କ ବାସଭବନରେ



ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାବିଦ୍ୟାଳୟରେ




ସାଇ ଇଣ୍ଟରନ୍ୟାସନାଲରେ



ଫକୀରମୋହନ ସଂପର୍କିତ ଆଲୋଚନାଚକ୍ର ପରିପ୍ରେକ୍ଷୀରେ ଜାତୀୟ ପାଠାଗାର, କଲିକତାରେ



ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ



ଭାଷା ସମସ୍ୟା ଉପରେ ଆୟୋଜିତ ଏକ ସଭାରେ ।

# ଫକୀରମୋହନ ଫାଉଣ୍ଡେସନ୍ ଓଡ଼ିଶା ଶାଖା ସୌଜନ୍ୟରୁ......



ଓଡ଼ିଶା ସରକାର ଏବଂ ସୀତାକାନ୍ତ ଦାସ, ଆମେରିକାଙ୍କ ଦ୍ୱାରା ସମ୍ବର୍ଦ୍ଧନା ।



ବି.ଜେ.ବି. ମହାବିଦ୍ୟାଳୟରେ ସମାପନୀ ଉତ୍ସବ ଅବସରରେ ।



ହୋଟେଲ ମେଫେୟାରରେ 'ମୋହନ ମୂର୍ଚ୍ଛନା' ସି.ଡି. ଉନ୍ମୋଚନ ଅବସରରେ




ଓଡ଼ିଶା ଫୋରମ, ଦିଲ୍ଲୀରେ ସ୍ୱତନ୍ତ୍ର ଆଲୋଚନା ଚକ୍ରରେ




ମୋହନ ମୂର୍ଚ୍ଛନା ଶିବିର ସାମ୍ନା ପ୍ରଚ୍ଛଦ




ପ୍ରତିଭା ରାୟ, କେ.ଆର୍. ମୀରାଙ୍କ ସହିତ ଏକ ବିଶେଷ କାର୍ଯ୍ୟକ୍ରମରେ

## ଫକୀରମୋହନ ଫାଉଣ୍ଡେସନ୍ ଓଡ଼ିଶା ଶାଖା ସୌଜନ୍ୟରୁ......



ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟରେ ଏକଦିବସୀୟ ଜାତୀୟ କର୍ମଶାଳାରେ




ଗାର୍ଗୀ କଲେଜ ସମ୍ମୁଖରେ



ଉତ୍କର୍ଷତାଯୁକ୍ତ ଶିକ୍ଷାଦାନ ପାଇଁ
ପ୍ରମାଣପତ୍ର ଗ୍ରହଣ ଅବସରରେ



ଷ୍ଟାନ୍‌ଫୋର୍ଡ଼ ବିଶ୍ୱବିଦ୍ୟାଳୟରେ




ଆମେରିକାରେ ଅନ୍ତର୍ଜାତୀୟ ମହିଳା
ଅର୍ଥନୀତି ସଂଗଠନର କର୍ମକର୍ତ୍ତାଙ୍କ ସହ

## ଫକୀରମୋହନ ଫାଉଣ୍ଡେସନ୍ ଓଡ଼ିଶା ଶାଖା ସୌଜନ୍ୟରୁ......



ଆମେରିକାରେ ଅନ୍ତର୍ଜାତୀୟ ମହିଳା ଅର୍ଥନୀତି ସଂଗଠନର କାର୍ଯ୍ୟାଳୟରେ



ଆମେରିକାରେ ଅନ୍ତର୍ଜାତୀୟ ମହିଳା ଅର୍ଥନୀତି ସଂଗଠନର କର୍ମକର୍ତ୍ତାଙ୍କ ସହ




ନାରୀବାଦୀ ଅର୍ଥନୀତି ଶୀର୍ଷକ ଗବେଷଣା ପତ୍ର ପାଠ ଅବସରରେ ଆମେରିକାରେ



ଆମେରିକାର ଅନ୍ତର୍ଜାତିୟ ମହିଳା ଅର୍ଥନୀତି ସଂଗଠନର ସଦସ୍ୟ ଭାବରେ ମନିକା ଦାସଙ୍କୁ ପ୍ରଦତ୍ତ ସଦସ୍ୟ ଫଳକ




ହାର୍ଭାର୍ଡ୍‌ରୁ ଆଗତ ଛାତ୍ରୀମାନଙ୍କ ଗହଣରେ




ବର୍ଲିନ୍‌ରେ

# ଫକୀରମୋହନ ଫାଉଣ୍ଡେସନ୍ ଓଡ଼ିଶା ଶାଖା ସୌଜନ୍ୟରୁ......



ଅନ୍ତର୍ଜାତୀୟ ନାରୀ ଅର୍ଥନୀତି
ସଂଗଠନର ସଦସ୍ୟଙ୍କ ସହ




ଏକ ପ୍ରତିନିଧି ସ୍ଥାନୀୟ ପତ୍ରିକା 'ଯୁଗଶ୍ରୀ ଯୁଗନାରୀ'ର ପ୍ରଚ୍ଛଦପଟ୍ଟରେ ମନିକା



ଅନ୍ତର୍ଜାତୀୟ ନାରୀ ଅର୍ଥନୀତି
ସଂଗଠନର କର୍ମକର୍ତ୍ତାଙ୍କ ସହ



ଅନ୍ତର୍ଜାତୀୟ ନାରୀ ଅର୍ଥନୀତି
ସଂଗଠନର ପୂର୍ବତନ ସଭାପତିଙ୍କ ସହ



ବିଦେଶରେ ମନିକା



ଅନ୍ତର୍ଜାତୀୟ ନାରୀ ଅର୍ଥନୀତି
ସଂଗଠନର ବର୍ତ୍ତମାନର କାର୍ଯ୍ୟକାରିଣୀ
ସଭାପତିଙ୍କ ସହ



ସମ୍ପାଦନା

ଡ. ରବୀନ୍ଦ୍ର କୁମାର ଦାସ

ଓଡ଼ିଆ ଅଧ୍ୟାପକ,
ବିଶ୍ୱଭାରତୀ ଶାନ୍ତିନିକେତନ,
ପଶ୍ଚିମବଙ୍ଗ



ଓଡ଼ିଆ ଭାଷାନ୍ତର

ଶ୍ରୀ ବିଶ୍ୱଜିତ୍ ଆପଟ୍

ଗବେଷକ, ନିସାର୍, ଭୁବନେଶ୍ୱର

"ସାମାଜିକ-ଇତିହାସତତ୍ତ୍ୱବିତ୍‌ଠାରୁ ଆରମ୍ଭ କରି ସାଧାରଣ ପାଠକ ପର୍ଯ୍ୟନ୍ତ ଯେ କେହି ବି ଏହି 'ସ୍ମୃତିକଥା' କୁ ପାଠ କରି ବିଭିନ୍ନ ଉପାଦେୟ ତଥା ଦୁର୍ଲ୍ଲଭ ତଥ୍ୟାବଳୀ ସମ୍ବନ୍ଧରେ ଅବଗତ ହୋଇପାରିବେ ।"

ପ୍ର. ଯତୀନ୍ଦ୍ର କୁମାର ନାୟକ

"ମନିକା ଦାସଙ୍କ ପରି ସୁଯୋଗ୍ୟା ଦାୟାଦ ପ୍ରତ୍ୟେକ ମହାନ ସ୍ରଷ୍ଟାଙ୍କର ପରିବାରରେ ଜନ୍ମନେବା ଉଚିତ ।"

ଲଳିତ ମାନସିଂହ

**Memoirs and More of an Insider**
*Dr. Monica Das*
**Athena Books**
**Bhubaneswar-2**
**rkdas.athena@gmail.com**
**₹ : 180/-**



